ମରଣୋତ୍ତର

ଲେଖକ : ଡ. ହେମନ୍ତ କୁମାର ଦାସ

ପ୍ରକାଶକ : ପଞ୍ଚସଖା ପ୍ରକାଶନ
ସୁତାହାଟ, କଟକ-୧

ମୁଦ୍ରଣ : ଛନ୍ଦ ପ୍ରକାଶିନୀ
ସୁତାହାଟ, କଟକ-୧

ପ୍ରଥମ ସଂସ୍କରଣ : ୧୯୯୧ ମହାବିଷୁବ ସଂକ୍ରାନ୍ତି

ମୂଲ୍ୟ : ଟ ୩୦.୦୦
(ତିରିଶ ଟଙ୍କା ମାତ୍ର)

ପ୍ରସ୍ତତୟଣା, ବାଗ୍ମୀ ଏବଂ ମାନବବାଦୀ ସାହିତ୍ୟିକ

**ଶ୍ରୀ ରଜତ କୁମାର କର**

ମାନନୀୟେଷୁ

ହେମନ୍ତ କୁମାର ଦାସ

# କହିବାକୁ ପଡ଼ୁଛି—

'ମରଣୋତ୍ତର' ମୋର ଚତୁର୍ଥ ଗଳ୍ପ ସଂକଳନ । ଏଥିରେ ସଂକଳିତ ସମସ୍ତ ଗଳ୍ପ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । କେବଳ ମାତ୍ର ଗଳ୍ପ ଲେଖିବା ପାଇଁ ଏହି ଗଳ୍ପ ସବୁ ଲେଖା ଯାଇନାହିଁ, ଏ ସଂକଳନ ସମ୍ପର୍କରେ ଏତିକି ମାତ୍ର ମୋର କହିବା କଥା ।

ଅଭିଜ୍ଞତା ଏବଂ ଅନୁଭୂତି ହେଉଛି ଯେକୌଣସି ଗାଳ୍ପିକଙ୍କର ସବୁଠୁ ବଡ଼ ସମ୍ପଦ । ଜୀବନର ଚଲାପଥରେ ଆଗେଇ ଯାଉ ଯାଉ ସେ କେତେ ବିଚିତ୍ର ଜୀବନର ସ୍ୱାଦ ପାଆନ୍ତି, ଭେଟନ୍ତି ପୁଣି କେତେ ବର୍ଣ୍ଣାଢ଼୍ୟ ଚରିତ୍ର । ସେଇମାନଙ୍କର ଜୀବନର ସ୍ପଷ୍ଟ ରଚନା ହୁଏ ତାଙ୍କର ମୂଳଲକ୍ଷ୍ୟ । ଯାହା ସେ ଦେଖିବେ, ସେତିକି ଲେଖିବେ । ସବୁ ଜୀବନର ଘରେ ଘରେ ଭୁଙ୍କିମାରିବା ସେଠାକାର ବାର୍ତ୍ତା ପାଠକ ମହଲରେ ପହଞ୍ଚାଇଦେବା କାମ୍ୟ ହୋଇପାରେ—ମାତ୍ର ଆଦୌ ସମ୍ଭବ ନୁହେଁ । ତେବେ ଯେତିକି ତାଙ୍କର ଅଭିଜ୍ଞତା, ଯେତିକି ତାଙ୍କର ଉପଲବ୍ଧି ତାକୁ ହିଁ ସେ ପ୍ରକାଶ କରିବେ ସହଜ ଭାବରେ । କଳ୍ପନାର ଭୂମିକା ଏଠାରେ ଏକାନ୍ତ ସୀମାବଦ୍ଧ ।

ଲେଖକ ପୁଣି ନିଜ ବ୍ୟକ୍ତିତ୍ୱକୁ ଅତିକ୍ରମ କରି କ୍ରମଶଃ ନୈର୍ବ୍ୟକ୍ତିକତା ଆଡ଼କୁ ଆଗେଇ ଚାଲିବେ ବୋଲି ଆଶା କରାଯାଏ । ଉପଲବ୍ଧିର ଭୂମି ଯେତେ ପ୍ରସାରିତ ହେଉଥିବ, ସେତେ କଠିନ ହେବ, ତାକୁ ସମନ୍ୱିତ କରିବା । ତେବେ ସ୍ରଷ୍ଟାଙ୍କୁ ଏହା କରିବାକୁ ହିଁ ପଡ଼ିବ । କେବଳ ମାତ୍ର ରଚନାର ଅଭିନବତ୍ୱ କିମ୍ବା ଢୋଡ଼ମ୍ବରର ଯାଦୁକରୀ ଶକ୍ତିରେ ପାଠକଙ୍କୁ ଭୁଲାଇବା ତାଙ୍କର ଲକ୍ଷ୍ୟ ନୁହେଁ । ବରଂ ଜୀବନ ଜିଜ୍ଞାସାର ନମନୀୟ ବିନ୍ଦୁଟିକୁ ଛୁଇଁବା ହେବ ତାଙ୍କର ଉଦ୍ଦେଶ୍ୟ ।

ଏହି ଜୀବନ ଜିଜ୍ଞାସାର ଗୋଟିଏ ଚମତ୍କାର ଉତ୍ତର ମିଳିବ, ସେଣ୍ଟିମେଣ୍ଟ ବା ଆବେଗ ପ୍ରବଣତା ଭିତରେ । ତେବେ ଖାଲି ସେତିକିକୁ ନେଇ କୌଣସି କାଳଜୟୀ ସୃଷ୍ଟି ସମ୍ଭବ ନୁହେଁ ।

ମଣିଷର କଥା ତ ନିଶ୍ଚୟ କୁହାଯିବ ଏବଂ ତା' ପୁଣି କୁହାଯିବ ଏକ ବିଶେଷ କଳାତ୍ମକ ରୀତିରେ । ଏଥିରେ କୌଣସି ସନ୍ଦେହ ନାହିଁ ଯେ ବ୍ୟକ୍ତିର ଅନ୍ତଃପୁରରୁ ହିଁ ସମସ୍ୟାର ଜଟିଳତାର ସୃଷ୍ଟି । ବ୍ୟକ୍ତିର ଦ୍ୱୈତସତ୍ତା ଓ ବିବେକର ସଙ୍କଟ ପାଠକକୁ ପହଞ୍ଚାଇଦିଏ ଏକ ଗଭୀର ଗହନ ସତ୍ୟର ଅତି ନିକଟରେ । ଲେଖକ ହିଁ ହେଉଛି ତା'ର ସାକ୍ଷୀ । ଗତିର ଏକ

ନିଜସ୍ୱ ଛନ୍ଦରେ ଲେଖକଟି ଏଠାରେ କେବଳ ଦର୍ଶକ । ସ୍ରଷ୍ଟା ଗ୍ରହଣ କରନ୍ତି ଦ୍ରଷ୍ଟାର ଭୂମିକା । ଜୀବନ ଚଳରେ ଆପାତରମ୍ୟ ଛବିର ଅନ୍ତରାଳରେ ପୂରିରହିଛି ଯେଉଁ ଛଳନା, ବଞ୍ଚନାର ତୀବ୍ର ହଳାହଳ ତାକୁ ଅମୃତରେ ପରିବର୍ତ୍ତନ କରିବା ହେଉଛି ସ୍ରଷ୍ଟାଙ୍କର ଧର୍ମ । ହଳାହଳରୁ ଅମୃତ-ପରିବର୍ତ୍ତନର ଏଇ ପ୍ରକ୍ରିୟା ହେବ ମଣିଷକୁ ବିଶ୍ଳେଷଣ କରିବାର ତା' ଭିତରର ଦ୍ୱନ୍ଦ୍ୱ ସଂଘର୍ଷକୁ ଚହ୍ଲାଇବାର ଉଦ୍ଦେଶ୍ୟପୂର୍ଣ୍ଣ ଲକ୍ଷ୍ୟ ନେଇ । ରୁଚି ଜୀବନ ଓ ଜଗତ୍‌ବୋଧ ଚିନ୍ତନ ମନନ ଓ ଦିନଚର୍ଯ୍ୟାର ପରିବର୍ତ୍ତନ ଘଟାଇ ଏକ ନୂତନ ମଣିଷ ସୃଷ୍ଟିର ଉଦ୍ଦେଶ୍ୟ ନେଇ । ଏହି କାରଣରୁ ମଣିଷ ସାହିତ୍ୟକୁ ଏବଂ ସାହିତ୍ୟ ମଣିଷକୁ ଉତ୍କର୍ଷ, ସାର୍ଥକତା ଏବଂ ଗୌରବ ଦାନ କରିବାର ମହତ୍ ଲକ୍ଷ୍ୟ ନେଇ ସୃଷ୍ଟି ।

ଜାଣେନା ମୋ ପାଇଁ ମଣିଷର କଥା ଯାହା କିଛି କହିବାର ଥିଲା, ତାହା ମୁଁ ଠିକ୍ ଭାବରେ କହିପାରିଛି କିମ୍ବା ନାହିଁ । ତେବେ କହିବା ପାଇଁ ଅନ୍ତତଃ ମୋର ଆନ୍ତରିକତାର ଅଭାବ ନଥିଲା । ଏଥିରୁ କିଛି ଗଳ୍ପ ପାଠକମାନଙ୍କୁ ଭଲଲାଗିଛି କିଛି ଲାଗିନାହିଁ । କିଛି ଛପି ପାଇଛି ଯେଉଁଥିରେ ଏସବୁ କଥା ମୋତେ ଜଣାଇ ଦିଆଯାଇଛି । ବର୍ତ୍ତମାନ ଏକାଠି ଏସବୁକୁ ପୁଣି ପାଠକମାନଙ୍କ ଦରବାରକୁ ପଠାଇ ଦେଉଛି ।

'ମରଣୋତ୍ତର' ସମ୍ବେଦନଶୀଳ ପାଠକର ମନରେ ଟିକିଏ ସ୍ଥାନ ପାଇଛି, ଏ କଥା ଜାଣିଲେ ଖୁସି ହେବ ।

ପ୍ରକାଶକ ବନ୍ଧୁ ଶ୍ରୀ ଜୟରାମ ମହାପାତ୍ରଙ୍କ ନିକଟରେ ମୁଁ କୃତଜ୍ଞ ଏହି କାରଣରୁ ଯେ, ଅତି ଅଳ୍ପ ସମୟ ମଧ୍ୟରେ ସେ ବହିଟିକୁ ଚମତ୍କାର ଭାବରେ ଛାପିଦେଇ ପାରିଛନ୍ତି ।

**ହେମନ୍ତ କୁମାର ଦାସ**

# ଗ୍ରନ୍ଥସୂଚୀ

# ମରଣୋତ୍ତର

ଅନସୂୟା ଶେଷରେ ଶୋଇ ପଡ଼ିଲେ । ମାଷ୍ଟିର ଦେହଟା ବଡ଼ କଲବଲ ହେଉଥିଲା ଗଲା କେଇଦିନ ଧରି । ସବୁବେଳେ ଛଟପଟ । ଆଖିରୁ ନିଦ ଯେମିତି କିଏ ହରି ନେଇଥିଲା । ଏ ଅବସ୍ଥାରେ ବି ସେ ମଣିଷ ଚିହ୍ନୁଥିଲେ । ଧୂଆଁଳିଆ ଆଖିରେ ପୁଅ ଆଡ଼କୁ ଅନାଇ ଗୁଣୁଗୁଣୁ ହୋଇ କ'ଣ ସବୁ କହୁଥିଲେ । ଶୁଣାଯାଉଥିଲା, ଯେମିତି ବହୁତ ଦୂରରୁ କିଏ କ'ଣ କହୁଚି । ଭଲ କରି କାନେଇଲେ ବେଳେବେଳେ ପଦୁଟିଏ କଥା ବୁଝାପଡ଼ୁଥିଲା—ବା—ପା··· ଅର୍ଥାତ୍ ବିଦାୟ ନେବା ପୂର୍ବରୁ ଅନସୂୟା ପୁଅ-ବୋହୂଙ୍କ ଦାୟିତ୍ୱରେ ସ୍ୱାମୀଙ୍କୁ ଛାଡ଼ିଦେଇ ଯିବାକୁ ଚାହାନ୍ତି କିମ୍ବା କୋଉଠିକି ଯିବା ଆଗରୁ ଅନସୂୟା ସବୁବେଳେ ଯାହା କହନ୍ତି, 'ବାପା ଲାଗିଲେ' ସେଇଆ ହୁଏତ କହୁଛନ୍ତି ।

ଜୀବନସାରା ବଡ଼ କଷ୍ଟ ପାଇଛନ୍ତି ଅନସୂୟା । ପନ୍ଦର ବର୍ଷ ବୟସରେ ସବାରିରୁ ଓହ୍ଲାଇ ସେ ଚୌଧୁରୀ ପରିବାରର ଅଗଣାରେ ପାଦ ଥୋଇଥିଲେ । ସେଇ ଦିନଠୁ ତ ପଚାଶ ବର୍ଷ ବିତିଗଲାଣି । ଚୌଧୁରୀ ଖାନ୍‌ଦାନ୍‌ର ଚାବିକେନ୍ଥା ଏଇ ଆଜି ତାଙ୍କ କାନିରୁ ଫିଟା ହେବ ।

ଦୁଷ୍ମନ୍ତ ଚୌଧୁରୀ ଖାନ୍‌ଦାନ୍ ଘରର ପିଲା ସିନା, ହେଲେ ସେକେଣ୍ଡ କ୍ଲାସରେ ପଢ଼ୁଥିବା ବେଳୁ ଗାନ୍ଧୀଗୋଳରେ ଯୋଗ ଦେଇ ଘର ଛଡ଼ା । ସେତେବେଳେ ବୟସ କମ୍ ଥିଲା । ମନରେ କିଛି ଗୋଟାଏ କରିପକାଇବାର ସ୍ୱପ୍ନ ଥିଲା । ବାରମ୍ବାର ଶୁଣ୍ଢିପିଣ୍ଡା ହୋଇ ପୁଲିସ୍‌ର ତଡ଼ା ଖାଇ ଧାଇଁ ବୁଲିବାଟା ହୁଏତ ଏତେ ବାଧୁ ନଥିଲା । ବାପା ତ ନଥିଲେ । ବିଧବା ମା' ଯେତେ କର୍ତ୍ତୃତ୍ୱଶାଳିନୀ ହେଲେ ବି ମା'ତ । ଅନ୍ଧାରରେ ଦେଖିଲେ ସେଇ, ଆଲୁଅରେ ଦେଖିଲେ ସେଇ । କେତେ କଠୋର ବା ହୋଇ ପାରନ୍ତେ ? ଦୁଷ୍ମନ୍ତ ଚୌଧୁରୀ ସେକାଳର ଭାଷାରେ ତିନି ପାର୍ଟିରୁ ଗଲେ । ଯାଜପୁର ସ୍କୁଲ୍‌ହଷ୍ଟେଲରେ ଦୁର୍ଦ୍ଦାନ୍ତ ବଙ୍ଗାଳୀ ହେଡ଼ମାଷ୍ଟର୍‌ଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରହି ପାଠ ପଢ଼ୁଥିବା ବେଳେ ଦୁଷ୍ମନ୍ତ କେମିତି ସେ କାହା ପାଲରେ ପଡ଼ି ଦିନେ ଝରକାରଡ଼ ଭାଙ୍ଗି ଅଦୃଶ୍ୟ ହୋଇଗଲେ, ସେ କଥା ଆଜି ଆଉ କାହାରିକୁ ଅଜଣା ନାହିଁ । ଦୁଷ୍ମନ୍ତ ଚୌଧୁରୀ ନିଜର ଆତ୍ମ କାହାଣୀ ପ୍ରକାଶ କରିଛନ୍ତି ।

ପୀତାମ୍ବର ଦେବ ପୁଅର ଖବର ପାଇ ଦୋହଲିଯାଇଥିଲେ ଅବଶ୍ୟ । ବାହାର ଲୋକ ଦୁଇଘଣ୍ଟା ପଦର ଅଗ ହଲୁଥିବାର ମାତ୍ର ଦେଖିବାକୁ ପାଇଲେ । ତା' ପୁଣି ଅଳ୍ପ ସମୟ ପାଇଁ । ବନସ୍ପତି ସେମିତି ଅଟଳ । ସଂସାରର ଅଭିଜ୍ଞତା ତାଙ୍କୁ ଯୋଡ଼ାଏ ବିଷୟ ଶିକ୍ଷା ଦେଇଥିଲା । ଗୋଟିଏ ଧୈର୍ଯ୍ୟ ଆଉ ଆରଟି ନୀରବତା । ଦୁଃଖର ସମୁଦ୍ରରେ ଭାସି ଭାସି ପୀତାମ୍ବର ଅନ୍ତତଃ ଏତକ ଶିଖିଥିଲେ ଯେ, ଦୁଃଖର କଥା ଶୁଣି ଆହା ଚୁ ଚୁ କରିବାକୁ ସଂସାରରେ ଅନେକ ଲୋକ । ତେବେ ଦୁଃଖ ଭୋଗିବାକୁ ହୁଏ ଏକା ଏକା—ଯନ୍ତ୍ରଣାରେ ଛାତି ଫାଟିଯାଏ—ମାତ୍ର ପାଟି ନଫିଟାଇବାରେ ହିଁ ମଣିଷପଣିଆ ରହିଛି ।

ପୀତାମ୍ବର ଆଜିର ବେଦନାକୁ ଛୁଡ଼ିଦେଲେ ଗୃହି କାଳର ସୁନା ସପନରେ ପଥର ହୋଇ ଯାଉଥିବାବେଳେ ଦୁଷ୍ମନ୍ତ ପୋଲିସକୁ ଲୁଚି ଲୁଚି ବଣ ପାହାଡ଼ରେ ବୁଲୁଥିଲେ । ଏତିକିବେଳେ ହେଲା ବାହାଘର । କେମିତି ହେଲା, ସେ ଆଉ ଏକ କାହାଣୀ । ଅନସୂୟା ତ ବାପ ନଥିଲା ଝିଅ । ସମସ୍ତେ ଯେତେବେଳେ ବାଇଆ ବାଉରା ହୋଇ ବୁଲୁଥିବା ଅଧାପାଠୁଆ ଦୁଷ୍ମନ୍ତଙ୍କ ଆଡ଼ୁ ମୁହଁ ଫେରାଇ ନେଲେ, ସେତେବେଳେ ଅନସୂୟାଙ୍କ ବୋଉ ତାଙ୍କର ଖାନଦାନୀ ଦେଖି ଭୁଲିଲେ । ଉଚ୍ଚ ପଥର ପିଣ୍ଡା—ଗୁହାଳରେ ହାତୀ ଭଳି ବଳଦ—ପୋଖରୀରେ ଡିଙ୍ଗିଭଳି ମାଛ—ପଚାଶମାଣ ନାଳକୂଳିଆ ଅଢ଼ାଳ ଜମି ଝିଅ-ତ ତାଙ୍କର ରାଣୀ ହୋଇଯିବ ।

ପନ୍ଦରବର୍ଷର ଅନସୂୟା କଣ୍ଢେଇ ଖେଳୁଥାଉ କୋଡ଼ିଏବର୍ଷର ଦୁଷ୍ମନ୍ତଙ୍କର ଘର କରିବାକୁ ଆସିଲେ । ଡୋଲିରୁ ବାହାରି ସେ ଯେତେବେଳେ ଚୌଧୁରୀ ଘର ଅଗଣାରେ ଠିଆ ହୋଇଗଲେ, କୁଆଡ଼େ ଗୁରୁଆଡ଼ ହାଲୋଳ ହୋଇଗଲା । ବୋହୂକୁ ଦେଖି ଅନେକ ଦିନ ପରେ ପୀତାମ୍ବର ହସିଥିଲେ । ଯାହାହେଉ, ଏତେଦିନ ପରେ ଅରଣା ମଇଁଷିକୁ ବାନ୍ଧିବାକୁ ଭଗବାନ୍ ଠିକଣା ପଘାଟିଏ ପଠାଇ ଦେଇଛନ୍ତି ।

ତା'ପରେ ତ ଅନେକ ଦିନ ବିତିଗଲା । ଘରଛଡ଼ା ପୁଅର ସଂସାରୀ ରୂପ ଦେଖିବାର ସପନ ଦେଖୁ ଦେଖୁ ପୀତାମ୍ବର ନିଜେ ଦିନେ ସଂସାର ଛଡ଼ା ହୋଇଗଲେ । ଅନସୂୟା ପୁଅଟିଏର ମା' ହେଲେ । ତେବେ ଦୁଷ୍ମନ୍ତ ଆଉ ସଂସାରୀ ହୋଇ ପାରିଲେ ନାହିଁ ।

କେତେବେଳେ ଜେଲ୍‌ରେ, କେତେବେଳେ ବାହାରେ, କେତେବେଳେ ପାର୍ଟି କାମରେ ତ କେତେବେଳେ ଜନତାର ସେବାରେ ତାଙ୍କର ସମୟ କଟିଯାଉଥିଲା । ଘର-ପରିବାର ପାଇଁ ତାଙ୍କର ଚିନ୍ତା ନଥିଲା । ସେ ଦାୟିତ୍ୱ ଅନସୂୟା ଆପେ ନିଜ କାନ୍ଧକୁ ଉଠାଇ ନେଇଥିଲେ । ବେଳେବେଳେ ତାଙ୍କୁ ଘର ଏକା ଏକା ଲାଗୁଥିଲା । ବୈଶାଖ ମାସର ଟାଇଁ-ଟାଇଁଆ ଦିପହରରେ କପୋତ କାନ୍ଦଣା ଶୁଣିଶୁଣି ଅବା ପଉଷ ମାସର ମଝିଅର ଶୀତରାତିରେ ପେଚାର ହୁଁ ହୁଁ ଶୁଣିଶୁଣି ମନ ତାଙ୍କର କେମିତି ହୋଇଯାଉଥିଲା । ଆଖିରୁ ଲୁହପୋଛି

ଦେବାକୁ ପାଖରେ କେହି ନଥିଲେ । କାନ୍ଦି କାନ୍ଦି ଅନସୂୟା ନିଜେ ତୁନି ହେଉଥିଲେ । ନିଜକୁ ନିଜେ ବୁଝାଉଥିଲେ । ଗୋଟାଏ ବୋଲି ତ ଜୀବନ । କଟିଯିବ ନାହିଁ ତା' ବାଟରେ । ସେ ଯଦି ଭାଙ୍ଗି ପଡ଼ନ୍ତି, ତାହାହେଲେ ଯେଉଁ ପାଞ୍ଚଟିଙ୍କୁ ସେ ଦୁନିଆଁକୁ ଆଣିଛନ୍ତି, ସେମାନଙ୍କର କ'ଣ ହେବ ? ଏମାନଙ୍କୁ ଛାଡ଼ି ସେ କେଉଁଠି କି ଶାନ୍ତି ପାଇବେ ?

ଏମିତି ଦିନେ ସ୍ୱାଧୀନତା ଆସିଗଲା । ପ୍ରଥମ ନିର୍ବାଚନରେ ଦୁଷ୍ମନ୍ତ ଏମ୍. ଏଲ୍. ଏ. ହୋଇଗଲେ । ରାଜଧାନୀରେ କ୍ୱାର୍ଟର ମିଳିଲା, ଫୋନ୍ ମିଳିଲା, ଗାଡ଼ି ମିଳିଲା । ତା' ସଙ୍ଗେ ସଙ୍ଗେ ବଢ଼ିଲା ଲୋକଙ୍କର ଗହଳି । ଉତ୍କଳ ଇସ୍ପାତ୍ ତିଆରି ଖାପ ଖୋଲା ଖଣ୍ଡାଭଳି ଦୁଷ୍ମନ୍ତ ଖାଲି ଝଲମଲ କରିବାକୁ ଲାଗିଲେ । ଏଇ ଖଣ୍ଡାଟିକୁ ଧୋଇ ପୋଛି ଯତ୍ନକରି ରଖିଥିବା ଦୁଃଖିନୀ ନାରୀଟିର ବେଦନା କିନ୍ତୁ କେହି ବୁଝିଲେ ନାହିଁ । ଯେଉଁମାନେ ଦୁଷ୍ମନ୍ତଙ୍କ ପାଣ୍ଠି ପୋଛି ଦେଇଥିଲେ, ସେମାନେ ବାଆଁରେଇ ହୋଇ ପାଖକୁ ଆସିଲେ । କୁଳାଙ୍ଗାର ପୁଅ ହଠାତ୍ କୁଳଚନ୍ଦ୍ରମା ହୋଇ ଉଠିଲା ।

ଯେଉଁମାନେ ରାଜନୀତି ଦୁନିଆଁର ଲୋଭ କ୍ରୋଧ, ଅଭିମାନ, ଭୟ, ଛଳ ଏସବୁ ତାଙ୍କ ଦେହରେ ହୁଏତ ନଥାଏ । ଥିଲେ ତ ଚଳିବ ନାହିଁ । ଦୁଷ୍ମନ୍ତ ତେଣୁ ମନରେ ଯାହା ଭାବୁଥାଆନ୍ତି, ସେଇମାନଙ୍କ କାନ୍ଧରେ ହାତପକାଇ ବାଟ ଚାଲିଲେ । ସମସ୍ତ ତା' ବାଟରେ ଗଡ଼ିଚାଲିଲା । ଏମିତି ଦିନେ ଦୁଷ୍ମନ୍ତଙ୍କ କପାଳକୁ ଶିକା ଛିଡ଼ିଲା । ସେ ମନ୍ତ୍ରୀ ହୋଇଗଲେ । ସଭା, ସମିତି, ଉଦ୍‌ଘାଟନ, ଶିଳାନ୍ୟାସର ଅରଣ୍ୟ ଭିତରେ ଦୁଷ୍ମନ୍ତ ଧୀରେଧୀରେ ହଜିଗଲେ । ଆଉ ଅନସୂୟା ? ପୁରସ୍କାର ବିତରଣୀ ସଭାରେ ମନ୍ତ୍ରୀଙ୍କ ପାଖରେ ତାଙ୍କୁ ଦେଖିବାକୁ ମିଳିଲା ନାହିଁ କିମ୍ବା ସରକାରୀ କ୍ୱାର୍ଟରରେ ପି.ଏ. ବାବୁଙ୍କୁ ଫୋନ କୁଣ୍ଡାଇ ବଗାଣିବାକୁ ପଡ଼ିଲା ନାହିଁ । 'ଘରେ ମା ବୁହୁଥିଲେ' ଇତ୍ୟାଦି । ସ୍ତ୍ରୀ ବୋଲି ସେ ଅନସୂୟା ପୁଦ୍ଦପୁର ସହରକୁ ଆସୁ ନଥିଲେ, ସେ କଥା ନୁହେଁ । ପିଲାମାନେ ବଡ଼ ହେଉଥିଲେ । ସେମାନଙ୍କ ପଢ଼ାପଢ଼ି ପାଇଁ ସହରରେ ରହିବା ଦରକାର । ଅସୁବିଧା ତ କିଛି ନାହିଁ । ଏତେ ବଡ଼ କ୍ୱାର୍ଟର ପଡ଼ିଛି । ପୂଜାରୀ, ଚାକର, ଟହଲିଆ ସବୁ ଅଛନ୍ତି । ଅନସୂୟା ଆସିଲେ ବା ଅଧିକ କଣଟା କରିପାରିବେ ? ପିଲାମାନଙ୍କୁ ଦେଖିବାକୁ ଏମିତିରେ ଆସୁଛନ୍ତି ତ । ବେଡ୍‌ରୁମର ଶ୍ରେଷ୍ଠ ଆଣ୍ଟିରୁମଟିରେ ଖଟୁଲି ଉପରେ ଜଗନ୍ନାଥ ମୂର୍ତ୍ତି ବସାଇଛନ୍ତି । ମାଳୀକୁ କୁହାଅଛି । ସେ ଫୁଲ ଦେଇଯାଏ । ରାଜଧାନୀକୁ ଆସିଲେ ଅନସୂୟାଙ୍କ ଦିନ କଟେ ସେଇ ଘରେ । ବାହାରେ କିଏ ଆସିଲା, କିଏ ଗଲା ଏସବୁର ଖବର ସେ ରଖନ୍ତି ନାହିଁ । ଏଠି ତାଙ୍କୁ କେମିତି ଅଣନିଃଶ୍ୱାସୀ ଲାଗେ । ପୂଜାରୀ ଚାକରଙ୍କ ସାଙ୍ଗରେ କେତେ କଥାବାର୍ତ୍ତା ହେବେ ?

ପିଲାମାନେ ଗାଁରୁ ଆସି ନୂଆ ଢଙ୍ଗ ଶିଖୁଛନ୍ତି । ପୁଣି ଯାହାର ତାହାର ପିଲା ନୁହେଁ, ଖୋଦ୍ ରାଜସ୍ୱମନ୍ତ୍ରୀଙ୍କ ପିଲା । ଯୁଆଡ଼େ ଗଲେ ବାରହୋଇ ପଡ଼ନ୍ତି । ଲୋକେ ଆଙ୍ଗୁଠି ଦେଖେଇ କଥାବାର୍ତ୍ତା ହୁଅନ୍ତି । ବୋଉଙ୍କ ପାଖରେ ବସି ଦୁଃଖସୁଖ ହେବାକୁ ସେମାନଙ୍କର ବା ସମୟ କାହିଁ ? ଅନସୂୟା ସବୁଦିନେ ଏମିତି ଏକା ।

ସାନ ପିଲାଟି···ତାଙ୍କର ଘରେ ଉହ୍ନପଣ । ସାନ ବୋଲି କି କ'ଣ ଦିନସାରା କାନି ଧରି ବୁଲୁଥାଏ । ରାତି ହେଲେ ସେଇ କାନକୁ ଧରି ଛୁଟ୍‌କିନା ଶୋଇପଡ଼େ । ଅନସୂୟା ନଥିଲେ, ତାଙ୍କ ଲୁଗା କାନିଟା ତା'ର ନିତାନ୍ତ ଦରକାର । ଦୁଃଖର ଜୀବନ ତାଙ୍କର । ନହେଲେ କୁଆଡ଼ୁ କିଛି ନାହିଁ, ହଠାତ୍ ଭଲ ପିଲାଟା ଖାଲି ଭଲା କର୍ମି କର୍ମି ବିଛଣାରେ ପଡ଼ିଯାଆନ୍ତା ! ଭରା ଶ୍ରାବଣମାସ । ମେଘ ଗାଜୁଚି ଯେ ନିଃଶ୍ୱାସ ମାରିବାକୁ ବି ଫୁରୁସତ ନାହିଁ । ନଈ ଦୁକୂଳ ଖାଉଚି । ଘରେ ପିଲାଟାକୁ ନେଇ ଅନସୂୟା ଏକା । ସହରରୁ ଖବର ଆସିଥିଲା ମନ୍ତ୍ରୀ ପାଞ୍ଚ ଛ'ଦିନ ପାଇଁ ଦିଲ୍ଲୀ ଯାଇଛନ୍ତି । ଏଣେ ପିଲାଟାର ଜର ହୁ-ହୁ ହୋଇ ବଢ଼ିଚାଲିଚି । ସହରକୁ ଖବର ଯିବ ଯେ କାହା ହାତରେ ? ଅନସୂୟା ବିକଳ ହୋଇ ଘର ବାହାର ହେଉଥିଲେ ସିନା, ଧୈର୍ଯ୍ୟ ହରାଇ ନଥିଲେ । କେତେ କେତେ ବିପଦ ଆସିଚି, ଅନସୂୟା ଦମ୍ଭ ହୋଇ ଠିଆ ହୋଇଛନ୍ତି । ଝଡ଼ ତାଙ୍କୁ ଅସ୍ତବ୍ୟସ୍ତ କରି ଦେଇ ଉଡ଼ିଯାଇଚି; ମାତ୍ର ଭାଙ୍ଗି ପାରି ନାହିଁ । ସେ ସେମିତି ଠିଆ ହୋଇ ରହିଛନ୍ତି ।

ଆଜି କେମିତି ତାଙ୍କୁ ଭାରି ଅସହାୟ ଲାଗୁଥିଲା । ବର୍ଷାର ଝର ଝର ନାଦ, ଆଉ ପବନର ସାଇଁ ସାଇଁ ଶବ୍ଦରେ ରାତି ଗର୍ଜୁଥିଲା । ଏ କାଳ ରାତି କ'ଣ ସତେ ପାହିବ ? ପିଲାର ଅବସ୍ଥା ଦେଖି ଅନସୂୟା ପଥର ପାଲଟିଯାଇଥିଲେ । ପାଖରେ ଚାକର ପିଲାଟିଏ ଛଡ଼ା ଆଉ କେହି ନାହିଁ । ଏଣେ ପିଲାଟା ଆଡ଼କୁ ଅନାଇବାକୁ ଅନସୂୟାଙ୍କୁ ଡର ଲାଗୁଛି ।

ଅନସୂୟା ମନକୁ ଟାଣ କଲେ । ହୁଏତ ମନେ ମନେ ଠାକୁରଙ୍କୁ ଡାକୁଥିବେ । କଂସାରେ ପାଣି ଆଣି ଭଲକରି ପୁଅ ମୁଣ୍ଡକୁ ଧୋଇଦେଲେ । କିଛି ଦିନ ତଳେ ତାଙ୍କୁ ଜର ହୋଇଥିଲା ବେଳେ ରାଜଧାନୀରୁ ଔଷଧ ଆସିଥିଲା । ସେ ତ ଏମିତିରେ ସେସବୁ ଖାଆନ୍ତି ନାହିଁ । ସେମିତି ଥୁଆ ହୋଇଥିଲା । କି ଔଷଧ କଅଣ—ଏସବୁ ସେ ଜାଣନ୍ତି ନାହିଁ । ଆଜି ଜୀବନ ବିକଳରେ ଖୋଜି ଖୋଜି ସେଇଆକୁ ଠାବ କଲେ । ପୁଅକୁ ଖୁଆଇ ଦେଲେ । କେତେ-ବେଳ ପରେ ମନେହେଲା, ତାତି ସେମିତି କମୁଚି । ପୁଅ ଆଖି ମେଲି ଅନାଇଲା । ଏ ଭିତରେ ସକାଳ ହୋଇ ଆସିଥିଲା । ଯେତେ ବଢ଼ିଝଡ଼ ହେଲେ ବି ମନ୍ତ୍ରୀଙ୍କ ପାଖରେ ଖବର ପହଞ୍ଚେଇବାକୁ ଲୋକର ଅଭାବ ହୋଇ ନଥିଲା । ତା'ପରେ ବିଜୁଳି ଭଳି ସବୁକାମ ହୋଇ ଯାଇଥିଲା । ଡାକ୍ତର ଆସିଥିଲେ, ଆମ୍ବୁଲାନ୍ସ ଆସି ଥିଲା । ପିଲାଟି ଡାକ୍ତରଖାନାରେ ପହଞ୍ଚିଲା-ବେଳକୁ ଗୋଟିଏ ଓଳି ବିତିଯାଇଥିଲା ।

ଜୀବନ ତ ଏମିତି ତାଙ୍କର । ସଂସାରରେ ଜୋର୍‌କରି ଛଡ଼ାଇ ନନେଲେ କିଛି ମିଳେ ନାହିଁ, ଏ ତତ୍ତ୍ୱ ଅନସୂୟାଙ୍କୁ ଜଣା ନଥିଲା । ପିଲା ଥିଲେ, ସମସ୍ତଙ୍କ ପଛରେ ନିପାରିଲା ଆଖିରେ ଠିଆ ହୋଇ ନୂଆ ଜିନିଷଟି ଆଡ଼କୁ ଅନାଇ ମନକୁ ବୁଝାଇବାକୁ ହେଉଥିଲା । ଏସବୁ ତାଙ୍କ ପାଇଁ ନୁହେଁ—ତାଙ୍କର କୋଉ ଦାଣ୍ଡିଗାରିଆ ବାପ ଅଛନ୍ତି ନା ଠେଙ୍ଗାଧରା ଭାଇ ଅଛି ? ନିଜ ଯୋଗ୍ୟତାରେ ତ କିଛି ମିଳେ ନାହିଁ । ଛଡ଼େଇ ବି ସେ ଆଣି ପାରିବେ

ନାହିଁ । ମନକୁ ମାରି, ମନକୁ ବୁଝାଇ ତାଙ୍କୁ ଚଳିବାକୁ ପଡ଼ିବ, ଆଉ ଏଇ ହେବ ତାଙ୍କର ଜୀବନ ।

ସେମିତି ବି ହୋଇଥିଲା । ନିଜର ମତକୁ ସେ କାହା ଉପରେ ଲଦି ଦେବାକୁ ପଡ଼ିବ, ନିଜର ଉପସ୍ଥିତିକୁ ସେ ଅନ୍ୟମାନଙ୍କ ଦ୍ୱାରା ସ୍ୱୀକାର କରାଇ ନେବାକୁ ପଡ଼ିବ, ଏ କଥାଟି ସେ ମୋଟେ ବୁଝିପାରି ନଥିଲେ । ଜୀବନ ସାରା ଘରେ, ବାହାରେ, ଏମିତିକି ନିଜ ପିଲାମାନଙ୍କ ନିକଟରେ ମଧ୍ୟ ସେ ଏମିତି ଚଳିଥିଲେ । ମା' ଅଛନ୍ତି, ବୋଉ ଅଛୁ—ବାସ୍ ଏତିକି ତାଙ୍କର ସ୍ୱୀକୃତି । ସେତିକିରେ ସେ ସନ୍ତୁଷ୍ଟ ।

ଆଜି ସେ ଶୋଇପଡ଼ିଛନ୍ତି । ଘରସଂସାର, ପୁଅ ବୋହୂ, ସମସ୍ତେ ଅଛନ୍ତି, ଆଉ ଅଛନ୍ତି ସ୍ୱାମୀ ଯାହାଙ୍କ ପାଇଁ ସାରାଜୀବନ ସେ ଟିକିଏ ବି ଶାନ୍ତି ପାଇନାହାନ୍ତି । ନିଜକୁ ଜାଳି ପରିବାରର ଧୂଆଁଳିଆ ପରିବେଶକୁ ଆଲୋକିତ କରିବାକୁ ସେ ଚେଷ୍ଟା କରିଛନ୍ତି । ପତ୍ନୀ ହିସାବରେ ସ୍ୱୀକୃତି ପାଇଛନ୍ତି ସିନା, ହେଲେ ସାନ୍ନିଧ୍ୟ ପାଇନାହାନ୍ତି । ଦୁଷ୍ମନ୍ତ ଚୌଧୁରୀ ସ୍ୱତନ୍ତ୍ର ଏକ ଗ୍ରହର ଉଜ୍ଜ୍ୱଳତା ନେଇ ନିଜ କକ୍ଷରେ ନିଜେ ଘୂରି ବୁଲିଛନ୍ତି । ଏମିତି ବୁଲୁବୁଲୁ ସେ ଅନସୂୟାଙ୍କ ପାଖକୁ ଅଳ୍ପ ସମୟ ପାଇଁ ଆସିଛନ୍ତି—ସେତିକିରେ ଅନସୂୟା ତରଳି ଯାଇଛନ୍ତି, ଶିହରି ଉଠିଛନ୍ତି—ପୁଣି ବନ୍ଦି ଯାଇଛନ୍ତି ନିଜର ପରିଧି ଭିତରେ । ଦୁଷ୍ମନ୍ତ ଏବେ କେଉଁ ଶାନ୍ତି ପାଇଥିବେ ?

ଶେଷ ଜୀବନରେ ଅନସୂୟା ସ୍ୱାମୀଙ୍କ ପାଇଁ ଭାରି ମନସ୍ତାପ ପାଇଲେ । ଦୁଷ୍ମନ୍ତଙ୍କ ଆଡ଼କୁ ଅନାଇଲେ ତାଙ୍କର ପ୍ରାଣ ଶୁଖିଯାଉଥିଲା । ଏକଦା ସାରା ଓଡ଼ିଶାକୁ କମ୍ପାଉଥିଲେ ନିଜର ଥରହର ପ୍ରତାପରେ । ଶାସନର କୂଟକୌଶଳ ସେ ପାଇଥିଲେ ଉତ୍ତରାଧିକାର ସୂତ୍ରରେ । ତାଙ୍କର ପୂର୍ବଜମାନେ ନିଜ ଅଞ୍ଚଳରେ ବାଘ ଆଉ ଛେଳିକୁ ଏକାଠିରୁ ପାଣି ପିଆଇ ଗର୍ଭିଣୀ ଗାଈକୁ ମଧ୍ୟ ସେମାନଙ୍କ ପାଇଁ ବାଟ ଛାଡ଼ି ଦେବାକୁ ବାଧ୍ୟ କରୁଥିଲେ । ଦୁଷ୍ମନ୍ତ ହାଡ଼େ ହାଡ଼େ ବୁଝିଥିଲେ ଦୁନିଆଁ ଶକ୍ତିର ଭକ୍ତ । ଯିଏ ଶକ୍ତି ଜାହିର କରିପାରିଲା ସିଏ ଦୁନିଆଁ ଜିଣିଲା । ଆଉ ଏ ଦୁନିଆଁ ତ ବିଜେତାର । ତାକୁ ନେଇ ଲେଖାହୁଏ ଇତିହାସ । ବିଜିତକୁ କିଏ ପଚାରେ ? ଦୁଷ୍ମନ୍ତ ଯେମିତି ଇତିହାସର ନାୟକ ହେବାକୁ ଜନ୍ମ ହୋଇଥିଲେ । ଦ୍ରୁତ ଗତିରେ ସେଇ ଆଡ଼କୁ ଆଗେଇ ଯାଉ ଯାଉ ଅକସ୍ମାତ୍ ଅଣ୍ଟୁ ମାଡ଼ି ପଡ଼ିଗଲେ । ପନ୍ଦରବର୍ଷ ବୟସରୁ ଯୋଉ ବାଟରେ ଚାଲି ଆସୁଥିଲେ, ଯାହାର ପ୍ରତ୍ୟେକ ଧୂଳିମାଟି, ଉଠାଣି ପକାଣି, ଖାଲ ଖମାଣି ସହିତ ତାଙ୍କର ନାଡ଼ିର ଯୋଗ ରହିଥିଲା । ଶେଷକୁ ସେଇ ବାଟ ତାଙ୍କୁ ଧୋକ୍କା ଦେଲା । ଅନସୂୟା ଜାଣନ୍ତି, ବାଟ କାହାକୁ ଧୋକ୍କା ଦିଏନାହିଁ । ସାଙ୍ଗରେ ଚାଲୁଥିବା ବାଟୋଇ ହିଁ ସେଥିରେ ସାଥୀ ପାଇଁ ଗାତ ଖୋଳେ । ତାଳପତ୍ର ଆଉ ଧୂଳିମାଟିରେ ତାକୁ ଲୁଚାଇ ରଖେ । ଆନମନା ବାଟୋଇ ଅଧିକ ଆତ୍ମବିଶ୍ୱାସ ନେଇ ସେଇ ବାଟରେ ଆଗେଇ ଯାଉ ଯାଉ ଖାଲରେ ପଡ଼େ, ଗୋଡ଼ ହାତ ଭାଙ୍ଗେ । ଉଦ୍ଧାର କରିବାକୁ ପାଖରେ

କେହି ନଥାନ୍ତି । ଚତୁର ଧାଙ୍ଗଟି ନରପଦ ଦୂରତ୍ୱରେ ଠିଆ ହୋଇ କୁମ୍ଭୀରକାନ୍ଦଣାରେ ଗଗନପବନ ମୁଖରିତ କରିବେ ।

ଦୁଷ୍ମନ୍ତ ଏମିତି ପଡ଼ିଲେ । ପାଖରେ ଠିଆ ହୋଇ ସହାନୁଭୂତି ଦେଖାଇବାକୁ ଅନେକ ତ ଆଗେଇ ଆସିଲେ । ମାତ୍ର ଯେତେବେଳେ ସେମାନଙ୍କର ହୃଦ୍‌ବୋଧ ହୋଇଗଲା ଯେ, ଦୁଷ୍ମନ୍ତଙ୍କ କାଳ ଶେଷ ହୋଇଛି, ସେ ପ୍ରକୃତରେ ଭୂତ ହୋଇଯାଇଛନ୍ତି, ସେତେବେଳେ ଦ୍ୱିତୀୟ ଥର କେହି ଅଉ ଏ ମୁହାଁ ହେଲେ ନାହିଁ । ଆକାଶରେ ସେତେବେଳେ ନୂତନ ଚନ୍ଦ୍ରର ଅଳ୍ପପ୍ରକାଶ ଘଟି ଯାଇଲଣି । କୃଷ୍ଣପକ୍ଷର କ୍ଷୀୟମାଣ ମ୍ଳାନ ଚନ୍ଦ୍ରିକା ଆଉ କାହା ପାଇଁ ନିନ୍ଦନୀୟ ହୁଅନ୍ତା ?

ଅନସୂୟାଙ୍କର ପ୍ରଥମେ ବିଶ୍ୱାସ ହୋଇ ନ ଥିଲା । ତାଙ୍କର ସ୍ପଷ୍ଟ ମନେଥିଲା ସେଇ ଦିନଟି, ଯେଉଁଦିନ ସନା ମୁଦୁଲି ନିଜର ଯୁବକ ପୁଅ ବନା ମୁଦୁଲିର ହାତ ଧରି ଚୌଧୁରୀ ଘର ପଥର ବୃନ୍ଦନୀ ତଳେ ଯୋଡ଼ ହସ୍ତ ହୋଇ ଠିଆ ହୋଇଥିଲା । ମଞ୍ଜି କଦଳୀପତ୍ର ଖଣ୍ଡିଏ ଖୋଲା ହୋଇ ପାହାଚ ଉପରେ ରଖା ହୋଇଥିଲା । ତା' ଉପରେ ଠୁଳ ହୋଇଥିଲା ଧୋବ ଫର ଫର ବାଲିଛତୁ ମେଞ୍ଚାଏ । ସନା ଜାଣେ ଛତୁ ଉଅଣ ପ୍ରତି ଦୁଷ୍ମନ୍ତଙ୍କର ଦୁର୍ବଳତାର କଥା —ଗାଁରେ ସମସ୍ତେ ଜାଣନ୍ତି । ସଞ୍ଜପହରେ ବାଡ଼ିଆଡ଼କୁ ଯାଇ ସେ କରଞ୍ଜ ଗଛମୂଳେ ଛତୁଫୁଟା ହୁଙ୍କାକୁ ଠାବ କରି ଆସିଥିଲା । ତା'ପରେ ବଡ଼ିଭୋରୁ କେହି ଉଠିବା ଆଗରୁ ସାପ ବିଛାକୁ ନ ଡରି ଛତୁତକ ତୋଳି ଆଣିଛି । ଦୁଷ୍ମନ୍ତ ତା ପୂର୍ବଦିନ ଦିପହରେ ଗାଁରେ ପହଞ୍ଚିଥିବାର ସେ ଜାଣେ । ଟୋକାଟାକୁ ତ ଯେମିତି ହେଲେ କୂଳରେ ଲଗାଇବାକୁ ପଡ଼ିବ ।

ଦୁଷ୍ମନ୍ତ ଦାଣ୍ଡ ବାରଣ୍ଡାରେ ଆର୍ମଚେୟାର୍ ଖଣ୍ଡିକରେ ବସିଥିଲେ । ଛତୁଆଡ଼େ ତାଙ୍କର ନଜର ପଡ଼ିଥିଲା । ପରିତୃପ୍ତିର ହସ ହସି ସେ କହିଲେ—କିରେ ସନା, ଇଏ କ'ଣ ?

ମୁଣ୍ଡ କୁଣ୍ଡାଉ କୁଣ୍ଡାଉ ସନା ବିନୀତ କଣ୍ଠରେ କହିଲା—"ସାନ ସାଆନ୍ତେ ଆଇଚନ୍ତି ବୋଲି ଆକୁ କ'ଣ ଆଉ ରାତିରେ ନିଦ ଅଛି ? କୋଉ ସକାଳୁ ଉଠି ଛତୁ ଯୋଗାଡ଼ରେ ଲାଗିଛି ।"

ଦୁଷ୍ମନ୍ତ ଏଥର ବନା ଆଡ଼କୁ ଅନାଇଲେ । ଏଇ ବୟସରେ ଆଖିରେ କୁଟିଳତାର ଛାପ ତାଙ୍କୁ ସ୍ପଷ୍ଟ ଦେଖାଗଲା । କହିଲେ—ଇଏ ତୋ ପୁଅ ପରା । କ'ଣ କରୁଛି ଏଇନେ ?

ସନା ଏଇ ପ୍ରଶ୍ନକୁ ଅପେକ୍ଷା କରୁଥିଲା । ତେବେ ନିଜକୁ ସଂଯତ କରି ଟିକିଏ ହାଲୁକା ଭାବରେ କହିଲା—ସାତପୁରୁଷରୁ ଏଇ ଘରର ନିମକ୍ ଖାଇ ମୋ ସତାଣୋଇ ପୁରୁଷ ମଣିଷ । ତେମେ ଆପଣ ଖାଲି ଟିକିଏ ଆଖି ପକେଇଦେଲେ, ତା'ର ଆଉ ଚିନ୍ତା କ'ଣ ?

ଦୁଷ୍ମନ୍ତ ଟିକଏ ହସି ଚୁପ ରହିଥିଲେ । ସେଦିନର ସେଇ ବନା ମୁଦୁଲି ଆଜି ବନବିହାରୀ ମୁଦୁଲି—ସରକାରଙ୍କର ମାନ୍ୟବର ମନ୍ତ୍ରୀ । ଖଣ୍ଡେଇତା ଗାଁର ଗୋଟିଏ ଦରିଦ୍ର-ନାହାଗୁଳିଆ ଘରୁ ରାଜଧାନୀର ମନ୍ତ୍ରୀ ନିବାସରେ ପହଞ୍ଚିବାକୁ ତାକୁ ଲାଗିଥିଲା ମାତ୍ର ଦଶବର୍ଷ । ଏଇ ସମୟରେ ଦୁଷ୍ମନ୍ତ ତାକୁ ପାଖେ ପାଖେ ରଖିଛନ୍ତି । ରାଜନୀତିର ଅନ୍ଧଗଳିରେ ସାବଧାନ ହୋଇ ବାଟ ଚାଲିବାକୁ ଶିଖେଇଛନ୍ତି । ଝୁଣ୍ଟି ପଡ଼ିଲେ ଉଠେଇଛନ୍ତି, ଭୁଆଁ ବୁଲିଲାବେଳେ ବାଟ ଦେଖେଇଛନ୍ତି ଆଉ ଭାଙ୍ଗି ପଡ଼ିଲା ବେଳେ ବାରବାର ଯୋଗାଇଛନ୍ତି ସାହସ ।

ସେଇ ବନା ମୁଦୁଲି ଆଜି ମାନ୍ୟବର ମୁଦୁଲି ହୋଇ ଓଡ଼ିଶାର ରାଜନୀତି-ଆକାଶରେ ଶରତ୍କାଳର ପୂର୍ଣ୍ଣଚନ୍ଦ୍ର ଭଳି ଝଲୁଚି । ଆଉ ଦୁଷ୍ମନ୍ତ ? ହଜିଲା ଅତୀତକୁ ନିଜ ଭିତରେ ଖୋଜ୍ ଖୋଜ୍ ପଥର ହୋଇଯାଇଛନ୍ତି ନା କ'ଣ । ଏମିତି କାହିଁକି ହେଲା ?

କାନ୍ଦି କାନ୍ଦି ସେଦିନ ଅନସୂୟା ଭାଙ୍ଗି ପଡ଼ିଥିଲେ । ନିଜକୁ ଏତେ ଅସହାୟ ସେ ଏହାପୂର୍ବରୁ କେବେ ମନେ କରି ନ ଥିଲେ । ଦୁଷ୍ମନ୍ତ ଥିଲେ ତାଙ୍କର ରକ୍ଷା କବଚ । ପାଖରେ ନ ଥାନ୍ତୁ । ସେ ନିର୍ଭର ଜାଣୁଥିଲେ ସେ ଅଛନ୍ତି, ତେଣୁ ଅନସୂୟା ବି ରହିବେ । ମହାଶୂନ୍ୟରେ ଅଙ୍ଗୁଳି ଘୁରାଇ ନାନା ଗାର କାଟି କାଟି ଦୁଷ୍ମନ୍ତ ସତେ ଯେମିତି ନିଜ ଜୀବନର ଅଛୁଣ୍ଡା ଅଙ୍କ ମିଳାଇବାକୁ ଚେଷ୍ଟା କରୁଥିଲେ ଆଉ ସବୁବେଳେ ନିଜକୁ ନିଜେ କଣ ସବୁ କହିଯାଉଥିଲେ । ସମୟ ତାଙ୍କ ପାଇଁ ନିସ୍ତରଙ୍ଗ ହୋଇ ଯାଇଥିଲା । ଆଃ—ନିଜର ସର୍ବସ୍ୱ ଦେଇ ଅନସୂୟା ଯଦି ଦୁଷ୍ମନ୍ତଙ୍କୁ ପୁଣି ଥରେ ସମୟ-ରଥର ଘର୍ଘର ନିନାଦ ଶୁଣାଇ ପାରନ୍ତେ ।

ଦୁଷ୍ମନ୍ତଙ୍କର ବୟସ ହୋଇଯାଇଥିଲା । ରାଜନୀତିରେ ସନ୍ନ୍ୟାସ ଚଳେ ନାହିଁ । ଯମ ଆସି ଗୋଟିଏ ଗୋଡ଼ ଟାଣିଲା ବେଳକୁ ଆର ଗୋଡ଼ଟି ସିଂହାସନ ଆଡ଼କୁ ଟାଣି ହେଉଥାଏ । ଦୁଷ୍ମନ୍ତ ପୁଣିଥରେ ନିର୍ବାଚନ ପାଇଁ ପ୍ରସ୍ତୁତ ହେଉଥିଲେ । ହୁଏତ ଏଇଟା ହେବ ତାଙ୍କ ଜୀବନରେ ଶେଷ ନିର୍ବାଚନ । ଅସୁବିଧା ବି କିଛି ନ ଥିଲା । ଯେଉଁ ଆତ୍ମବିଶ୍ୱାସ ତାଙ୍କୁ ଏତେ ବାଟ ନେଇ ଆସିଲା, ଏଥର ବି ତାହାରି ଜୋର୍‌ରେ ସେ ନିର୍ବାଚନ ବୈତରଣୀ ପାର ହୋଇଯିବେ, ଏଥିରେ ପ୍ରାୟ ନିଶ୍ଚିତ ଥିଲେ ।

ପ୍ରାର୍ଥୀପତ୍ର ଦାଖଲର ଶେଷ ତାରିଖ । ଦେହଟା ସକାଳୁ କିଛି ଭଲ ଲାଗୁ ନଥିଲା । ଯିବା, ଯାଉଛୁ କହି ଶେଷରେ ଅପରାହ୍ଣରେ ଦୁଷ୍ମନ୍ତ ଚୌଧୁରୀ ଗାଁରୁ ବାହାରିଲେ । ବାଟ ପଚିଶ କିଲୋମିଟର । ଗାଡ଼ିରେ ଯିବାକୁ ଖୁବ୍ ବେଶିରେ ଲାଗିବ ଘଣ୍ଟାଏ । ଡ୍ରାଇଭର ରହିମ ମିଆଁ ହୁସିଆର ଲୋକ । ଏସ. ଡି. ଓ. ଅଫିସରେ ସମସ୍ତେ ଚିହ୍ନା । ସେଠି ବଡ଼ହୋଇ ଅଧଘଣ୍ଟା କାଗଜପତ୍ର ପ୍ରସ୍ତୁତ ରହିଚି । ଖାଲି ଯାହା ଦାଖଲ କରିବା କଥା ।

ଦୁଷ୍ମନ୍ତଙ୍କର ଏଇସବୁ ଚିନ୍ତା ଭିତରେ ଗାଡ଼ି ନାସନାଲ୍ ହାଇୱେ ଧରି ସାରିଥିଲା । ଆଗରେ ଜଳ ଜଳ ହୋଇ ଦେଖାଯାଉଥିଲା ଅତି ପରିଚିତ ସେଇ ରାଜରାସ୍ତା ଆଉ ଦୂରରୁ

ନିକଟକୁ ଆସି ପୁଣି ଦୂରେଇ ଯାଉଥିବା ମାଇଲ ଖୁଣ୍ଟଗୁଡ଼ିକ । ହଠାତ୍ ଗୋଟାଏ ଅସ୍ୱାଭାବିକ ଶବ୍ଦ କରି ଗାଡ଼ି କିଛି ବାଟ ଟଳି ଟଳି ଘୋଷାରି ହୋଇ ରହିଗଲା । ଅଭିଜ୍ଞ ଚାଳକ ସମ୍ଭାଳି ନେଇ ଏକ ନିଶ୍ଚିତ ଦୁର୍ଘଟଣାରୁ ତାଙ୍କୁ ବଞ୍ଚାଇ ଦେଇଛି । ଗାଡ଼ି ଖୋଲି ସେ ବାହାରକୁ ଆସିଲେ । ବାଁ ପଟ ପଛ ଚକ ପଙ୍ଚର୍ । ଅଖିରେ ଦେଖାଯାଉଛି ଚକ ଭିତରକୁ ଢୁକିଛି ଏଡ଼େ ବଡ଼ ଏକ ଲୁହାକଣ୍ଟା । ରହିମ୍ କାମରେ ଲାଗିଗଲା । ଡିକିରୁ ଷ୍ଟେପ୍ନୀ କାଢ଼ି ଚକ ବଦଳାଇ ଷ୍ଟିଅରିଂ ଧରିବା ବେଳକୁ ଅଧଘଣ୍ଟା । ଏସ୍. ଡି. ଓ. ଅଫିସ୍‌ରେ ପହଞ୍ଚିଲା ବେଳକୁ ହାତରେ ମାତ୍ର ପଚିଶ ମିନିଟ୍ ସମୟ ।

ଦୁଷ୍ମନ୍ତ ଜୀବନରେ କେବେ ଧୈର୍ଯ୍ୟ ହରା ହୋଇନାହାନ୍ତି । ଅଟଳ ଗାମ୍ଭୀର୍ଯ୍ୟ ଭିତରେ ନିଜର ମନକୁ ସତର୍କତାର ସହିତ ଘୋଡ଼ାଇ ରଖିଛନ୍ତି । ଏବେବି ସେମିତି ଧୀର ପଦକ୍ଷେପରେ ସେ ଆଟାଚିଟିକୁ ଧରି ଗାଡ଼ିରୁ ଓହ୍ଲାଇ ଆସିଲେ । ସେଥିରେ ସବୁ କାଗଜପତ୍ର ଅଛି ।

ବିପରୀତ ଦିଗରୁ ଆସୁଚି ବନବିହାରୀ । ସେ ଏଥର ନିର୍ବାଚନରେ ପାର୍ଟି ତରଫରୁ ତାଙ୍କର ଡମି ଭାବରେ ଅବତରଣ କରୁଛି । ପ୍ରସ୍ତାବ ଦେଇଥିଲେ ନିଜେ ଦୁଷ୍ମନ୍ତ । ବନାକୁ ସେ ନିଜ ହାତରେ ଗଢ଼ିଛନ୍ତି । ସେ ଜାଣନ୍ତି, ବନବିହାରୀ ଏଥର ଆସି ତାଙ୍କର ପାଦଧୂଳି ନେବ । ଆଉ ଜଣେ ଗଡ଼ସେ ଗାନ୍ଧୀଙ୍କର ପାଦଧୂଳି ନେବାକୁ ନଇଁପଡ଼ିଲା ।

ତା'ପରର ଘଟଣା ତ ନାଟକୀୟ ହେବାର କଥା । ହେଲା ବି । କ'ଣ ହେଉଚି, ଘଟଣା ସ୍ୱପ୍ନ ନା ସତ୍ୟ, ଏତିକି ଜାଣିବା ପୂର୍ବରୁ ଦୁଷ୍ମନ୍ତ ଦେଖିଲେ ବନା ମୁଦୁଲି ତାଙ୍କ ହାତରୁ ଆଟାଚିଟା ଝାମ୍ପିନେଇ କ୍ଷିପ୍ର ଗତିରେ ବାହାର ଆଡ଼କୁ ଧାଉଁଚି । ଦୁଷ୍ମନ୍ତ କେବଳ ଚକିତ ହୋଇ ଅନାଇ ରହିଲେ । ରହିମ୍ ମୁହୂର୍ତ୍ତିକରେ ଘଟଣାକୁ ବୁଝିନେଲା । ବନା ପଛରେ ଧାଇଁ ତାକୁ ଧରିପକାଇଲା ବେଳକୁ ହାତରେ ପଡ଼ିଲା ତା'ର କଲର୍ । କ୍ଷିପ୍ର ହାତରେ ବନା ମୁଦୁଲି ନିଜ ପିନ୍ଧିବା ଲୁଗାର ଆଗପଟ ଖୋଲିପକାଇ ପ୍ରାଣପଣେ ଦୌଡ଼ିଲା । ରହିମ୍ ଅସହାୟ ଭାବରେ ବନାର କଲରକୁ ଧରି ଅଣ୍ଡରଓ୍ୱାର ପିନ୍ଧା ତାର ଦ୍ରୁତ ଅପସୃୟମାଣ ମୂର୍ତ୍ତି ଆଡ଼େ ଅନାଇ ରହିଥାଏ ।

ଘଣ୍ଟାର ଟିଂ ଟିଂ ଶବ୍ଦ ସହିତ ଏଥର ଅଫିସ୍ ଭିତରୁ ବାହାରି ଆସିଲେ ସ୍ୱୟଂ ଏସ୍. ଡି. ଓ. । ଦୁଷ୍ମନ୍ତଙ୍କ ଆଡ଼କୁ ଅନାଇ ମୁଲାଏମ କଣ୍ଠରେ କହିଲେ, Am sorry sir ଇତ୍ୟାଦି ଇତ୍ୟାଦି । ଘଟଣାର ଅଭାବନୀୟ ପରିସ୍ଥିତିରେ ଦୁଷ୍ମନ୍ତ ସତେ ସେମିତି ମୂକ ପାଲଟି ଯାଇଥିଲେ । ତାଙ୍କ ପାଟିରୁ କଥା ବାହାରୁ ନ ଥିଲା । ବନାର ଗୁଳିରେ ତାଙ୍କ ହୃଦୟରୁ ରକ୍ତ କ୍ଷରଣ ହେବାକୁ ଆରମ୍ଭ କରିଥିଲା । ରହିମ୍ କୌଣସି ମତେ ତାଙ୍କୁ ଘରକୁ ଫେରାଇ ଆଣିଥିଲା ।

ତା'ପରେ କେତେ ଡାକ୍ତର, ବୈଦ୍ୟ, ଜଡ଼ିବୁଟି ମନ୍ତ୍ରତନ୍ତ୍ର । ହେବୁ ନିଷ୍ଫଳ । ଦୁଷ୍ମନ୍ତ ଜୁଳୁଜୁଳୁ ଅନାଇଥାନ୍ତି । ଉଠାଇଦେଲେ ଉଠନ୍ତି, ବସାଇଦେଲେ ବସନ୍ତି । ଖୁଆଇ-ଦେଲେ ଖାଆନ୍ତି ଆଉ ସବୁବେଳେ ଶୂନ୍ୟରେ ଆଙ୍ଗୁଠି ଘୁରାଇ କ'ଣ ଗୁଣୁ ଗୁଣୁ ହୋଇ କହୁଥାଆନ୍ତି ।

ତାଙ୍କ ଆଡ଼କୁ ଅନାଇଲେ ଅନସୂୟାଙ୍କର ଆଖିକୁ ପାଣି ଆସେ । ମନହୁଏ ପାଖରେ ବସିବେ । ଗୋଟାଏ ବାଟରେ କଣ୍ଟା ମାଡ଼ି କାଉଁରି ହୋଇ ବସିପଡ଼ିବା ଯେ ଶତ୍ରୁର କାମ, ସେ କଥା ଥରେ ବୁଝାଇ କହିବେ । ସେ ବେଶ୍ଣି ପାଠ ପଢ଼ିନାହାନ୍ତି ସିନା, ତେବେ ଉପରେ ପାଣି ଛୁଇଁ ଭିତରୁ ଚେର କାଟିବା ମଣିଷ ପିଲର ଯେ ଆଜିର ଦୁନିଆରେ ଗୋଟାଏ ସାଧାରଣ ପ୍ରବୃତ୍ତି, ଏ କଥା ଦୁଷ୍ମନ୍ତଙ୍କର ଅଭିଜ୍ଞ ମନରେ ଧରା ପଡ଼ିଲା ନାହିଁ । କେମିତି ଏଇ କଥା ପଗ୍ଭରିବେ । ମାଟି ଯାହା ସେ କେବେ କରିନାହାନ୍ତି, ଆଜି କିପରି କରନ୍ତେ ? ଯାହାଙ୍କ ମୁହଁକୁ ଅନାଇ ପଦେ କଥା କହିନାହାନ୍ତି, ତାଙ୍କ ସାଙ୍ଗରେ ଆଲୋଚନା ? ତାଙ୍କ ଉଠିଲା ପାଦ ଅଟକି ଯାଏ । ମନ ଗହନରେ ଅକୁହା କଥା ସେମିତି ଯାତ ତାଳ ପାଣିର ଅମୁହାଁ ଦେଉଳରେ ବନ୍ଦୀ ହୋଇ ରହିଯାଏ । ଗ୍ରନ୍ଥ ଫାଟିଯାଏ, ପାଟି ଫିଟେ ନାହିଁ ।

ଅନସୂୟା ସବୁଦିନେ କମ୍ କଥାର ମଣିଷ । ପାଖରେ କେହି ନାହିଁ, ଯାହାକୁ ସେ ମନକଥା କହିପାରନ୍ତେ । ଠାକୁରଙ୍କ ପାଖରେ ଘଣ୍ଟା ଘଣ୍ଟା ଧରି ନୀରବରେ ଲୁହ ଗଡ଼ାଇବା ଛଡ଼ା ସେ ତା ଆଉ କ'ଣ କରିପାରନ୍ତେ ? ତାଙ୍କର ଝଡ଼ ଆରମ୍ଭ ହୋଇଥିଲା ସେଇ ଦିନରୁ, କାହାକୁ ତ କିଛି କହିବେ ନାହିଁ । କ'ଣ ହୋଇଚ, ଏହା ଜଣା ପଡ଼ିବା ପୂର୍ବରୁ ଅନସୂୟା ଦିନେ କଞ୍ଚିନ୍ତ ନିଦରେ ଶୋଇପଡ଼ିଲେ । ସବୁଦିନ ପାଇଁ ମୁକ୍ତି ପାଇଗଲେ ।

ସାରା ସହର ଭାଙ୍ଗିପଡ଼ିଲା । ଜଣକ ପରେ ଜଣେ ମନ୍ତ୍ରୀ ଆସିଲେ, ଭୂଆ ବଙ୍କେଇ ପରି ସନ୍ଦେହ ଦୃଷ୍ଟିରେ ଚାରିଆଡ଼କୁ ଅନାଇ ଅନାଇ ପାଦ ଚପି ଚପି, ମୁହଁରେ ବଣୁଫସାର ଧ୍ୱଂସ ହୋଇଯିବାର ବେଦନାର ଚିହ୍ନ ଫୁଟାଇ । ଅଫିସର୍ ଆସିଲେ ନେଉଳଭଳି ତରଙ୍ଗ ତରଙ୍ଗ ହୋଇ ଚାରିଆଡ଼କୁ ଦେଖି ଦେଖି କିଏ ଦେଖିପକାଇଲା କି ? No use in wooing a setting sun. ତଥାପି ସେମାନେ ଆସିଲେ । ଅନସୂୟାଙ୍କ ବିଦ୍ରୋହ ସେମାନଙ୍କ ପାଇଁ କେତେକେତେ ବ୍ୟକ୍ତିଗତ ଛନ୍ଦ, ବିଭିନ୍ନ ବାକ୍ୟବିନ୍ୟାସରେ ବଡ଼ପାଟିରେ ବିସ୍ମାନ କଲେ । ତା'ପରେ ଗୋଟି ଗୋଟି ହୋଇ ନିଜ ବାଟରେ ବାହୁଡ଼ିଲେ ବିଭିନ୍ନ ଜରୁରୀ କାମର ତାଲିକା ଦେଖାଇ । କିଏ ଶୁଣୁଛି ?

ମାନ୍ୟବର ମନ୍ତ୍ରୀ ବନବିହାରୀ ମୃଦୁଳ ସମ୍ବାଦ ପାଇବା ମାତ୍ରେ ଧାଇଁ ଆସିଥିଲେ । ନବବଧୂ ବେଶରେ ସଜ୍ଜିତା ଅନସୂୟାଙ୍କ ଅଲତାରଙ୍ଗା ପାଦ ଉପରେ ମୁଣ୍ଡଥୋଇ ମା' ମା' ବୋଲି କହି କେତେ କାନ୍ଦିଥିଲେ । ନିଜର ସମସ୍ତ ଦୁଃଖ ଭୁଲି ରହିମ୍ ମିଆଁ ତାଙ୍କ ଆଡ଼େ କଟମଟ କରି ଅନାଇଥିଲା । ଅନସୂୟାଙ୍କର ପର ଆପଣା ନ ଥିଲା । ମା' ମା' ବୋଲି ପଛେ

ପଛେ ଗୋଡ଼ାଉଥିବା ଏଇ ଅଜାଡିଆ ପିଲାଟି ପ୍ରତି ତାଙ୍କର ପ୍ରକୃତ ସ୍ନେହଥିଲା—ନିଜ ଜୀବନ କାଳରେ ସେ ତା'ର ପ୍ରତିଦାନ ବି ପାଇଯାଇଛନ୍ତି ।

ଲୋକ ଆଟପଟାଳି ଖୋଜୁଥିଲେ । ମନ୍ତ୍ରୀଙ୍କର ବ୍ୟାକୁଳତା ଜନତା ଭିତରେ ଏକ ସମ୍ମୋହନ ସୃଷ୍ଟି କଲା ଭଳି ଲାଗୁଥିଲା । ଶବଯାତ୍ରା ନିମନ୍ତେ ପ୍ରସ୍ତୁତି ଆରମ୍ଭ ହୋଇ ଯାଇଥିଲା । ସହରରୁ ଅନସୂୟାଙ୍କୁ ଗାଁକୁ ନେଇଯିବାକୁ ପଡ଼ିବ—ସେଇ ଗାଁ, ଯେଉଁଠି ମଉଳା ଝିଞ୍ଚର ଜହ୍ନିଫୁଲ ଫୁଟା ସୁରଭି ଭିତରେ ଗତ ପଚିଶ ବର୍ଷ ଧରି ସେ ଏକ ଶାନ୍ତ ଆଉ ସ୍ତିମିତ ଆକାଶଦୀପ ଭଳି ଜଳୁଥିଲେ ।

ବନବିହାରୀ ମନେ ମନେ କ'ଣ ଚିନ୍ତା କରୁଥିଲେ । କିଛିକ୍ଷଣ ପୂର୍ବରୁ ଏ ବିଷୟରେ ତାଙ୍କର ଜଣେ ସହଯୋଗୀଙ୍କ ସହିତ ଆଲୋଚନା ବି ହୋଇଯାଇଥିଲା । ବନବିହାରୀ ତାଙ୍କ ସହିତ ଏକମତ ହୋଇଥିଲେ ଯେ, ବର୍ତ୍ତମାନ ପରିସ୍ଥିତିରେ କୌଣସିମତେ ଅନସୂୟାଙ୍କ ଶବକୁ ଗାଁକୁ ନେଇ ସତ୍କାର କରାଇବା ତାଙ୍କ ପାଇଁ ଶୁଭଙ୍କର ହେବ ନାହିଁ । 'କୁଟିଳ ବନବାବୁ' । ଆଖି ନଚାଇ ସହଯୋଗୀ ଜଣକ କହିଥିଲେ—ଗୋଟିଏ ବଡ଼ ବନସ୍ପତି ଯେତେବେଳେ ଭୂଇଁରେ ଲୋଟିପଡ଼େ, ସେତେବେଳେ ସ୍ୱାଭାବିକ ଭାବରେ ଭୂମିକମ୍ପ ହେବ ହିଁ ହେବ । ଆଉ ପୁଣି ଝଣ୍ଡେଇତା ଇଲାକାରେ ଅନସୂୟାଙ୍କ ବିୟୋଗରେ ଯେଉଁ କମ୍ପନ ସୃଷ୍ଟି ହେବ, ତାହାର ପ୍ରଥମ ଶିକାର ତମଛଡ଼ା ଆଉ କିଏ ହେବ ?

ଖାଲି କଥା । ବନବିହାରୀ ବି ଘାସ ଚରିବାଇ ରାଜନୀତି କରୁନାହାନ୍ତି । ବୁଢ଼ାହାତୀକୁ ପଙ୍କରେ ପକାଇବାକୁ ଅତୀତରେ ତାଙ୍କୁ ଯେଉଁ ନାଟକ କରିବାକୁ ହୋଇଥିଲା, ତାହାର ସ୍ମୃତି ଏବେ ମଧ୍ୟ ଲୋକଙ୍କ ମନରେ ଜୀବନ୍ତ । ଏତିକିବେଳେ ଯଦି ଅନସୂୟାଙ୍କ ଶବ ନିକଟରେ ବିଧ୍ୱସ୍ତ ବନସ୍ପତି ତୁଲ୍ୟ ଦୁଷ୍ମନ୍ତଙ୍କୁ ଲୋକେ ଦେଖନ୍ତି, ତେବେ ବନବିହାରୀଙ୍କ ରାଜନୈତିକ ଭବିଷ୍ୟତ ସବୁଦିନ ପାଇଁ ଅନ୍ଧାର ହୋଇଯିବ । ଶହ ଶହ ମିଟିଂ, ଲକ୍ଷ ଲକ୍ଷ ଟଙ୍କା ଯାହା କରି ନ ପାରିବ, ତାହା ଅନାୟାସରେ କରିଦେବ ଏଇ ଗୋଟିଏ ଘଟଣା । ମରିହାତୀ ଲକ୍ଷେ ଟଙ୍କା ।

ବନବିହାରୀ ଅସ୍ଥିର ହୋଇ ପଡ଼ୁଥିଲେ । ଯାହା କରିବାକୁ ପଡ଼ିବ ବର୍ତ୍ତମାନ ହିଁ କରିବାକୁ ହେବ । ଦୁଷ୍ମନ୍ତ ତ ନିଦା ବିସ୍ତୃ-ଥାଇ ନ ଥିଲା ପରି । ବଡ଼ପୁଅ ନିଜ ଇଚ୍ଛାରେ ବିବାହ କରି ବନ୍ଧୁଜନରୁ ଏ ପରିବାରରୁ ଅଲଗା । ସେ ଅବଶ୍ୟ ଅଛି, ମାତ୍ର ବନବିହାରୀ ଜାଣନ୍ତି, ଏହି ବିଷୟରେ ତା'ର କହିବାର ବା କରିବାର କିଛି ନାହିଁ । ଦ୍ୱିତୀୟ ପୁଅ ଅତନୁ ଉପରେ ଦୁଷ୍ମନ୍ତଙ୍କର ଅନେକ ଭରସା । ହୁଏତ ତାକୁ ହିଁ ସେ ନିଜର ରାଜନୈତିକ ଉତ୍ତରାଧିକାରୀ କରିବେ ବୋଲି ପାଞ୍ଚୁଥିଲେ । ଟୋକାଟା ଯେମିତି ଚଉଅଖିଆ, ଥରେ ଫୁଲକା ଉପରକୁ ଆସିଗଲେ କ'ଣ ହେବ, ତାଙ୍କର ଅବସ୍ଥା ? ନାଃ—ବାଟ ଏବଠୁ କାଟିବାକୁ ପଡ଼ିବ ।

ନିଜକୁ ସମ୍ଭାଳି ନେଇ ମନ୍ତ୍ରୀ ଠିଆ ହେଲେ । ଅତନୁକୁ ସମ୍ବୋଧନ କରି ଅନ୍ୟମାନଙ୍କୁ ଶୁଭିଲାଭଳି କଣ୍ଠରେ କହିଲେ—ବୁଝିଲୁ ତନୁ, ମା ମୋତେ ବହୁଥର କହିଛନ୍ତି ତାଙ୍କର ଶେଷ କାମ ଯେମିତି ସ୍ୱର୍ଗ ଦ୍ୱାରରେ ହୁଏ । ଆଉ ଡେରି ଚଳେ ମା' କ'ଣ ବାହୁଡ଼ି ଆସିବେ ? ଶେଷ ଆଡ଼କୁ ମନ୍ତ୍ରୀଙ୍କ କଣ୍ଠ ବାଷ୍ପାକୁଳ ହୋଇଉଠିଲା ।

ଅତନୁ ଆଶ୍ଚର୍ଯ୍ୟ ହେଲା । ବୋଉର ଏଭଳି ଇଚ୍ଛା କଥା ସେ କେବେ ଶୁଣିନାହିଁ । ସାରା ଜୀବନ ଯାହାର ଖାଁରେ କଟିଗଲା, ସେ ସ୍ୱର୍ଗଦ୍ୱାର କଥା ଚିନ୍ତା କଲା କେମିତି, ଆଉ ତାକୁ ପୁଣି ବନବିହାରୀକୁ କହିଗଲା କାହିଁକି ?

ଉପସ୍ଥିତ ଲୋକେ ଏଥିରେ କୌଣସି ଚମତ୍କାର ଦେଖି ନଥିଲେ । ଇଏତ ଉଚିତ୍ କଥା । ହିନ୍ଦୁ ହୋଇ କିଏ ଅବା ମୁକ୍ତିର ଦ୍ୱାରରେ ପାଦ ଥାପିବାକୁ ନ ଚାହେଁ ? ଅନସୂୟା ହୁଏତ କେବେ ଏଭଳି କାମନା ପ୍ରକାଶ କରିଥାଇପାରନ୍ତି ।

ଅତନୁ ମନସ୍ଥିର କରିପାରୁ ନ ଥିଲା ।

ବନବିହାରୀକୁ ସେ ଜାଣେ । ଦୁଷ୍ମନ୍ତଙ୍କ ସହିତ ତାହାର ବର୍ତ୍ତମାନ ଯେଉଁ ସମ୍ପର୍କ ସେଥିରେ ତାକୁ ଯେ କେହି ସନ୍ଦେହ କରିବ । ଅତନୁର ତରୁଣମନର ଶାଣିତ କ୍ରୋଧ ଆଉ ଅପାରଗ ନିରୁପାୟତାର ଗୋଳିଆମିଶା ନାଏଗ୍ରା ଭିତରେ ଭିତରେ ଗର୍ଜନ କରି ଉଠୁଥିଲା । ତାର ସମସ୍ତ ସମ୍ବେଦନଶୀଳତା ଗୋଟିଏ କୋମଳ ମଉଳା ଫୁଲଭଳି ନିଷ୍ଠୁର ସମୟର ପଥର ଖଣ୍ଡ ତଳେ ଚାପି ହୋଇ ଯାଉଥିଲା । ତା'ର ଅନ୍ତର ହିମାଚ୍ଛାଦିତ ହିମଗିରି ଭଳି ସ୍ପର୍ଶଶୂନ୍ୟ ଆଉ ସ୍ପନ୍ଦନହୀନ ହେବାକୁ ଆରମ୍ଭ କରିଥିଲା ।

ଏ ଧରଣର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବ୍ୟାପାରରେ ଶେଷ ନିଷ୍ପତ୍ତି ନେବା ପୂର୍ବରୁ ସମ୍ବେଦନଶୀଳତାର ସମସ୍ତ ତନ୍ତୁକୁ ଭିଡ଼ି ଓଟାରି ବାହାରକୁ ଫିଙ୍ଗିବା ଅତି ଆବଶ୍ୟକ ଥିଲା ।

ଅତନୁ କ'ଣ ତା ପାରିବ ?

ଆଗରେ ପଡ଼ିଚି ଅନସୂୟାଙ୍କର ପ୍ରାଣହୀନ ଦେହ, ଅତନୁର ଶରୀରରେ ଯାହାଙ୍କର ରକ୍ତ ଏବେ ବି ବହି ଚାଲିଚି । ଆଜି ହଠାତ୍ ବନା ମୁଦୁଲି ସେଇ ରକ୍ତକୁ ଅପମାନ କରିବାକୁ ସାହସ କରିଚି ।

ଅତନୁର ମନେହେଉଥିଲା, ତା' ଆଗରେ ଠିଆ ହୋଇଚି ଗୋଟାଏ ଭୟଙ୍କର ଆତତାୟୀ, ତା'ର ନିଷ୍ଠୁର ହସ୍ତର ଗୁଳିରେ ଯେଉଁ ରକ୍ତର ସ୍ରୋତ ଢେଉ ଖେଳୁଚି, ସେ ରକ୍ତ ତା' ନିଜର ।

ଆଗରେ ପଡ଼ିଚି ସନ୍ତୁ କବୀରର ମୃତ ଦେହ । ସଂସାର ପାଇଁ, ପରିବାର ପାଇଁ ସିଏ ନିଜକୁ ଉତ୍ସର୍ଗ କରି ଦେଇଛି, ଆଉ ତାକୁ ନେଇ ଟଣାଟଣି ଚାଲିଚି ବ୍ରଜନାଥର ଶାଗୁଣା ବିଲୁଆ ମାନଙ୍କର ।

ଅତନୁ ଶକ୍ତ ହୋଇ ଆସୁଥିଲା । କିନ୍ତୁ ଏ ବିଷୟରେ ସେ କାହା ସାଙ୍ଗରେ ପରାମର୍ଶ କରିବ ? ବନବିହାରୀ ତାଗିଦା ଉପରେ ତାଗିଦା ଦେଉଛି । ସରକାରୀ ଗାଡ଼ି ପ୍ରସ୍ତୁତ । ଘିଅ, ଚନ୍ଦନ କାଠଠୁଁ ଆରମ୍ଭ କରି ଅନ୍ୟାନ୍ୟ ଆନୁଷଙ୍ଗିକ ଦ୍ରବ୍ୟ, ଏପରିକି ଜଣେ ପୁରୋହିତ ମଧ୍ୟ ଗାଡ଼ିରେ ବସି ସାରିଲେଣି । ବନବିହାରୀ ଅତ୍ୟନ୍ତ ବ୍ୟସ୍ତ । ହୁଏତ ଏ ଭିତରେ ମୃତ ଦେହକୁ ନେଇ ଗାଡ଼ିରେ ରଖିବାକୁ ଆଦେଶ ଦେଇ ସାରିଲାଣି । ମାତ୍ର ସାହସ କରି ପାରୁନାହିଁ ।

ଅଗତ୍ୟା ଉଚ୍ଛୁଳିଲା କ୍ରୋଧକୁ ମନ ଭିତରେ ଚାପି ଅତନୁ ବନବିହାରୀର ପ୍ରସ୍ତାବକୁ ସ୍ୱୀକାର କରି ନେବାକୁ ଯାଉଥିଲା । ହଠାତ୍ ଏକ ଗର୍ଜନ ପରିବେଶର ସମସ୍ତ ନୀରବତାକୁ ଛିନ୍ନଭିନ୍ନ କରିଦେଲା । ପ୍ରଶସ୍ତ ବାରଣ୍ଡାର ଗୋଟିଏ ପ୍ରାନ୍ତରେ ଅନସୂୟାଙ୍କ ଶବଠାରୁ ଅଳ୍ପ ଦୂରରେ ବସିଥିଲେ ଦୁଷ୍ମନ୍ତ । ମନେହେଉଥିଲା, ତାଙ୍କ ଭିତରେ ସତେ ଯେମିତି କ୍ରୋଧର ଏକ ଭୟଙ୍କର ଆଗ୍ନେୟଗିରି ଅଗ୍ନି ଉଦ୍‌ଗିରଣ କରିବାକୁ ଆରମ୍ଭ କରିଦେଇଚି । ମଗିହାଣ୍ଡି କଡ଼ଲେଇଚୁଟେଇବାକୁ ଆରମ୍ଭ କରିଦେଇଚି । ଘୃଣାର ଉତ୍ତପ୍ତ ଲାଭା ସତେ ଯେମିତି ତାଙ୍କର ପାଟି ବାଟ ଦେଇ ବାହାରି ଆସୁଚି—ନା-ନା-ନା, ପଥର ପ୍ରତିମାରେ ପ୍ରାଣ ସଞ୍ଚାର ହୋଇଚି ।

ଅହା—ଏତକ ଦେଖିବାକୁ ବ୍ୟାକୁଳ ଅନସୂୟାଙ୍କର ତୃଷିତ ଆତ୍ମା ଏବେ କେଉଁଠି ?

ବନବିହାରୀ ଆତଙ୍କିତ ହୋଇ ନିଜର ଗାଡ଼ି ପାଖକୁ ଚାଲିଗଲେ । ଟଳଟଳ ପାଦରେ ଶବ ନିକଟକୁ ଯାଇ ଦୁଷ୍ମନ୍ତ ଦାମ୍ଭିକତା କଣ୍ଠରେ କହୁଥିଲେ, "ଅନସୂୟା, ମୋତେ ଛାଡ଼ି ତମେ କ'ଣ ସତରେ ଚାଲିଯାଉଚ ? ?"



# ଶଗଡ଼ ଉପରେ ନାଆ

ଉତଲିପଦା ବସ୍ ଷ୍ଟାଣ୍ଡରେ ପହଞ୍ଚିଲାବେଳକୁ ସମୟ ହେଲାଣି ସାଢ଼େ ଛଅ । ତାଳଦଣ୍ଡା କେନାଲ ପାରିହୋଇ ପାଇକା ନଈ ବନ୍ଧେ ବନ୍ଧେ ଗୋଟିଏ କିଲୋମିଟର ଗଲେ ପଡ଼ିବ ଥୋରିଆପଡ଼ା ଗାଁ । ସେଇଠୁ ପୁଣି ନଈ ପାରିହେଲେ ଯାଇ ତାଙ୍କ ନିଜ ଗାଁ ।

ବସରୁ ଓହ୍ଲାଇ ଆଦିକନ୍ଦବାବୁ ଏଣେ-ତେଣେ ଅନାଇଲେ । ରାସ୍ତା ଆରପଟେ ବରଜା କମାରଶାଳ, ତିନିପୁରୁଷ ଧରି କମାର ପରିବାର ଦଶଖଣ୍ଡି ଗାଁର ଲୁହାଲକଡ଼୍ ଦାବି ମେଣ୍ଟାଇ ଆସୁଛନ୍ତି । ଏବେ ବରଜା ମଲାଣି । ତା' ପୁଅ ନାତିମାନେ ଶାଳ ଚଳାଉଛନ୍ତି । କଳ ତିଆରି ଜିନିଷରେ ବଜାର ଭରିଗଲାଣି । ତଥାପି ବରଜାର ରଥ ଚାଲୁଛି ତ !

ଆଦିକନ୍ଦବାବୁ ଆଉ ଡେରି କରିବାକୁ ଚାହୁଁ ନଥିଲେ । ଶୀତଦିନିଆ ସଞ୍ଜ ମାଡ଼ି ଆସୁଛି । ଆଉ ଟିକିଏ ପରେ ଅନ୍ଧାର ହୋଇଯିବ, ତା' ଆଗରୁ ଗାଁ ନ ଧରିଲେ ଆଖିର ଯୋଉ ଅବସ୍ଥା, ବାଟରେ କଣ ହେବ କିଏ କହିବ ! ଚୁପ ଉପରେ ବସି ଆଦିକନ୍ଦ ମନେ ମନେ କାହାକୁ ଖୋଜୁଥିଲେ । ଗାଁ ବାଲା କିଏ ମିଳିଗଲେ ସୁବିଧା ହୁଅନ୍ତା ।

ପନ୍ଦରଦିନ ତଳେ ଧୋବେଇ ଭେଇ ପୋଷ୍ଟକାର୍ଡ ଖଣ୍ଡେ ଛାଡ଼ିଥିଲା । ଧାନପାଚି ବିଲରେ ଶୋଇଛି । ସାନବାବୁ ଆସି ଠିଆହେଲେ ବିଲକୁ ଦାଆ ଯିବ । ଧୋବେଇ ତ ଲେଖି ଦେଇ ଖଲାସ । ଏଣେ ସେକ୍ରେଟେରିଏଟ୍ କାମରୁ ଛୁଟି ମିଳିବା କ'ଣ ଏଡ଼େ ସହଜ ! ଆସେମ୍ବ୍ଲିଟା ପୁଣି ଏତିକିବେଳକୁ ଚାଲିଛି । ଘନ ଘନ ସ୍ଲିପ୍ ଆସୁଛି—ଗଦାଗଦା ଫାଇଲ୍ କଢ଼ା ହେଉଛି, ପଢ଼ା ହୋଇ କମ୍ପ୍ଲାଏନ୍ସ ଦିଆହେଉଛି । ସବୁ ଅର୍ଜେଣ୍ଟ—ସେକ୍ରେଟେରୀ ମହାପାତ୍ରବାବୁଙ୍କ ପାରା ତ ଜାଣି ସବୁବେଳେ ଚଢ଼ି ରହିଛି । ଏତିକିବେଳେ ସିଏ ଅବା କେମିତି ଛୁଟି କଥା କହନ୍ତେ ?

ଅଘଣିଆଁ ମେଘଟା ଘଣ୍ଟାଏ ହବ ଛେଚିଦେଇ ଯାଇଛି । ଶୀତୁଆ ପବନ ରୁହାଇ ରୁହାଇ ହାଡ଼ କମ୍ପାଇ ଦେଇଯାଉଛି । ନଈ ବନ୍ଧର ଚିକିଟା ମାଟିରେ ଟିକିଏ ଗୋଡ଼ ଖସିଲେ ଏକାଥରେ ଯାଇ ଅତଡ଼ା ଉପରେ । ଆଦିକନ୍ଦ ପାଦ ଚପି ଚପି ଆଗେଇଥିଲେ ଆଉ ନିଜକୁ ମନେ ମନେ ଅଭିସମ୍ପାତ ଦେଉଥିଲେ । ଘଣ୍ଟାଏ ଖଣ୍ଡେ ଆଗରୁ ବାହାରି ପାରିଥିଲେ, ଦିନ ଥାଉଁ ଥାଉଁ ଗାଁ ଧରିଥାଆନ୍ତେ । ସେତିକ କୋଉ କରେଇ ଦେଲେ ? ଠିକ୍ ବାହାରିଲା ବେଳକୁ ପହଞ୍ଚିଗଲା ଅର୍ଜେଣ୍ଟ ସ୍ଲିପ୍ ।

ଗାଁ ସମ୍ପତ୍ତିକି ବିକି ଦେବାକୁ ଘରୁ ଗୁପ ପଡ଼ୁଚି । ପିଲମାନେ ବି ଜୀବନରେ କେବେ ଗାଁମାଟି ମାଡ଼ିବେ ନାହିଁ । ସୌଦାମିନୀ ସେହି ନୂଆବୋହୂ ହୋଇ ଆସିଲି ବେଳେ ଯାହା ବର୍ଷେ ଦ'ବର୍ଷ ଗାଁରେ ରହିଥିଲେ, କଟକ ଆସିବା ଆଗରୁ । ତା'ପରେ ତ ଯୁଗ ବିତି ଗଲି ଏହି ରାଜଧାନୀରେ । ବୋଉ ଥିଲବେଳେ ଯାହା ମାଣ ବସାଇବାକୁ ଗାଁକୁ ଯାଉଥିଲେ ଏବେ ସେତକ ମଧ୍ୟ ବନ୍ଦ । ମାଣବସା ଏବେ ସରକାରୀ କ୍ୱାର୍ଟରରେ । ସେ ସାହାଲ ଧୂଳିଆପିଟା ଘର । କିଏ ଦେଖାରଖା କରନ୍ତା ? ପିଲମାନଙ୍କୁ କହିଲେ ତ ସେଇ ବିକି କରିବା କଥା ଉଠିବ ।

ମଣିଷ ହାତ বାଜିଲେ ଗଛ ଭଲ ସୁନ୍ଦର । ଘର ମଣିଷ ଯେତେବେଳେ ସହରରେ ଭିଡ଼ ଜମେଇଲେ, ସେତେବେଳେ ଆନନ୍ଦ ଆଉ କେତେଦିନ ଦ'କୂଳ ବଜାୟ ରଖି ଚଳାଇ ପାରନ୍ତେ ? ତାଙ୍କର ବି ବୟସ ହେଉଚି ତ !

ଘର ଭାଙ୍ଗି ଦେବାକୁ ପଡ଼ିଲି । ନଳେ ଚଳିବା ମାନିଆ ଦୁଇ ବଖରି ଘର ରଖିଲେ । ବର୍ଷରେ ଥରେ ଦୁଇଥର ତ ସେମିତି ହେଲେ ଆସିବାକୁ ପଡ଼ିବ । ମୁଣ୍ଡ ଗୁଞ୍ଜିବାକୁ ପୁଣି କାହା ଓଳି ତଳେ ଠିଆ ହେବେ ?

ଆନନ୍ଦ ମନ ସ୍ଥିର କରି ନେଇଥିଲେ । ସମ୍ପତ୍ତି ସେ କଦାପି ବିକିବେ ନାହିଁ । କୋଉ ପୁରୁଷର ଜମିବାଡ଼ି । ଜୀବନରେ ଗୁଣ୍ଠେ ପଦିକାଏ ତ କମେଇ ନାହାନ୍ତି । ଏବେ ଅନ୍ୟ କଥାରେ ତାକୁ ଗମେଇ ଦେବେ ? ଗାଁରୁ ଜମି ବିକି ସହରରେ ଘର ତୋଳିବେ ? ନା, ଯିଏ ଯାହା କହୁ ସେ କଦାପି ବାଇଆ ହେବେ ନାହିଁ ।

ରହି ରହି ଗୋଟିଏ କଥା ତାଙ୍କ ମନକୁ ଦୋହଲାଇ ଦେଉଛି । ଟିଧାବେଈ ଷେଇ ଜମି ଧରିଲିଣି କୋଉ ଭିଡ଼ି ଅମଳରୁ । ବାପା ସେତେବେଳେ ଥାଆନ୍ତି । ତାଙ୍କର ପାଖରୁ ଜମି ନେଇଥିଲି ଧୋବେଇର ବାପା ବିନା—ସେଦିନର ଘଟଣା ଏବେ ବି ମନେଅଛି ଆନନ୍ଦଙ୍କର । ବିନା ସକାଳ ପହରୁ ଗୁନ୍ଦନୀ ତଳ ନଡ଼ିଆ ଗଛ ମୂଳେ ବେକରେ ଗାମୁଛା ପକେଇ ଠିଆ ହୋଇଥାଏ ।

ବାପାଙ୍କର ଦାନ୍ତଘଷା ପର୍ବ ଗୋଟାଏ ଦେଖିବା ଜିନିଷ । ପାଣି ନୋଟା ଥୁଆ ହବ, କରଞ୍ଜ ଗଛରୁ କାଣି ଆଙ୍ଗୁଠି ମୋଟ ଦେଢ଼ ଗୃଖଣ୍ଡ ଲମ୍ବର ଦାନ୍ତକାଠି କଟା ହୋଇ ଆସିବ । ଗଇଁଠା ପାଉଁଶ ବୋତଲ ରଖାଯିବ, ତା' ପାଖରେ ଥୁଆ ହୋଇଥିବ ଗିନାରେ ମଥୁରା ତେଲ ଘଣା ପେଡ଼ା ଖଣ୍ଡି ସୋରିଷ ତେଲ ଆଉ କାଗଜରେ ଲୁଣ । ବାପା ପ୍ରଥମେ ଦାନ୍ତକାଠିଟାକୁ ଘେରାଇ ଘେରାଇ ତଲ ଉପର ଚଲାଇ ଅଧଘଣ୍ଟାଏ ଖଣ୍ଡେ ପିଣ୍ଡାରେ ଟହଲ ମାରିବେ । ଖଡ଼ମ୍ବର ଠକ୍ ଠକ୍ ଶବ୍ଦ ସାଙ୍ଗକୁ ଅନ୍ତଲ ପେଟ ଉଠୁଥିବ ପୁଣି ପଡ଼ୁଥିବ ତାଳେ ତାଳେ । ସେ ପର୍ବ ସରିଲ ପରେ ଆରମ୍ଭ ହେବ ଗଇଁଠା ପାଉଁଶ ପର୍ବ । ସବା

ଶେଷରେ ବଣି ଆଙ୍ଗୁଠିରେ ତେଲ ଆଉ ଡବିରେ ଲୁଣ ଘରଷି ଦେଇ ମାଜି ମାଜିଧି ଚାଲିବ ; ପାଟିରୁ ଲାଳ ବହି ଚାଲିଥିବ, ଏଣେ ପୁଣି ଗଳା ସଫା ଚାଲିଥିବ । ଇଏ ଚାଲିବ ପନ୍ଦର ମିନିଟ୍ । ମୁହଁ ଧୋଇ ପକାଇ ଲୋଟାରେ ଥିବା ବାକି ପାଣିକୁ ପାଟିରେ ଦେଇ ଉପରକୁ ମୁହଁ ଟେକି ଦଶ ମିନିଟ୍ କାଳ ଘର୍‌ର ଘର୍‌ର କରି ପୁଣି ଗଳା ସଫା ଚାଲିବ । ସେତକ ସରିଲା ପରେ ପାତଳ ଗାମୁଛାରେ ମୁହଁ ପୋଛି ପକାଇ ଗୋଟାଏ ବଡ଼ ଗଳା ଖଙ୍କାର ମାରିବେ । ଏଇଟା ବୋଉ ମାଇଁ ।

ଭିତରୁ ପଥର ଗ୍ଲାସ୍‌ରେ ଝିଅଟା ପାଣି ଧରି ପେଙ୍କେଇ ପେଙ୍କେଇ ବାହାରି ଆସିବ ନାଥିଆ । ବାପା ତା' ଆଡ଼କୁ ନ ଅନେଇ ଗ୍ଲାସଟିକୁ ନେଇ ଉପରକୁ ଆଁ କରି ଢୋକ ଢୋକ କରି ପାଣିତକ ପିଇବେ ।

ଦାଣ୍ଡ ବାରଣ୍ଡାରେ କଡ଼ପଟିଆ ହୋଇ ପଡ଼ିଥାଏ ତେଲ ଚକଟା ଭାରି ଆରାମ୍ ଚେୟାର୍‌ଟାଏ । ଏଥର ତା' ଉପରେ ଢଳିପଡ଼ି ବାପା ହାତ ପଙ୍ଖା ଚଲାଇ ହାଓ୍ୱା ଖାଇବେ ।

ସେଦିନ ମଧ୍ୟ ସେମିତି ହାତ ପଙ୍ଖା ଚାଲିଥିଲା । ନାଥିଆ ଖାଲି ଗ୍ଲାସ୍ ନେଇ ଚାଲି ଯାଉ ଯାଉ ମନେପକାଇ ଦେଇଗଲା—କୋଉ ସକାଳୁ ବିନା ବାଉରି ଅପେକ୍ଷା କରି ବସିଚି ।

ଯଥାସମ୍ଭବ ସାଧୁଶବ୍ଦ ବ୍ୟବହାର କରି ନାଥିଆ ନିଜର ଆଭିଜାତ୍ୟ ପ୍ରଚାର କରେ ।

ବାପା ସେମିତି ଅର୍ଦ୍ଧଶାୟିତ ଅବସ୍ଥାରେ ନଡ଼ିଆ ଗଛ ଆଡ଼କୁ ଅନାଇଁ କହିଲେ, କଣ କହୁଚୁ ରେ ।"

ବିନା ସେଇ ସେଇଠି ଭୂମିଲଗ୍ନ ହୋଇ ବଡ଼ସାଆନ୍ତଙ୍କୁ ମଜୁରା ଜଣାଇଲା । ତା'ପରେ ବିନୀତ କଣ୍ଠରେ କହିଲା, ସାଆନ୍ତଙ୍କ ପଦରଜ କଇଲିରୁ ପୁଅଟି ପାରିଗଲାଣି । ମାଣେ କଣେ ଭାଗ ବର୍ଷେ ନ ଧରିଲେ, ତା' କଥା ଏଥର ଅଠା ଠିକ୍ ।

ବାପା ନିଶ୍ଚିତ ଭାବରେ ତା'ର ଉଦ୍ଦେଶ୍ୟ ବୁଝି ପାରିଥିବେ । ଗୃହିଣୀ ପାହାଚ ଉପରେ ଥୁଆ ହୋଇଥିଲା ବିପୁଳକାୟ ଫକ୍‌କା ହଳଦୀ ବର୍ଣ୍ଣର ଦୁଇଟି କଖାରୁ । ତେବେ ବାପା ସେମିତି ଅର୍ଦ୍ଧ-ନିମୀଳିତ ନେତ୍ରରେ ପାନ ଖଣ୍ଡେ ଚାକୁଲେଇବାରେ ଲାଗିଥିଲେ ।

ବିନା ଅଗତ୍ୟା ଡାକିଲା ସାଆନ୍ତେ ! ବଡ଼ସାଆନ୍ତେ ବାପା ଏଥର ଆଖି ମେଲାଇ ବିନା ଆଡ଼କୁ ଅନାଇଲେ । ବିନା ଅବତରଣିକାରେ କହିଲେ, ଧୋବାକୁ ଏଥର ଆମ ଘରେ ଛାଡ଼ି ଦେ । ତୋ' କଥା ମୁଁ ବୁଝିବି ।

ଅଭିଜାତ୍ୟ ନିକଟରେ ହବହବସ୍ତ ହାତ ପତାଇ ମାଗୁଥିଲି ନଁଇବାର ଭିକ୍ଷା । ଆଭିଜାତ୍ୟର ଖୋଲ ମୁଠା ତା'ର ପରିବାରର ପାଦତଳେ ମାଟିର କାମ ଦେବ । ସେ ଖସିଯିବ ନାହିଁ ।

ବନା ଇତସ୍ତତଃ କରୁଥିଲା । ଅଠର ବର୍ଷର ଯେଉଁ ଯୌବନର ଭରସାରେ ସେ ସ୍ୱାଗରୃପ ଯୋଡ଼ି ଘର ବାନ୍ଧିବ ବୋଲି ସ୍ୱପ୍ନ ଦେଖୁଥିଲା, ସେଇଅଳୁ ଏବେ ବଡ଼ବାବୁ ଭେଟି ମାଗୁଛନ୍ତି ।

କାହା ଭରସାରେ ତେବେ ବନା ବଞ୍ଚିବ ? କାହାକୁ ଆଶ୍ରା କରି ଆଦିମ ବାର୍ଦ୍ଧକ୍ୟ ତାର ଲଟେଇ ଲଟେଇ ଉପରକୁ ଉଠିବ ?

ବାପା ପୁଣି କହିଲେ, 'ଦୋଳ ପୂନେଇଁ' ବାସି ତାକୁ ପଠେଇ ଦବୁ । ଆଉ ପାଞ୍ଚ ଜଣ ଯାହା ନେଉଛନ୍ତି, ସେ ବି ସେଇଆ ପାଇବ । ବୁଝିଲୁ ?

ବନା ବୁଝିଗଲା । ଖାଲି ତା' ମୂଳ ଆବେଦନର ପରିଣତି କଣ ହେଲା, ସେକଥା ବାପା କହୁନଥିଲେ । ତେଣୁ ସେ ଯାଇ ମଧ୍ୟ ପାରୁ ନଥିଲା ।

ବାପା କହିଲେ, ନାହାଲପଙ୍କରେ ଯୋଉ ପାଞ୍ଚମାଣିଆ ଚକ ଅଛି ସେଇଅଳୁ ଏଥର ରୁ କର । ମେହନତ କରିବୁ ଆଉ ନସୃତ ଜଗି ଚଳିଲେ ମଣିଷ ହୋଇଯିବୁ, ବୁଝିଲୁ ।

ବାପାଙ୍କର ବକ୍ତବ୍ୟ ଶେଷ ହୋଇଥିଲା । ସେଇଦିନଠୁ ଆଜପର୍ଯ୍ୟନ୍ତ ଛନସୁରୁଷ ହେଲଣି—ବନା ତା' ପୁଅ ଧୋବେଇ, ଆଉ ଏଇନେ ଧୋବେଇ ସେଇ ପୁଅ ରବି ଦାସ ନାହାଲପଙ୍କ ତାଙ୍କରି ପାଖରେ ।

ବାପା ଚାଲିଗଲା ପରେ ହାତଗୁଣ ରଖିବାର କୌଣସି ଉପାୟ ନଥିଲା । ଧୋବେଇ ଅବଶ୍ୟ ଏତେବେଳକୁ ଘରମଣିଷ ହୋଇଯାଇଥିଲା । ବୋଉ ତା' ନିଜର କୋଡ଼ିଏ ଭରିର ପା'ପଦ୍ମ ବିକି ଧୋବା-ସ୍ତ୍ରୀ ପାଇଁ ନାଲି ବଟଫଳ ଆଉ ଗୋଠ ଗଢ଼ାଇ ଦେଇଥିଲା । ସେତେବେଳେ ଗାଁ ସାରା ଧନ୍ୟ ଧନ୍ୟ ପଡ଼ିଯାଇଥିଲା ।

ଶୁଦ୍ଧିକାମ ସରିଗଲା ପରେ ଆନନ୍ଦ ସହରକୁ ଫେରିବାକୁ ଉଦ୍‌ଯୋଗ କରୁଥିଲେ । ଧୋବା କଣ କହିବ ବୋଲି ପାଖକୁ ଆସିଲା । ଡାକିଲା—ସାନବାବୁ ।

ଆନନ୍ଦ ତା' ଆଡ଼କୁ ଅନାଇଲେ । ବାପାଙ୍କର ମୃତ୍ୟୁ ତାକୁ ମଧ୍ୟ କମ ଆଘାତ ଦେଇନାହିଁ । ନିଜ ସ୍ୱାର୍ଥରେ ବାପା ତାକୁ ବ୍ୟବହାର କରିଛନ୍ତି ଠିକ୍; ମାତ୍ର ବିପଦ ଆପଦରେ ସେଇ ପରିବାରକୁ ଛାତି ଦେଇ ରକ୍ଷା ବି କରିଛନ୍ତି ।

ଆନନ୍ଦ ପଚାରିଲେ, "କିଛି କହିବୁ ?" ଧୋବା କହିଲା—ତା'ର ଯାହା କହିବା କଥା । ଆନନ୍ଦ ତ ସହରକୁ ଚାଲିଯିବେ । ବୋଉ ସାନ୍ତାଣୀ ବଡ଼ଣା ଛାଡ଼ିନାହାନ୍ତି । ଅପା

ଯାନ୍ତାଣୀ ସେତେବେଳେ ପରବଶ । ନିଜ ଘର ଛାଡ଼ି କେତେଦିନ ବା ଏଠି ରହିପାରିବେ ? ଏଠିକା ଥାଟ ତେବେ ବଜାୟ ରହିବ କେମିତି ?

ଆଦିକନ୍ଦଙ୍କର ଯେ ସେ ଚିନ୍ତା ନଥିଲା ତାହା ନୁହେଁ । ପଢ଼ା ତାଙ୍କର ଶେଷ ହୋଇନାହିଁ । ଏଣେ ଘରର ଏ ହାଲ୍ । କୂଳକିନାର କୁଆଡ଼େ କିଛି ଦେଖାଯାଉ ନଥିଲା । ହାତଚାଷ ଅବଶ୍ୟ ଭାଗ ଦେବାକୁ ପଡ଼ିବ । କୌଣସିମତେ ପଢ଼ାଟା ଶେଷକରି ଚାକିରି ଖଣ୍ଡେ ଧରିଲେ ଯାଇ ଯାହା । ଆଦିକନ୍ଦ ସେଇଆ କଲେ ।

ଧୋବା ସେତେବେଳେ ଆପତ୍ତି କରିଥିଲା । ଆଜି ବଡ଼ବାବୁ ନାହାନ୍ତି ବୋଲି ସେ କଣ ଏଡ଼େ ନପାରିଲାର ହୋଇଗଲା ଯେ, ଚାଷକଥାଟା ତୁଲାଇ ପାରିବ ନାହିଁ ? ସାନବାବୁ ସହରକୁ ଯାଆନ୍ତୁ । ସେ କୌଣସି ମତେ ଏପଟ ବ୍ୟବସ୍ଥା ତୁଲେଇନେବ ।

ପ୍ରକୃତ ଅସୁବିଧାଟା ଯେ କ'ଣ, ସେକଥା ଆଦିକନ୍ଦ କହିପାରୁ ନଥିଲେ । ପଟ୍ଟନାୟକ ପରିବାରର ମରୁଭୂମିରେ ପାଣି ମଡ଼େଇ ତାକୁ ଶସ୍ୟଶ୍ୟାମଳା କରିବାର ଯେଉଁ ପ୍ରୟାସ, ସେଥିରେ ବର୍ତ୍ତମାନ ପାଇଁ ଅନ୍ତତଃ ତାଙ୍କର କିଛି କରିବାର ନ ଥିଲା ।

ଧୋବେଇ ଏଇ କାନ୍ଧ କାନ୍ଧ ବଡ଼ା ହୋଇଯାଇଥିଲା । ତା'ପରେ ତ ଆଦିକନ୍ଦ ଚାକିରି କଲେ, ବାହାଘର ହେଲା । ପିଲାଛୁଆ ହେଲେ । ବାପାଙ୍କୁ ହରାଇବାର ଦୁଃଖ ଭୁଲି ବୋଉ କେବେ ସହରରେ କେବେ ଗାଁରେ ହୋଇ ତା' ଜୀବନ ବି କଟାଇଦେଲା ।

ହେଲେ ଧୋବେଇ ସାଙ୍ଗରେ ପଟ୍ଟନାୟକ ପରିବାରର ସମ୍ପର୍କ ଆଉ ଛୁଟିଲା ନାହିଁ । ଅଠହାତ ମଇଳା ଲୁଗା ଖଣ୍ଡେ ପିନ୍ଧି, ଗାମୁଛା ଖଣ୍ଡେ ମୁଣ୍ଡରେ ଗୁଡ଼ାଇ, ହାତରେ ପାଞ୍ଚଣ ବାଡ଼ି ଧରି ଦିନେ ସେ ଏ ଘରର ବାଡ଼ି ପାହାଚ ତଳେ ଠିଆ ହୋଇଥିଲା । ଢିଙ୍କି ଶାଳର କୋଣିଏ କଣରେ ତା'ର ରସ କଂସା ଖଣ୍ଡେ ରଖା ହୋଇଥିଲା । ସେଇଠି ତାକୁ ଯିଏ ହେଲେ ପଖାଳ କଂସାଏ, ଶାଗଖରଡ଼ା ମୁଠାଏ ଥୋଇଦେଲେ ସେ ଏକା ନିଃଶ୍ୱାସକେ ସେତକ ଖାଇଦେଇ ପାଞ୍ଚଣ ଧରି ପୁଣି ବାହାରି ଯାଉଥିଲା । ଚାଷ ଭାଗ ଗଲା ପରେ ମଧ୍ୟ ଆଦିକନ୍ଦ ଘରକୁ ଆସିଲେ ସେ ମନ୍ତ୍ରପଡ଼ ଖଣ୍ଡେ କାଟି ଆଣି ସେଇ ଢିଙ୍କିଶାଳରେ ବସିପଡ଼ି ଡାକ ଛାଡ଼ୁଥିଲା—ବୋଉ ଯାଆନ୍ତାଣୀ ! କଣ ଗଣ୍ଡାଏ ଦେଇଯାଅ । ହଂସା ଉଡ଼ିଲାଣି । ବୋଉ ବି ସେମିତି ଦି'ଦିନ ନ ଦେଖିଲେ ତାକୁ ଡ଼କାଇ ପଠାଉଥିଲା । ଯୋଉଠୁ ଯାହାହେଲେ ତ' ପଦରେ ବାନ୍ଧିଦେଉଥିଲା ।

ପାଞ୍ଚମାଣିଆ ଚକ ସେମିତି ଏଇ ପରିବାରରେ ରହିଯାଇଥିଲା । ଆଦିକନ୍ଦ କେବେ ତାକୁ ଧୋବେଇଠୁଁ ଛଡ଼ାଇ ଆଣିବାକୁ ଚିନ୍ତା କରିନାହାନ୍ତି କିମ୍ବା ଧୋବେଇ ମଧ୍ୟ ଭାଗଧାନ ଦେଇ ଯିବାରେ କେବେ ହେଳା କରିନାହିଁ ।

ଆଜି ଏତେଦିନ ପରେ ତାଙ୍କୁ ଏସବୁ ବିଷୟରେ ଚିନ୍ତା କରିବାକୁ ପଡ଼ୁଚି । ତାଙ୍କ ମନରେ ସନ୍ଦେହର ନିଆଁ ଧିକିଧିକି ହୋଇ ଜଳିବାକୁ ଆରମ୍ଭ କରିଛି ।

ଏଇ କେତେ ବର୍ଷ ଭିତରେ ଗାଁରୁ କେତେପ୍ରକାର ଖବର ତାଙ୍କ କାନରେ ବାଜେ । ପାଞ୍ଚମାଣିଆ ଚକରେ ଧାନ ହେର୍‌ଫେର୍ କରି ଏବେ ଧୋବା ବାଉରି ପାଞ୍ଚ ଜଣରେ ଜଣେ । ଗୁଣ୍ଠକେ ଯୋଉଠି ପନ୍ଦର ଗଉଣୀ ଫଳୁଚି, ସେଠି ସେ ହିସାବ ଦେଉଚି ପାଞ୍ଚଗଉଣୀର । ଆଉ ଯାହାକୁ ଦେଲେ ସେ ଗୁଣ୍ଠକେ କୋଡ଼ିଏ ଗଉଣୀ ହିସାବରେ ଧାନ ମାପିଦେଇ ଯିବ, ଇତ୍ୟାଦି ପ୍ରସ୍ତାବକୁ ମଧ୍ୟ ସେ କାନରେ ପୂରାଇ ନାହାନ୍ତି ।

ମାତ୍ର ଏ ଭିତରେ ମାମଲତକାର ଦନେଇ ଦାସ ନିଜ ପକେଟରୁ ପଇସା ଖର୍ଚ୍ଚକରି ଦିନେ ତାଙ୍କ ବସାରେ ଯାଇଁ ଡେରି ପକାଇଥିଲେ । ସେ ଘରକୁ ଫେରିଲାବେଳକୁ ସେଠି ହୁଲିସ୍ଥୁଲ୍ କାଣ୍ଡ । ବାଉରୀ ଟୋକା କୁଆଡ଼େ ଏ ଭିତରେ ଓକିଲ ପରାମର୍ଶ କରିସାରିଲେଣି । ପଚିଶବର୍ଷ ଧରି ସେମାନେ ଜମି ଚାଷ କରୁଛନ୍ତି । ଏଥର ସେମାନେ ଜମି ଦଖଲ କରିଯିବେ । ଆଇନ୍ କୁଆଡ଼େ ସେଇଆ କହୁଚି । ଦେଖୁ ଦେଖୁ ସୁନାଥାଳି ଜମି ଭୂତ ଖାଇବେ ।

ସ୍ତ୍ରୀ ଜିଦ ଧରି ବସିଥିଲେ । ଆଜି ସେ ଜମିକୁ ବିକିକରି ଦେବାକୁ ହେବ । ଦନେଇ ମଉସା ଖରିଦାର ଠିକଣା କରି ଆସିଛନ୍ତି । ଏ ମଉକା ହାତରୁ ଛାଡ଼ିଲେ ପଛରେ ହାତରୁ ପିଠିରୁ ଲୁହ ପୋଛୁ ପୋଛୁ ଦିନ ସରିବ ନାହିଁ ଇତ୍ୟାଦି ।

ବଡ଼ପୁଅ କହିଲା—ନୂଆ ପଲ୍ଲୀରେ ଜାଗା ବୁଝିଚି । ଜମି ବିକିହେଲେ ସହରରେ ମୁଣ୍ଡ ଗୁଞ୍ଜିବା ପାଇଁ ଖଣ୍ଡେ ଘର କରିବାକୁ ହେବ । ଅଥଚ ପଢ଼ା ଶେଷ କରି ଚାକିରି ଯୋଗାଡ଼ କରିପାରି ନଥିବା ସେଇ ପୁଅକୁ ଯେତେବେଳେ ସେ ଜମିବାଡ଼ି ବୁଝାବୁଝି କରିବାକୁ ପ୍ରସ୍ତାବ ଦେଇଥିଲେ, ସେତେବେଳେ ମା' ପୁଅ ଦିହେଁ ଆକାଶରୁ ଖସିପଡ଼ିଥିଲେ ଅବା ।

ନା—ତଥାପି ତାଙ୍କର ବିଶ୍ୱାସ ହୋଇନାହିଁ । ସେ ନିଜେ ଯିବେ । ଧୋବା ପାଖରେ ଠିଆହୋଇ ଥରେ ତାକୁ ପଚାରିବେ । ବୋଉ ତ ତାକୁ ପୁଅ କରିଥିଲା । ନହେଲେ ତାକୁ ଏବେ ପଟ୍ଟନାୟକ ପରିବାରର ସମ୍ପତ୍ତିରୁ ଗୋଟାଏ ଭାଗ ଲେଖିଦେବେ । କୋର୍ଟକଚେରୀ କରିବେ ନାହିଁ । କେଉଁଠି କାହା ପାଖରେ ନାଲିସ ଫେରାଦି ମଧ୍ୟ କରିବେ ନାହିଁ ।

ପାଠ ଅଧା ହୋଇଥିଲା ଦାପା ଚାଲିଗଲେ । କେହି କୁଆଡ଼େ ସାହା ଭରସା ନଥିଲା ବେଳେ ସେ ଡଙ୍ଗା ଚଳାଇଥିଲେ, କାହା ଭରସାରେ ? ଆଜି ସେ ଏତେବାଟ ଚାଲି ଆସିଲେଣି, କିଏ ତାଙ୍କୁ ବାଟ କଢ଼ାଉଚି ? ସେ ଯିବେ, ପଚାରିବେ ଧୋବାକୁ ଖାଲି ପଦେ କଥା । ତା'ପରେ ତାଙ୍କର ଯାହା କରିବାର କଥା କରିବେ ।

ସକାଳୁ ମେଘଟା ଘୋଟିଯାଇଚି । ଶୀତୁଆ ପବନଟା ମନ୍ଥରଗତି ଦେଉଚି । ଆଦିକନ୍ଦ ଦାଣ୍ଡପିଣ୍ଡାରେ ବସିଛନ୍ତି ସେଇ ପୁରୁଣା ଆର୍ମଚେୟାରରେ । ପଥର ଚାନ୍ଦିମାରୁ ପଲସ୍ତରା ଛାଡ଼ିଗଲାଣି । ଇଟା ଖୁଣ୍ଟରୁ ଖଣ୍ଡ ଖଣ୍ଡ ହୋଇ ପଲସ୍ତରା ଖସି ପଡ଼ୁଚି । ପିଣ୍ଡାରୁ ସିମେଣ୍ଟ ସବୁ ଜାଗାଏ ଜାଗାଏ ଉର୍ଚ୍ଚି ଗାତ ହୋଇଗଲାଣି । ଚୂନଧଉଳା କାନ୍ଥରେ ମାଟି ଗୋବର ଲିପା ହୋଇ ପାରିଛଡ଼ା ଦର୍ପଣ ଭଳି ଦିଶୁଚି । ଅଥଚ ଦିନେ ଏଇସବୁ କାନ୍ଥ

ଚକ୍‌ଚକ୍ କରୁଥିଲା । ଦୁଇପଟ କାନ୍ଥରେ ଅପା ଛ' ଆଙ୍କିଥିଲେ ପଦ୍ମଫୁଲ ଆଙ୍କିଥିଲେ । ଖୁଣ୍ଟ ମାନଙ୍କରେ ଅଙ୍କିତ ହୋଇଥିଲା ବର୍ଣ୍ଣାଢ୍ୟ କଳସ ଉପରେ ମାଛ । ଆଜି ସେ ସବୁ ଶୂନ୍ୟ ।

ଘର ଗୁରପଟେ ଧାଡ଼ି ଧାଡ଼ି ନଡ଼ିଆ ଗଛ । ଭରା ଚୈତ୍ରର ଚନ୍ଦ୍ରିକା ଧୌତ ରଜନୀରେ ନଡ଼ିଆ ବାହୁଙ୍କ। ସହିତ ପବନର କଲ୍‌କଲ୍ ଖେଳ ସାଙ୍ଗରେ ଗୁନ୍ଥାହୋଇ ରହୁଚ, ଆନନ୍ଦଙ୍କର କେତେ ନିଦ୍ରାହୀନ କୈଶୋର ଆଉ ଯୌବନର ସ୍ୱପ୍ନ ।

ଆଜି ସେସବୁ କାହିଁ ? ଗୃହଆଉ ଶ୍ରୀହୀନ ।

ଉଡ଼ିଯାଇଥିବା କର୍ପୂରର ଶେଷ ସମ୍ବଳ ଭଳି ଗୁହାଳ ଆଗରେ ଏବେ ମଧ୍ୟ ଠିଆ ହୋଇ ରହୁଚ ଜୀର୍ଣ୍ଣ ବଉଳ ଗଛଟି, ଗାଁ ଯାକର ଝିଅ ବୋହୂ ମାସକ ଆଗରୁ ଯାହା ତଳେ ଭିଡ଼ ଜମାଉଥିଲେ ।

ଗାଁ ଦାଣ୍ଡରେ କେତେ ଲୋକ ଚଳପ୍ରଚଳ ହେଲେଣି । ଏବେତ ପ୍ରାୟ ସମସ୍ତେ ଅଚହ୍ନା । ଆନନ୍ଦ ପାହାଚ ତଳକୁ ଓହ୍ଲାଇ ଆସିଲେ । କାମଶେଷ କରି ଆଜି ତାଙ୍କୁ ଯେମିତି ହେଲେ ରାଜଧାନୀକୁ ଫେରିଯିବାକୁ ପଡ଼ିବ । ଗାଁ ମୁଣ୍ଡରେ ଯାଇଁ ବାଉରୀସାହି, କରଣ ସାହିଠାରୁ ବେଶ୍ ଦୂର ।

ପରିବର୍ତ୍ତନ ତ କେତେ ହେଲା । ଦନେ ଯୋଉଠି ଘର ସାମ୍‌ରେ ଥିଲା କେତୋଟି କୁଡ଼ିଆ, ଆଜି ସେଠି ବେଶ୍ ବଡ଼ ବଡ଼ ଘରମାନ ମୁଣ୍ଡ ଟେକିଲାଣି । ଏଣେ କରଣ ସାହିଟା ଯାକ ଦେଖିବ ଖଣ୍ଡିଆ କାନ୍ଥ । ପେଟପାଟଣା ନେଇ କିଏ ଯାଇଁ କୁଆଡ଼େ, ଗାଁ କଥା କିଏ ମନେ ରଖୁଚ ?

ପଗ୍ଭରି ପଗ୍ଭରି ଆନନ୍ଦ ଧୋବେଇର ଘର ଠାବ କଲେ । ନା, ସତରେ ଧୋବାର ଅବସ୍ଥା ବଦଳି ଗଲଣି ଯା' ଭିତରେ । ଇଟା କାନ୍ଥଦିଆ ଟିଣ ଛପର ଘର । ତଳ ସିମେଣ୍ଟ । ଦାଣ୍ଡ ପିଣ୍ଡାରେ ପଡ଼ିଚ କେତେଖଣ୍ଡ ଚେୟାର୍ ।

ଦାଣ୍ଡ ଅଗଣା ଲିପାପୋଛା ହୋଇ ପରିଷ୍କାର । ଗୋଟିଏ ପଟେ ଧାନ ଗଦା ମରା ହୋଇଛି ଯେ ସତେ ଯେମିତି ଆକାଶକୁ ଛୁଇଁବ । ସେଇ ପଟେ ପୁଣି କେଇ ବୁଦା କଦଳୀ ଗଛରେ ଧନଫୁଟିଆ କାନ୍ଧମାନ ଓହ୍ଲଳିଚ । କଦଳୀ ଗଛର ଫାଙ୍କଦେଇ ଦେଖାଯାଉଚ ପାଣି ଟଳ୍‌ଟଳ୍ ସାନ ପୋଖରୀଟିଏ । କେତେବଡ଼ ମାଛଟାଏ ଶୂନ୍ୟକୁ ଡିଆଁ ମାରି ପୁଣି ପାଣି ଭିତରେ ମିଳାଇଗଲା । ଗୋଟିଏ ପଟରେ ବନ୍ଧାହୋଇଚ ମିଶା ଗାଈଟିଏ—କେଡ଼େ ବଡ଼ ପହ୍ଲା—ମୋଟା ସୋଟା ମାଈ ବାଛୁରୀଟିକୁ ଗ୍ଭଟି ଲଗିଚ ।

ଗୃହଆଡ଼େ ଲକ୍ଷ୍ମୀଶ୍ରୀ । ଦେଖିଲେ ଖୁସି ଲଗୁଚ । ଆନନ୍ଦଙ୍କର ନିଜ ଘରକଥା ମନେପଡ଼ୁଥିଲା । କେଡ଼େ ଶ୍ରୀହୀନ, ଆଉ ଦରିଦ୍ରମୟ ।

ଘର ଭିତରୁ ଯୁବକଟିଏ ବାହାରି ଆସିଲା । ହାଲ ଫେସନ୍‌ରେ ଲମ୍ବା ବାଳ ରଖିଛି । ପରିଧାନରେ ଫୁଲ୍‌କଟା ସିଲ୍‌କ୍ ଲୁଙ୍ଗୀ ସାଙ୍ଗକୁ ଗ୍ରୀବଖୋଲା ସ୍କୋର୍ଟିଂ ଗେଞ୍ଜି । ହାତରେ ଘଣ୍ଟା, ପାଦରେ ରବର ଚଟି ।

ଆନନ୍ଦ ତାକୁ ଚିହ୍ନନ୍ତି ନାହିଁ । ହୁଏତ ଧୋବା ପୁଅ ହୋଇଥିବ । ଏଇତେବେ ଯାଇ ଔକଲ ପରାମର୍ଶ କରି ଅସିଚ । ପରିଧାନରେ ବରବା ମା ସାଜବାକୁ କମର କଷୁଚ ।

ଆନନ୍ଦଙ୍କ ମନ ତିକ୍ତତାରେ ଭରିଗଲା । ଯୁବକଟି ତାଙ୍କଆଡ଼େ ଅନାଇଛୁ । କଣ ପଗ୍ଭରିବ ପଗ୍ଭରିବ ହେଉଚ ଯେମିତି । ଆନନ୍ଦ ତା' ଆଡ଼କୁ ମୋଟେ ଗ୍ଭହୁଁ ନାହାନ୍ତି । ଏପଟ ସେପଟ ଅନାଇ ଅତୀତକୁ ଖୋଜୁଛନ୍ତି ।

ପିଲାବେଳେ କେବେକେମିତି ଧୋବାକୁ ଡ଼ାକିବାକୁ ସେ ଏଠିକି ଅସିଛନ୍ତି । ଯାହା ତାଙ୍କର ମନେପଡ଼ୁଚି, କାଦୁଅ ପଚପଚ, ପଲ ପଲ କୁକୁଡ଼ା, ପଞ୍ଝା ପଞ୍ଝା ସିଂଘାଣିନାକିଆ ପିଳେହା ପେଟୁଆ ଅପରିଷ୍କାର ଲଙ୍ଗଳା ଛୁଆ, କୁକୁର ପଲର ଭୋ ଭୋ ରଡ଼ି, କୁକୁଡ଼ାମାନଙ୍କର କକ୍‌କରି କ' ଶବ୍ଦ ସାଙ୍ଗକୁ ଛିଣ୍ଡାନେକଡ଼ା ପିନ୍ଧା ମଣିଷମାନଙ୍କର କଳାକଳିଆର ଦୃଶ୍ୟ, ସେ ଏକ ନାରକୀୟ ଅବସ୍ଥା ।

ଆଉ ଏବେ ? ସବୁ ତ ଅଛୁ, ମାତ୍ର ତା'ର ରୂପ ବଦଳିଯାଇଚ ଯେମିତି ।

ହଠାତ୍ ଘର ଭିତରୁ ବାହାରି ଆସିଲା ଧୋବା ପାଟି କରି କରି । ଯାଗଡ଼ା ଗଳାରେ ଯାଇ କମ୍ପାଇ ସେ ଗର୍ଜନ କରୁଥିଲା । ବେଳଆସି ମୁଣ୍ଡ ଉପରେ ହେଲଣି । ଏଣେ ବାବୁଙ୍କର ମାଙ୍ଗଭଙ୍ଗା ଗ୍ଭଲିଚ । ମୂଳିଆ ପିଲାର ଏତେ ଫେସନ କ'ଣ ବା ?

ଯୁବକଟି କଣ କହିବାକୁ ଯାଉଥିଲା । ହୁଏତ ପ୍ରତିବାଦ କରିଥାଆନ୍ତା । ମାତ୍ର ହଠାତ୍ ଧୋବାର ଦୃଷ୍ଟି ଆନନ୍ଦଙ୍କ ଉପରେ ପଡ଼ିଲା । ସେ କିଛୁକ୍ଷଣ ବିହ୍ୱଳ ଦୃଷ୍ଟିରେ ତାଙ୍କଆଡ଼କୁ ଅନାଇଲା, ତା'ପରେ ଦୁଇକୁଦାରେ ଝୋପିଆସି ପାଟିକଲା ଇଏ କଏ, ସାନବାବୁ ! ତମେ କେତେବେଳେ ଅଇଲ ?

ଆନନ୍ଦ କିଛୁ କହିଲେ ନାହିଁ । ଧୋବା କହିଲା—ମୋତେ ଡକାଇ ପଠାଇ ଥିଲେ ତ ମୁଁ ଧାଇଁଯାଇ ଥାଆନ୍ତି । ସକାଳୁ ସକାଳୁ ବାଉରି ସାହି ଭିତରକୁ ତମର ଆସିବା କ'ଣ ଦରକାର ?

ଆନନ୍ଦ ଅଗତ୍ୟା ମୁହଁ ଖୋଲିଲେ । କହିଲେ—ତୋ ଚଟି ମୁଁ ପାଇଚ ଧୋବେଇ ।

ଧୋବା କହିଲା, ଶୁଣ ଆଙ୍କ କଥାକୁ ! ଚଟି ମୁଁ ଦେଲଣି କୋଉ କାଳରୁ । ଆଉ ଇଏ ଆସି ଆଜ ମୁହଁ ଦେଖାଉଚନ୍ତି । ଧାନକଟା ଆଙ୍କ ପାଇଁ ଅନେଇ ବସିଥାଆନ୍ତା ପରା ।

ଧୋବାକଥା ସବୁଦିନେ ଏମିତି । ସେ ଯେ ପରୀକ୍ଷାରେ ମୂର୍ତ୍ତି ବନିଛନ୍ତି, ଏକଥା ସେ କଦାପି ବିଶ୍ୱାସ କରେନାହିଁ । ଇତିମଧ୍ୟରେ ଧୋବା ଦାଣ୍ଡଘରେ ଯୁବକଟି ଆଡ଼କୁ ମାଡ଼ିଗଲା—ଅନେଇଚୁ କ'ଣ କଣ୍ଟାଣି ମେଢ଼ । ସାନବାବୁ ପରି—ଓଳଗି ହ···

ଯୁବକ ମୁହଁରେ ବିରକ୍ତିର ଚିହ୍ନ ସ୍ପଷ୍ଟ ହୋଇ ଉଠିଲା । ତଥାପି ସେ ହାତ ଉଠାଇଲା । ପାଟିରେ କହିଲା ନମସ୍କାର ।

ଆଦିକନ୍ଦଙ୍କର ମନେ ପଡ଼ିଯାଉଥିଲା ବିନା ଶ୍ରେଣୀର ସାଷ୍ଟାଙ୍ଗ ପ୍ରଣିପାତର ଦୃଶ୍ୟ । ବାପା ଉଠ ବୋଲି ନକହିବା ଯାଏ ସେ ଭୂଇଁରୁ ଉଠୁ ନଥିଲା । ଧୋବା ବା କୋଉ କମ୍ । ଭୂଇଁରେ ମୁଣ୍ଡ ଲଗାଇ ହେମିତି ପଡ଼ିଥିବ ।

ଧୋବା ଯୁବକ ଆଡ଼କୁ ଅନାଇଲା, କହିଲା—ଆରେ ବେଗି ଯା ବା, ମୂଳିଆ-ମାନେ କୋଉ ପହରୁ ଗଲେଣି । ଆଉ ଆମର ଏଠି ହଳବାଳ ଚାଲିଚି··· ।

ପିଣ୍ଡା ବେଞ୍ଚ ଉପରେ ରଖା ହୋଇଥିବା ଟ୍ରାଞ୍ଜିଷ୍ଟର୍‌ଟାକୁ ଧରି ଯୁବକ ଏଥର ଚାଲିଗଲା । ଧୋବା ଯେମିତି ଏହି ମୁହୂର୍ତ୍ତକୁ ଅପେକ୍ଷା କରି ରହିଥିଲା । ପିଣ୍ଡା ଚେୟାର୍ ଉପରେ ତାଙ୍କୁ ବସାଇ ନିଜେ ପାଦ ତଳେ ବସି ନମ୍ର କଣ୍ଠରେ କହିବାକୁ ଲାଗିଲା, "ତେମେ କ'ଣ ଭାବିଲ, ଧୋବା ବାଉଳି ଏଡ଼େ ନିମକହାରାମ ହୋଇଚି ଯେ, ସେ ଖାଇଲା ପତରରେ ଝାଡ଼ା ଫେରିବ ? ଇବ ଆଜିକାଲିକା ପିଲା, ପର ଶିକ୍ଷାରେ ନାଚୁଚି—ମୁଁ ଯେତେ ମନା କଲି ମାନିଲା ନାହିଁ । ସହରକୁ ଯାଇ କ'ଣ ଓକିଲ ପରାମରଣ କରି ଆସିଚି । ହେଲେ ସାନ ବାବୁ ! ମୁଁ ବଞ୍ଚି ଥାଉଁ ଥାଉଁ ଇବ କଏ ? ମୁଁ ନିଜେ ତମ ଜମି ଗୁଡ଼ ଦଉଚି—ତେମେ ଏଥର ଅଲଗା ବେବସ୍ଥା କର । ମନ ଚହଲିଲାଣି ଯେତେବେଳେ ନିଶ୍ଚିତ ବଦଳିବାକୁ କେତେବେଳ ?

ଧୋବାର ବକ୍ତବ୍ୟ ଶେଷ ହୋଇ ଯାଇଥିଲା । କାଳେ କାଳେ ଏଇଆ ତ ହୁଏ । ଆଭିଜାତ୍ୟର କଷଟିରେ ସର୍ବହରାର ବିଜୟରେଖା ସ୍ୱର୍ଣ୍ଣିମ ଆଭାରେ ଝଲସି ଉଠେ ।

ଆଦି କନ୍ଦ କଥା କହିବାକୁ ଭୁଲି ଯାଇଥିଲେ ।



# ପରାଜିତ ସମ୍ରାଟ୍

ଅଧ୍ୟକ୍ଷଙ୍କ ପ୍ରକୋଷ୍ଠରୁ ମୁଣ୍ଡ ନୁଆଁଇ ଅଭିରାମ ଫେରି ଆସୁଥିଲେ । ଅଧ୍ୟକ୍ଷ ରାମଚନ୍ଦ୍ର ତାଙ୍କୁ ଠେକଠୋକ୍ ଭାଷାରେ କହି ଦେଇଥିଲେ—ଆପଣଙ୍କୁ ଛାତ୍ରମାନଙ୍କର ଭବିଷ୍ୟତ ଗଢ଼ିବା ପାଇଁ ନିଯୁକ୍ତ ଦିଆଯାଇଛି, ବର୍ତ୍ତମାନ ନଷ୍ଟ କରିବାକୁ ନୁହେଁ । ଯଦି ଆପଣ ଆଉ ଜଣେ ଗାନ୍ଧୀ ହେବାକୁ ଚାହାନ୍ତି, ତେବେ ଛାତ୍ର ଫୁଲିଇ ଶଙ୍କର ଜେନାର ପିସ୍ତଲ ଆଗରେ ଠିଆ ହୋଇ ଯାଆନ୍ତୁ । ଦେଖିବେ, ପୁଲିସ୍ ଖାତାରେ ଆପଣଙ୍କ ହତ୍ୟା ଠିକ୍ ଆତ୍ମହତ୍ୟା ନାମରେ ରେକର୍ଡ଼ ହେବ । ମୋର ଗୋଟାଏ ସତ୍ ପରାମର୍ଶ ମାନନ୍ତୁ—ଅନ୍ତତଃ କିଛିଦିନ ପାଇଁ ଛୁଟି ନେଇ ଚାଲିଯାଆନ୍ତୁ ।"

ଅଭିରାମଙ୍କର କିଛି କହିବାର ନଥିଲା । କ'ଣ ବା କହନ୍ତେ ? କହିଲେ ଶୁଣିବାକୁ ଅଛି କିଏ ? ପବିତ୍ର ଶିକ୍ଷାନୁଷ୍ଠାନ ଆଜି ପରିଣତ ହୋଇଛି ରେଜଲ୍ଟ ଛପାଇବାର ଏକ ମେସିନ୍‌ରେ । ନବେ ଶତାଂଶ ଫଳ ଛାପିଦେଲେ ତାହାର ଦାୟିତ୍ୱ ଶେଷ । ଚାରିଆଡ଼େ ପ୍ରଶଂସା । ଶଙ୍କର ଜେନା ହେଉଛି ଏକ ହାତିଆର, ଯାହା ସାହାଯ୍ୟରେ ଶତ ପ୍ରତିଶତ ଫଳ ହୋଇପାରିବ । ତାର ଭଲ ଛାତ୍ର ହିଁ ଆଣିଦେବେ ଅନୁଷ୍ଠାନ ପାଇଁ ସମ୍ମାନ । ଏଥିରେ ପାଠ ପଢ଼ା ହେଲେ କେତେ, ନହେଲେ କେତେ ?

ବିଶ୍ରାମ ପ୍ରକୋଷ୍ଠରେ ସୁଦ୍ଧା ଅଭିରାମଙ୍କର ନିଷ୍କୃତି ନାହିଁ । ଇତିହାସର ଯୁବା ପ୍ରଫେସର ମୁରୁଳି ହସି ତାଙ୍କୁ କହୁଥିଲେ—ବଞ୍ଚିବାର ଅଧିକାର ସମସ୍ତଙ୍କର ଅଛି ସାର୍ । ବିଶେଷ କରି ନିଜ ଜୀବନ ରକ୍ଷା ପାଇଁ ଅନ୍ୟକୁ ରାସ୍ତାରୁ ହଟାଇ ଦେବାରେ କୌଣସି ପାପ ନାହିଁ । ଇତିହାସ ତ କାଳେ କାଳେ ଏହି ଶିକ୍ଷା ଦେଇ ଆସିଛି ।"

ରାଜନୀତି ବିଜ୍ଞାନର ପ୍ରଫେସର ଗମ୍ଭୀର ହୋଇ କହିଲେ, "ପାଠ କହୁଚ, ନିଜର ଅସ୍ତିତ୍ୱ ନିରାପଦ ରଖିବା ପାଇଁ ରାଜନୀତିର ସାଧୁସନ୍ଥମାନେ ବି ସତ୍ୟ ଆଉ ନ୍ୟାୟର ମୁହଁରେ କାଳି ବୋଳି ଦେଇପାରନ୍ତି । ଆତ୍ମାନଂ ସତତଂ ରକ୍ଷେତ୍ ।"

ଅଭିରାମଙ୍କର ମୁଣ୍ଡ ଘୂରାଇବାକୁ ଆରମ୍ଭ କରିଥିଲା । ଅନ୍ଧାର ଭିତରୁ ଆଲୁଅ ଆଡ଼କୁ ଯିବାପାଇଁ ଚେଷ୍ଟା କରୁ କରୁ ସେ ଏ କୋଉଠି ଆସି ପହଞ୍ଚି ଯାଇଛନ୍ତି ?

ଏଠି ତ ନିଃଶ୍ୱାସ ନେବା ପାଇଁ ବିନ୍ଦୁଏ ହାଓ୍ୱା ବି ନାହିଁ । ପ୍ରକୃତରେ ତାଙ୍କର ଶ୍ୱାସ କଷ୍ଟ ଆରମ୍ଭ ହୋଇ ଯାଇଥିଲା ।

ପୋଲିସ୍ ଠିକ୍ ଖବର ପାଇଥିଲା । ଛାତ୍ରାବାସ ଭିତରେ ଦୀର୍ଘ କେଇଦିନ ଧରି ଯେଉଁ ସବୁ ନାରକୀୟ କାଣ୍ଡ ଘଟୁଥିଲା, ତା'ର କିଛି କିଛି ଖବର ଯେ ଓ୍ୱାର୍ଡେନ୍ ହିସାବରେ ଅଭିରାମ ପାଉ ନଥିଲେ ଏଭଳି ନୁହେଁ । ବିଶେଷ କରି ଶଙ୍କର ଜେନା ଯେଉଁ ଦିନଠୁଁ ଏଠି ଆସି ଆଡ୍ଡା ଜମାଇ ଥିଲା, ସେହି ଦିନରୁ ତ···

ଅଭିରାମଙ୍କର ମନେ ପଡ଼ୁଥିଲା—ଚାରିବର୍ଷ ତଳର କଥା । ମଫସଲ ଅଞ୍ଚଳର କୋଉ ଗୋଟାଏ ଗାଁରୁ ସଦେଇ ଜେନା ହାତରେ ଗୋଟାଏ ରଙ୍ଗଛଡ଼ା ଟିଣ ସୁଟକେଶ୍ ଆଉ ଛିଟ ଲୁଙ୍ଗିରେ ବନ୍ଧା ଗୋଟାଏ ପୁଡ଼ା ଝୁଲାଇ ବିନୀତ ଭାବରେ ତାଙ୍କ ଆଗରେ ଠିଆ ହୋଇଥିଲା । ତା' ପଛରେ ଠିଆ ହୋଇଥିଲା ସତର ଅଠର ବର୍ଷର ସ୍ୱାସ୍ଥ୍ୟବାନ୍ ଏକ ଯୁବକ ।

ସଦେଇ ନିଜ ପୁଅର ଦାୟିତ୍ୱ ଅଭିରାମଙ୍କ ହାତରେ ଅର୍ପଣ କରି ଗାଁକୁ ବାହୁଡ଼ିଯିବା ପୂର୍ବରୁ ଅଭିରାମଙ୍କୁ କହି ଯାଇଥିଲା—ମାଟି ହାଙ୍ଗରେ ଲଣ୍ଡି ଯାହା ଯେମିତି ପାରିବ ତାହା ଆପଣଙ୍କ ପାଖକୁ ବଢ଼େଇ ଦେବି ବାବୁ । ଟୋକାଟା ଆପଣଙ୍କୁ ଲାଗିଲା । ଛେଚପିଟି ଯେମିତି ହେଲେ ତାକୁ କୂଳରେ ଲଗେଇ ଦିଅ ।

ଶଙ୍କର ସେତେବେଳେ ଆସିଥିଲା ନିରୀହ ବିଲେଇ ଛୁଆଟିଏ ଭଳି ଚାରିଆଡ଼କୁ ମିଟି ମିଟି ଆଖିରେ ଅନାଇଁ ଅନାଇଁ । ମାତ୍ର ବର୍ଷ ଚାରିଟାରେ ଏ ସହରୀ ଜଙ୍ଗଲର ସବୁଠାରୁ ଭୟଙ୍କର ସିଂହରେ ପରିଣତ ହୋଇ ଯାଇଛି । ଆକୁଳ କହନ୍ତ ସମୟ !

ଅଭିରାମ ନିଜର ବିରଳ କେଶ ମସ୍ତକରେ ହାତ ବୁଲାଉ ବୁଲାଉ ଚୁପ୍‌ଚାପ୍ ବସି ଭାବୁଥିଲେ ।

ଅଢ଼େଇ ଶହ ଛାତ୍ରଙ୍କ ପାଇଁ ଉଦ୍ଦିଷ୍ଟ ଏହି ଛାତ୍ରାବାସ । ପ୍ରଦେଶର ଚାରିଆଡ଼ୁ ଶହ ଶହ ଛାତ୍ର ସିଟ୍‌ଟିଏ ପାଇବା ପାଇଁ ଏଇଠି ଆସି ଭିଡ଼ ଜମାନ୍ତି । ଦେଶର ସର୍ବବୃହତ୍ ଆଉ ପ୍ରାଚୀନ ଶିକ୍ଷାନୁଷ୍ଠାନର ସୁନାମ ହିଁ ସେମାନଙ୍କୁ ଏଠାକୁ ଟାଣି ଆଣେ । ମାତ୍ର ନାମର ସେହି ମୋହ ଭାଙ୍ଗିବାକୁ ବିଶେଷ ସମୟ ଲାଗେ ନାହିଁ । ଘରକୁ ଘନ ଘନ ଚିଠି ଯାଏ—ଏଠି ସବୁ ବେଳେ ଦଙ୍ଗା ଫିସାଦ ଲାଗି ରହୁଚି ବାପା, ଏଥିରେ ଯେ କେମିତି···ସେ ପଟରୁ ଉତ୍ତର ଆସିବାରେ ବି ମୋଟେ ଡେରି ହୁଏ ନାହିଁ···ମନ ଲଗାଇ ପାଠ ପଢ଼ୁଥିବୁ ବାପା । ବର୍ଷ କେଇଟା କେମିତି କଟିଗଲେ ତେଣିକି ଯେଉଁଠି ହେଲେ ଚାକିରି ଖଣ୍ଡେ ମିଳିଯିବ, ତା'ପରେ ଆଉ ଦୁଃଖ କ'ଣ ?

ଅଭିରାମ ଥରେ ଥରେ ଭାବନ୍ତି, କ'ଣ କରିପାରିବେ ଶଙ୍କର ପାଇଁ ତିଆରି ହେଉଥିବା ଏହି ମେଣ୍ଢାପଲ ? ଶଙ୍କର ଖଣ୍ଡେ ପାଇଗଲା ପରେ ଖାଲି ସଲାମ ବଜାଉଥିବେ ବଡ଼

ଅଫିସରଙ୍କୁ । ତାଙ୍କର ଆଦେଶରେ ଦେଶର ଏହି କୁରୁକ୍ଷେତ୍ରକୁ ପାରିଜାତ ଗଢ଼ିବାର ସଂକଳ୍ପ ନେଇଥିବେ, ଆଉ ଦାନସାଗର ପାପରୁ ନିଜକୁ ମୁକ୍ତ କରିବା ପାଇଁ ସଞ୍ଜବେଳେ ନିଜ ଘରେ ଧର୍ମଗ୍ରନ୍ଥର ପୃଷ୍ଠା ଖୋଲି ବସିବେ । ଭୟରୁ ତ ଭକ୍ତି ଆସେ ।

ରାତି ଅଧରେ ତାଙ୍କୁ ନିଦରୁ ଉଠାଇ ପୋଲିସ୍ ଅଫିସର ଦ୍ୱୟ ମହାନ୍ତି ଯେତେବେଳେ ହଷ୍ଟେଲ୍ ରେଡ୍ କରିବାର ଅନୁମତି ମାଗିଥିଲେ ସେତେବେଳେ ଅଭିରାମ ବିବ୍ରତ ହୋଇ ପଡ଼ିଥିଲେ ମଧ୍ୟ ଆଶ୍ଚର୍ଯ୍ୟ ହୋଇ ନଥିଲେ । ଶଙ୍କର ଜେନାର କାରସାଦି ତାଙ୍କୁ ଅଛପା ନଥିଲା । ନୂଆ ଛାତ୍ରମାନଙ୍କଠୁ ଜବରଦସ୍ତି ପଇସା ଅସୁଲ କରିବା, ଡ୍ରଗସ ଖୁଆଇବା, କପି କରିବାକୁ ସୁଯୋଗ କରିଦେବା ଆଉ ଧନୀ ଘରର ପିଲାମାନଙ୍କୁ ଅସ୍ଥାନ-କୁସ୍ଥାନକୁ ନେଇ ଯାଇ ସେମାନଙ୍କଠୁ ପଇସା ଲୁଟିବା—କେଉଁ କଥାଟାକୁ ବାଦ୍ ଦେଉଥିଲା ମଫସଲରୁ ଆସିଥିବା ଏହି ପିଲାଟି ? ବାପା ସେଣେ ମାଟି ସାଙ୍ଗରେ ଲଢ଼ି ଲଢ଼ି ପେଟରେ ଓଦା କନା ଦେଇ ମାସକୁ ମାସ ମନିଅର୍ଡର ପଠାଇ ଠାକୁରାଣୀଙ୍କୁ ଯନ୍ତ୍ରାଳ ମନାସୁଛି । ଟୋକାଟା ମଣିଷ ହୋଇଗଲେ ତା'ର ଦୁଃଖ ଯିବ । ପୁଅ ଏଣେ ମଣିଷ ହେଉଛି ! ହୁଁ :...

ଅନୁମତି ଦେବାରେ ଅଭିରାମ ବିଳମ୍ବ କରି ନଥିଲେ । ପୋଲିସ୍‌ବାଲା ଶଙ୍କର ଜେନାକୁ ଯେଉଁ ଅବସ୍ଥାରେ ପାଇଥିଲେ, ସେକଥା ନକହିବା ଭଲ । ତେବେ ସେମାନଙ୍କର ପରିଶ୍ରମ ବ୍ୟର୍ଥ ହୋଇ ନଥିଲା । ଗୁରୁଜଣ ମାଲ୍‌ଦାର୍ ଶିଷ୍ୟ ପରିବୃତ ହୋଇ ମହାଗୁରୁ ଶଙ୍କର ସେତେବେଳେ ଭିଡ଼ିଓରେ ବ୍ଲୁ ଫିଲ୍ମ ଦେଖୁଥିଲେ । ପାଖରେ ବସିଥିଲେ ଜଣେ ଶିଷ୍ୟ—ସବୁଠୁ ବଡ଼ କଥା ହେଲା, ଗୋଟିଏ ପ୍ୟାକେଟ୍ ବ୍ରାଉନ୍ ସୁଗାର୍ ବି ରୁମ୍‌ରୁ ମିଳିଗଲା ।

ଦଳବଳ ସହିତ ପୋଲିସ୍‌ବାଲା ଫେରି ଯାଇଥିଲେ । ଅଭିରାମ ସ୍ୱସ୍ତିର ନିଃଶ୍ୱାସ ପକାଇ ଥିଲେ । ସାରା ସହରରେ ହୁଲସ୍ଥୂଲ ପଡ଼ି ଯାଇଥିଲା । ପବିତ୍ର ଶିକ୍ଷାନୁଷ୍ଠାନର ମହାନ୍ ଗୌରବରେ ଯେଉଁମାନେ କଳଙ୍କ ଲେପୁଛନ୍ତି, ସେମାନଙ୍କୁ କଠିନରୁ କଠିନ ଶାସ୍ତି ଦିଆଯାଉ ବୋଲି ସମ୍ବାଦପତ୍ର ମାନେ ଦାବୀ କରିଥିଲେ ।

ଅଭିରାମ ମଧ୍ୟ ଭାବୁଥିଲେ—ଡ୍ରଗ୍‌ସ୍ ପିଇବା ବା ପିଆଇବା ହେଉଛି ଏ ଦେଶର ସବୁଠୁ ବଡ଼ ଅପରାଧ । ଅନ୍ତତଃ ଦଶଟି ବର୍ଷ ତ ନିଶ୍ଚିନ୍ତ । କଠିନ ଏକ ବ୍ୟାଧିରୁ ମୁକ୍ତିଲାଭ କଲା ପରି ଆଶ୍ୱସ୍ତିଚାର ସୁଖବୋଧ ଅଭିରାମଙ୍କ ମୁଖ ମଣ୍ଡଳରେ ପ୍ରକଟିତ ହେଉଥିବା ବେଳେ ମନ ପରଦାରେ ଭାସି ଉଠିଥିଲା —ମୁଣ୍ଡରେ ଟେକା ବାନ୍ଧି, ହାତରେ ଟିଣ ସୁଟକେଶ୍ ଝୁଲାଇ, ମୁହଁରେ ଅନେକ ପ୍ରତ୍ୟାଶାର ଚିହ୍ନ ଫୁଟାଇ ତାଙ୍କ ଆଗରେ ଠିଆ ହୋଇଥିବା ସଦେଇ ଜେନାର ମ୍ଳାନମୂର୍ତ୍ତି ।

ଶଙ୍କର ଏତେ ଭଲ ଛାତ୍ର ନଥିଲା ସତ୍ୟ, ତେବେ ଅନ୍ଧଗଳିର ରାସ୍ତା ଯେ ବର୍ତ୍ତମାନ ଜୀବନର ସଫଳତା ପାଇଁ ସବୁଠୁ ଭଲ ରାସ୍ତା, ଏକଥା ବୁଝିବା ପାଇଁ ତାକୁ କିଛି

ସମସ୍ତ ମାସ ଲାଗିଥିଲା । ଗୋଟିଏ ମାସ ଘଟଣା ତା'ର ଜୀବନର ଗତିପଥକୁ ବଦଳାଇ ଦେଇଥିଲା ।

ଲୋକପରମ୍ପରାରେ ଘଟଣାଟି ଶୁଣିଥିଲେ ଅଭିରାମ । ସହରର ଉପକଣ୍ଠରେ ସେଦିନ ଏକୁଟିଆ ବୁଲୁଥିଲା ଶଙ୍କର । ବାପାର ମନିଅର୍ଡର ଆସିନାହିଁ । କାଲି କ'ଣ ହେବ ଏଇଆ ଭାବୁ ଭାବୁ ସନ୍ଧ୍ୟା ସେ କେତେବେଳେ ରାତ୍ରିର ନିର୍ଜନତାରେ ପରିଣତ ହୋଇଯାଇଛି, ଅନ୍ୟମନସ୍କ ଶଙ୍କରକୁ ସେ କଥା ଜଣାନାହିଁ । ଏତିକବେଳେ ସେ ସେମାନଙ୍କୁ ଦେଖିଲା । ନିର୍ଜନ ସ୍ଥାନରେ ଆଦମ୍ ଆଉ ଇଭଙ୍କର ସାକ୍ଷାତ୍ ନପାଇଥିଲେ ବୋଧହୁଏ ଭଲ ହୋଇଥାଆନ୍ତା । ତା' ତୁଣ୍ଡରୁ ଅଚାନକ ବାହାରିଗଲା—ସାର୍ ଆପଣ !

ଇତିହାସ ପ୍ରଫେସର କୌଣସିମତେ ନିଜକୁ ସମ୍ବୃତ କରିନେଇ କହିଥିଲେ, ହାଲୋ !

ଶଙ୍କର ମଧ୍ୟ ଇତିମଧ୍ୟରେ ନିଜକୁ ପ୍ରସ୍ତୁତ କରିନେଇ କହିଥିଲା, ଶ୍ୟାମଳୀକୁ ସାମାନ୍ୟ କମେଣ୍ଟ ମାରିଥିଲି ବୋଲି ଆପଣଙ୍କ ଦସ୍ତାରୁ ମୋତେ ଟ ୫୦ ଫାଇନ ଦବାକୁ ପଡ଼ିଥିଲା ସାର୍ ।

ପ୍ରଫେସର ବୁଦା ଆଢ଼ୁଆଳରୁ ବାହାରକୁ ବାହାରି ଆସିଥିବା ନାରୀ ମୂର୍ତ୍ତିଟିକୁ ସମ୍ବୋଧନ କରି କହିଥିଲେ—ତମେ ପୁଣି ଏ ଭିତରକୁ କାହିଁକି ଆସିଲ ଶାମୁ ?

ଶଙ୍କର ଯାହା ଦେଖିବାର କଥା ଦେଖି ନେଇଥିଲା । କଲେଜ କରିଡ଼ର୍‌ର ସିଂହ ଆଜି ମେଷ ହୋଇ ଠିଆ ହୋଇଛି ।

ହିପପକେଟରୁ ପର୍ସଟିକୁ ଶଙ୍କର ହାତକୁ ବଢ଼ାଇ ଦେଇ ପ୍ରଫେସର କହିଲେ— ଟେକ୍ ଇଟ୍ ଇଜି ।

ବିନା ଦ୍ୱିଧାରେ ସେତକ ପକେଟସ୍ଥ କରୁ କରୁ ଶଙ୍କର ଭାବିଲା, ବାଃ, ପଇସା ରୋଜଗାରର ବାଟ ଏତେ ସହଜ ! କହିଥିଲା—ଏଥର କିନ୍ତୁ ଏତିକରେ କାମ ଚଳିବ ନାହିଁ । ମାଷ୍ଟରମାନଙ୍କ ଦରମା କଥା ମୁଁ ଜାଣେ ।

ବାସ୍, ଉଭୟ ପକ୍ଷ ମଧ୍ୟରେ ଏକ ଉଚ୍ଚସ୍ତରୀୟ ଗୋପନ ଆଲୋଚନା ହୋଇ ଦ୍ୱିପାକ୍ଷିକ ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା । ଶଙ୍କର ସେ ବର୍ଷ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ବେଶ୍ ଭଲ ନମ୍ବର ରଖି ଉତ୍ତୀର୍ଣ୍ଣ ହୋଇଗଲା । ଖବର ଶୁଣି ନେତା ମହୋଦୟ ଶଙ୍କରକୁ ଡକାଇ ପଠାଇଥିଲେ । ସର୍କିଟ୍ ହାଉସ୍‌ର ଶୀତତାପ ନିୟନ୍ତ୍ରିତ ପ୍ରକୋଷ୍ଠରେ ଦେଶର ଉନ୍ନତିପାଇଁ ଗଳଦ୍‌ଘର୍ମ ହେଉଥିବା ବୟସ୍କ ନେତା ଜଣକ ଶଙ୍କରର ପିଠି ଆପୁଡ଼ି କହିଥିଲେ—ବାଃ, ଏଇତ ଚାହିଁ । ହ୍ୟାପ୍ ଇଣ୍ଟେଲେକଚୁଆଲ୍ ବୋଲିଉଛନ୍ତି । ଏ ଭଣ୍ଡମାନଙ୍କର ମୁଖା ଖୋଲିଦେବାପାଇଁ ଦେଶ ତମଭଳି ଯୁବକ ଦରକାର କରୁଛି । ତମେ ପାର୍ଟିପାଇଁ କାମ କର ।

ତା'ପରେ କେଁର ଆଉ ପଛକୁ ଫେରି ଚାହିଁନାହିଁ । ତା'ର ଦଳ ବଢ଼ିଛି, ଚାଲିଚଳଣ ବଦଳିଛି ଆଉ ବଢ଼ିଛି, ଛାତ୍ରସମାଜ ଉପରେ ତା'ର ପ୍ରଭୁପତ୍ତି ।

ସେଦିନ ରାତିରେ ହଷ୍ଟେଲଆଡ଼ୁ ପ୍ରଚଣ୍ଡ ହଟ୍ଟଗୋଳ ଶୁଣି ଅଭିରାମ ବ୍ୟାକୁଳ ହୋଇ ସେଆଡ଼େ ଧାଇଁ ଯାଇଥିଲେ । ମାତ୍ର ସେତେବେଳକୁ ଡେରି ହୋଇଯାଇଥିଲା । ଗଣ୍ଡଗୋଳ-କାରୀମାନେ ଯାହା କ୍ଷତି କରିବାର କରିସାରି ନିରାପଦରେ ଫେରିଯାଇଥିଲେ ।

ଅଭିରାମ ପ୍ରଥମେ କଟାଯାଇଥିବା ମେନ୍ ସୁଇଚ୍‌ର ଫ୍ୟୁଜକୁ ସଜାଡ଼ିଲେ—ତା'ପରେ ବନ୍ଧା ହୋଇଥିବା ନେପାଳୀ ଦରଓ୍ୱାନର ବନ୍ଧନ ଖୋଲି ହଷ୍ଟେଲ ଭିତରକୁ ପ୍ରବେଶ କରିଥିଲେ ।

ସାରା ହଷ୍ଟେଲରେ କିଛିକ୍ଷଣ ପୂର୍ବରୁ ସତେ ଯେମିତି ପ୍ରେତନୃତ୍ୟ ହୋଇ ଯାଇଥିବାର ଜଣାପଡ଼ୁଥିଲା । ବିଛଣାପତ୍ର ସବୁ ଟଣାଘୋଷଡ଼ା ହୋଇ କରିଡ଼ର୍‌ରେ, ଅଗଣାରେ ଇତସ୍ତତଃ ଫୋପଡ଼ା ଯାଇଥିଲା । ଚୁରେଇ, କାଚଗ୍ଲାସ ସବୁ ପିଟାଯାଇ ଚାରିଆଡ଼େ ବିଛାଇ ଦିଆଯାଇ ଥିଲା । କାହାର ଘଣ୍ଟା, କାହାର ରେଡ଼ିଓ, କାହାର ଟ୍ରାନ୍‌ଜିଷ୍ଟର ସବୁ ଅଦୃଶ୍ୟ ହୋଇ ଯାଇଥିଲା ।

ଦରଓ୍ୱାନର ହୁଙ୍କାରରେ ବୀରପୁଙ୍ଗବମାନେ ଶେଷରେ ଖଟତଳୁ, ବାଥ୍‌ରୁମ୍‌ରୁ, ପିଢ଼ିଘରୁ ଗୋଟି ଗୋଟି ହୋଇ ବାହାରି ଆସିଲେ । ତେବେ ସେମାନେ ସମସ୍ତେ ମୂକପାଲଟି ଯାଇଥିଲେ । ଭୟ ସତେ ଯେମିତି ଏକ ଶିକୁଳି ହୋଇ ସେମାନଙ୍କର କଣ୍ଠରୋଧ କରିଥିଲା ।

ନେପାଳୀ ଦରଓ୍ୱାନ ଶେଷରେ କହିଥିଲା—ସାର୍, ସେମାନେ କୋଡ଼ିଏ ପଚିଶ ହଟ୍ଟାକଟ୍ଟା ଜବାନ । ପିସ୍ତଲ, ଛୁରି, ଲାଠି, ଲୁହାଛଡ଼ ସବୁ ତାଙ୍କ ପାଖରେ ଥିଲା । କହିଯାଇ-ଛନ୍ତି କେନା ଖିଲାପରେ ଯିଏ ଗବାହୀ ଦେବ, ତାକୁ ଆଉ ଫଜରକା ସୁରଜ ଦେଖିବାକୁ ଦିଆଯିବ ନାହିଁ ।

ଏଭଳି ପରିସ୍ଥିତିରେ କ'ଣ କରିବେ, ଅଭିରାମ କିଛି ଭାବିପାରୁ ନଥିଲେ । ତଥାପି ତାଙ୍କର ଭରସା ଥିଲା, କେବେକେତେ ଗୁଣ୍ଡାଙ୍କର ଧମକରେ ପୁଲିସ୍ ଅନ୍ତତଃ ଡରିଯିବ ନାହିଁ । କେଁର କେନା ସବୁ ପ୍ରକାଶ ନକରି ରହିପାରିବ ନାହିଁ । ମାଲ୍ ସହିତ ଧରାପଡ଼ିଚ ସେତେବେଳେ ପୁଲିସ୍ କ'ଣ ଆର୍ମି ଜଙ୍ଗୀ ମେଥଡ଼୍ ଅପ୍ଲାଇ ନକରି ରହିବ ?

ଘଟଣା କିନ୍ତୁ ଘଟିଲା ଅନ୍ୟପ୍ରକାରେ । ମାତ୍ର ପାଞ୍ଚଟି ଦିନ ପରେ କେନା ବିନା କସୁର୍‌ରେ ମୁକ୍ତପାଇ ବାହାରକୁ ବାହାରି ଆସିଲା । ପୂର୍ବଦିନ ରାତିରେ ନିମକହଲା ଥାନାବାବୁ ବଧୂ ମହାନ୍ତି ପୁରସ୍କାର ସ୍ୱରୂପ ଜଣେ ନେତାଙ୍କର ଜରୁରୀ ଆଦେଶନାମା ବଳରେ ଆଠଗଡ଼ିଆ ବଦଳି ହୁକୁମ୍‌ର ଶିକାର ହୋଇସାରିଥିଲେ । ସାନବାବୁ ଗଜେନ୍ଦ୍ର ସିଂ ଗୁଡ଼ଦେବା

ପୂର୍ବରୁ ଶଙ୍କରଙ୍କୁ କେବଳ ଚା’ ଜଳଖିଆରେ ଆପ୍ୟାୟିତ କରିନଥିଲେ, ବରଂ ଜଣିକିଆ ପୋଲିସ୍ ସଲମୀରେ ମଧ୍ୟ ସମ୍ମାନିତ କରି ଗେଟ୍ ପର୍ଯ୍ୟନ୍ତ ବଳାଇ ଦେବାକୁ ଆସିଥିଲେ। ବିଦାୟର ପୂର୍ବ ମୁହୂର୍ତ୍ତରେ ଶଙ୍କରର କାନପାଖକୁ ନିଜ ମୁହଁ ନେଇଯାଇ ଅନୁଚ୍ଚ କଣ୍ଠରେ କହିଥିଲେ, ସାର୍, ଆପଣଙ୍କର ଏହି ଅଯୋଗ୍ୟ ସେବକର କଥାଟା ଟିକିଏ ମନରେ ରଖିଥିବେ। ଆପଣମାନେ ତ ହେଉଛନ୍ତି ଆମର ଦଣ୍ଡମୁଣ୍ଡର କର୍ତ୍ତା। ହେଁ-ହେଁ

ହଷ୍ଟେଲକୁ ଦଳବଳ ନେଇ ଫେରିବା ପରେ ଶଙ୍କର ଆଗରେ ପ୍ରଥମେ ପଡ଼ିଗଲା ଓ୍ୱାର୍ଡ଼ବୟ ରତନା। ତା’ ପିଠିରେ ଗୋଟାଏ ଶକ୍ତ ଗୋଇଠା ଚଢ଼ାଇ ଶଙ୍କର ତାକୁ ବହୁ ବ୍ୟବହୃତ ଏକ ଗ୍ରାମ୍ୟ ଶବ୍ଦରେ ସମ୍ବୋଧନ କରି କହିଥିଲା—ଭାବିଥିଲୁ ପରା ଶଙ୍କରା ତ ଏଥର ଜେଲ୍‌ରେ ପଚିବ। ତା’ ରୁମ୍ କିଏ ସଫା କରୁଚି।

ଥରି ଥରି ବନିତ ରତନା କହିଥିଲା—ନା ନା, ଶଙ୍କରଭାଇ, ମୁଁ ତ ଦିନରାତି ଠାକୁରଙ୍କୁ ଡାକୁଚି, ତମେ କେମିତି ଜଲଦି ଖଲାସ ହୋଇ ବାହୁଡ଼ି ଆସ। ତମେ ଗଲାଦିନୁ ପରି ଏ ଘରଦ୍ୱାର ଅନ୍ଧାର। କେମିତି ଯେ ଏ ପାଞ୍ଚରାତି କଟିଚି, ତା’ ଯିଏ ଦିନରାତି କରୁଚି ସେଇ ଜାଣେ।

ଅଭିରାମ ଏ ସମ୍ବାଦ ପାଇବା ପରେ ଥାନା ସହିତ ଯୋଗାଯୋଗ କରିଥିଲେ। ବିନୀତ ଭଙ୍ଗୀରେ ସାନବାବୁ ଗଜେନ୍ଦ୍ର ଉତ୍ତର ଦେଇଥିଲେ, ଚିହ୍ନିବାରେ ଭାରି ଭୁଲ୍ ହୋଇଯାଇଥିଲା ସାର୍। ଜେନାବାବୁ ସଡ଼କ ଉପରେ ଅସହାୟ ଭାବରେ ପଡ଼ିଥିବା ବେରିଣୀଟିକୁ ନିଜ ରୁମ୍‌କୁ ଟେକିନେଇଥିଲେ। ଏତେ ରାତିରେ ତାଙ୍କ ପାଇଁ କ’ଣ କରାଯିବ ସେଇ କଥା ସାଙ୍ଗମାନଙ୍କ ସହିତ ବସି ଆଲୋଚନା କରୁଥିଲେ। ନହେଲେ ସେମାନେ ସବୁ ଖାନ୍‌ଦାନ୍ ଘରର ପିଲା। ଫୋନ୍ ଲାଇନ୍ କଟିଯାଇଥିଲା।

ଶଙ୍କର ଜେନା ଏଥର ସିଧାସଳଖ ଆସି ଅଭିରାମଙ୍କ ସହିତ ସାକ୍ଷାତ୍ କରିଥିଲା। ଅପେରା ଢଙ୍ଗରେ ଗୋଟାଏ ନମସ୍କାର ଫୋପାଡ଼ି ଦେଇ ବ୍ୟଙ୍ଗ ମିଶ୍ରିତ କଣ୍ଠରେ ତାଙ୍କୁ ପଚାରିଥିଲା—ପିମ୍ପୁଡ଼ିର ଯେତେବେଳେ ପର ଉଠେ ସେତେବେଳେ କଣ ହୁଏ ଜାଣନ୍ତି ସାର୍ ?

ଅଭିରାମଙ୍କ ମୁଣ୍ଡ ବୁଲାଇବାକୁ ଆରମ୍ଭ କରିଥିଲା। ଆରୁଣି, ଉପମନ୍ୟୁ, ସତ୍ୟକାମମାନେ ତାଙ୍କ ଆଖି ସାମ୍ନାରେ ଚକର୍ କାଟି ଘୂରିବାକୁ ଆରମ୍ଭ କରିଥିଲେ। ତାଙ୍କ କାନରେ ବାଜୁଥିଲା ଶଙ୍କରର ବ୍ୟଙ୍ଗମିଶ୍ରିତ ବାକ୍ୟବାଣ—ଦେଶରେ ଏ ଯେଉଁ ବଡ଼ ବଡ଼ କୋଠାଘର ସବୁ ମୁଣ୍ଡଟେକିଛି, ଆଉ ସେଥିରେ ପ୍ୟାଣ୍ଟ କୋର୍ଟପିନ୍ଧା ଯେଉଁ ଶବ ହେଇ ଅଭିରାମ ଘୂରିବୁଲୁଛନ୍ତି, ସେସବୁ କାହା ପଇସାରେ ବାବୁଗିରି ଫଲାନ୍ତି ଜାଣନ୍ତି ସାର୍ ? ଏଇ ଶଙ୍କରାର ପଇସାରେ। ସେମାନେ ଶଙ୍କରାର ଧୋବା କୁକୁର। ବେଳେବେଳେ ସେଥିରୁ ଗୋଟାଏ

ଅଧେ ପାଗଲ ହୋଇଗଲେ, କ'ଣ କରିବାକୁ ହବ, ତା' ଏଇ ଶଙ୍କରକୁ ଭଲଭାବରେ ଜଣାଅଛୁ ।

ବାଗ୍ରେଚତ ପଦକ୍ଷେପରେ ଶଙ୍କର ଫେରଯାଉଥିଲା । ଅଭିରାମଙ୍କର କାନରେ ପଡ଼ୁଥିଲା ଶଙ୍କରର ଶେଷ ଚେତାବନୀ—ଶଙ୍କର ଭଲପାଇଁ ଯେତକ ଭଲ, ମନ୍ଦପାଇଁ ସେତକ ମନ୍ଦ—ଏକଥା ଯେମିତ ମନେରହେ ।"

ଅଭିରାମଙ୍କର ମନେପଡ଼ୁଥିଲା ଅଧକ୍ଷ ମହୋଦୟଙ୍କ କଥା । ବେକାର ଦୁଇପୁଅଙ୍କୁ କୂଳରେ ଲଗାଇବା ପାଇଁ ରାମଚନ୍ଦ୍ରବାବୁ ବେନାମୀରେ ଟାକସିର ବ୍ୟବସାୟଟିଏ ଯୋଡ଼ିଛନ୍ତି । ବେଳ ଅବେଳରେ ସେଇ ଗାଡ଼ି ପୁଣି କଲେଜ କାମରେ ଭଡ଼ା ଲାଗେ । ଶଙ୍କର ଆଉ ତା' ଦଳ ଯେ ଏକଥା ନ ଜାଣନ୍ତି ତା' ନୁହେଁ । ସେଇଥିପାଇଁ ତ ସେମାନଙ୍କୁ ହାତରେ ରଖିବା ଦରକାର । ଅଲଗା ସିକ୍ ରୁମ୍‌ରେ ସେମାନଙ୍କର ପରୀକ୍ଷାର ବ୍ୟବସ୍ଥା କରିବା ଦରକାର । କାନ୍ଧରେ ହାତମାରି କହିବା ଦରକାର—ନେ ଟଙ୍କା, କୋକାକୋଲା ପିଇବୁ ଆଉ ଦେଖିବୁ, ପରୀକ୍ଷାରେ ଯେମିତ କିଛି ଗଣ୍ଡଗୋଳ ନହେବ ।

ରାମବାବୁଙ୍କର ଆଉ ଦେଢ଼ବର୍ଷ ଚାକିରି ଅଛି । ଜୀବନ କେତେଦିନ ଅଛି, ସେକଥା କିଏ ଜାଣେ ? ଥରେ ତାଙ୍କୁ ପଚାରିବାକୁ ମନ ହେଉଥିଲା, ଏତେଟଙ୍କା କଣ ସାଙ୍ଗରେ ନେଇଯିବେ ? ଉପରେତ କୌଣସି ବ୍ୟାଙ୍କ୍ ନାହିଁ । କଣ ହେବ ?

ଅଧକ୍ଷ ତାଙ୍କୁ ଶ୍ଳେଷକଷାୟିତ ଆଖିରେ ଅନାଇ କହିଲେ—ବେଶ୍ ତାମସା ଦେଖାଇଲେ ଯାହାହେଉ । ନିଜେ ଯଦି ଡିସିସନ୍ ନେଇ ନପାରିଲେ, ତେବେ ମୁଁ ତ ଥିଲି, ମୋତେ ପଚାରି ପାରିଥାଆନ୍ତେ । ଶଙ୍କରକୁ ବୁଝାବୁଝି କରିଦେଇ ଥାଆନ୍ତେ । ଇଣ୍ଟେଲିଜେଣ୍ଟ୍ ପିଲା—ବୁଝିଯାଇ ନଥାନ୍ତା ? ଜାଣନ୍ତେ ମନ୍ତ୍ରୀ କ'ଣ କହିଲେ ? କହିଲେ ଏଇ ବୁଦ୍ଧିନେଇ ଲୋକଟା ଏତେବର୍ଷ ପ୍ରଫେସରୀ କରୁଚ କେମିତ ? ନିଜର ସାମାନ୍ୟ ଖିଆଲ୍ ପାଇଁ କଲେଜର ଏତେବର୍ଷର ସୁନାମକୁ ମାଟିରେ ମିଶାଇଦେଲା ! ଛି ଛି ଛି···

ଅଭିରାମ ତାଙ୍କୁ ବୁଝାଇବାକୁ ଚେଷ୍ଟା କରିଥିଲେ—ପୁଲିସ୍ ପୂରା ଖବର ନେଇ ଆସିଥିଲା । ଜଣେ ଶଙ୍କରପାଇଁ ସାରା କଲେଜର ଆଟମସ୍‌ଫିୟର୍ କେମିତ ବିଷାକ୍ତ ହୋଇଯାଉଛି ଏକଥା ଆପଣ ଜାଣନ୍ତେ ? ପାଠ କହୁଛି···

କ୍ରୋଧରେ ରାମଚନ୍ଦ୍ର ଗର୍ଜିଉଠିଥିଲେ । କହିଲେ—ଚୂଲ୍ଲୀକୁ ଯାଉ ଆପଣଙ୍କର ପାଠ । ଭଲ କ'ଣ କରିପକାଇଲେ ଆପଣଙ୍କର ଏଇ ପୁଲିସ୍ ବାଲାଏ ? ଯାହାବା ଟିକିଏ ସଙ୍କୋଚ ଥିଲା ଶଙ୍କରର, ଆପଣମାନଙ୍କ ଦୟାରୁ ସେତିକ ବି ଗଲା । ଶୃଗାଳ ଏଥର ସିଂହ ହୋଇ ବୁଲିବ । ଆପଣଙ୍କର କ'ଣ ? ନିଶ୍ଚିନ୍ତରେ ନାହିରେ ତେଲ ପକେଇ ଶୋଇବେ । ଆରେ, ଏଇ ସାଧାରଣ କଥାଟା ବୁଝିନାହାନ୍ତି ? ଶାସନ ଗ୍ରହିଲେ ଦିନକରେ ଏମାନେ ସାବାଡ଼

ହୋଇଯାଆନ୍ତେ । ହେଲେ କିଏ ବୁଝିବ ? ଏ ଯୋଉ ହଜାର ହଜାର ସୁବୋଧ ବାଳକ ପ୍ରତିବର୍ଷ ଆପଣଙ୍କ ମଣିଷ ଗଢ଼ାର ଏଇ କାରଖାନାରୁ ବାହାରିଯାଉଛନ୍ତି, ତାଙ୍କୁ ନେଇ ନେତାମାନେ କଣ କ୍ରାନ୍ତି କରିବେ ? ଶଙ୍କରମାନେ ତ ହେଉଛନ୍ତି ବ୍ରେନ୍ ବ୍ୟାଙ୍କ୍ । ଦୁଧିଆଳି ଗାଈର ଲାତ ବି ସହିବାକୁ ପଡ଼େ । ବୁଝିଲେ, ଦୁନିଆ ଶକ୍ତିର ଭକ୍ତ ।

ଶଙ୍କର ଏବେ ଖାଇଲା ବାଘ ଭଳି ତାର ଚେଲା ଚାମୁଣ୍ଡାଙ୍କୁ ନେଇ ନଡନଡ କଲେଜରେ ନୂଆ ନୂଆ ଉତ୍ପାତ ଠିଆ କରୁଛି । ହଜାର ହଜାର ପିଲା ନୀରବ ଦର୍ଶକ ଭଳି ତା'ର କାଣ୍ଡ କାରଖାନାକୁ ଦେଖୁଛନ୍ତି । ପ୍ରତିବାଦର ଛୋଟ ଶବ୍ଦଟିଏ ବି କାହାରି ତୁଣ୍ଡରୁ ବାହାରୁ ନାହିଁ । ରାମବାବୁ ମୂଲ୍ୟବୋଧର କଥା କହୁଥିଲେ । ପରିବର୍ତ୍ତିତ ମୂଲ୍ୟବୋଧ ସହିତ ଖାପ୍ ଖୁଆଇ ନପାରିବାରୁ ହିଁ କୁଆଡ଼େ ଅଭିରାମବାବୁ ଅସୁବିଧାରେ ପଡ଼ୁଛନ୍ତି । ବର୍ଷାଆଡ଼େ ଯଦି ଛତା ଦେଖାଯାଇ ନପାରିଲା, ତେବେ ଛତାଟା ତିଆରି ହୋଇଛି କାହିଁକି ? ସେଇଟା କଣ ହାତର ଶୋଭା ?

ଅଭିରାମ ଏଇ ହଜାର ହଜାର ନିରୀହ ଛାତ୍ରଙ୍କ ବିଷୟରେ ଭାବୁଥିଲେ । ଶଙ୍କର ଜେନା ଅଣ୍ଟାରେ ପିସ୍ତଲ ଗୁଞ୍ଜି ବୁଲେ, ଏକଥା ସମସ୍ତେ ଜାଣନ୍ତି । ହେଲେ ହଜାର ହଜାର ପିଲାଙ୍କର ଦୁଇଦୁଇଟା ହାତ ତ ଅଛି । ଏଇ ଦୁଇହାତିଆ ଛାତ୍ରମାନଙ୍କ ମନ ଭିତରେ ନପାରିଲା ବାଲୁଆଟିଏ ଲେଖାଏଁ କେମିତି ପଶିଗଲେ ? ନହେଲେ ଅନ୍ୟାୟକୁ ସମସ୍ତର ଦାବୀ ରୂପରେ ସେମାନେ କେମିତି ଗ୍ରହଣ କରି ନିଅନ୍ତି ? କାଲି ଏଇ ଦୁଇହାତ ସୀମାନ୍ତରେ ଶତ୍ରୁମାନଙ୍କୁ ନିଜ ଜନ୍ମଭୂମିରୁ କିଛି ଅଂଶ ଅର୍ପଣ କରି ନିଜକୁ କୃତାର୍ଥ ମନେ କରିପାରେ । ତପସ୍ୟା ଯେଉଁ ବୟସର ଧର୍ମ, ସେଥିରେ ବାସନାର ତୀବ୍ର ହଳାହଳ କିଏ ମିଶାଇଦେଲା ?

ସାରା ସହର ସେଦିନ ଏକ ଅନାସ୍ୱାଦିତ ଉତ୍ତେଜନାରେ ଥରି ଉଠିଥିଲା । ଗଳି, ମୋଡ଼, କାନ୍ଥବାଡ଼, ପାଚେରି ଯୁଆଡ଼େ ଦେଖିବ ଶହ ଶହ ପୋଷ୍ଟର । ଗବେଷଣାନାମରେ ପ୍ରବୀଣ ଅଧ୍ୟାପକଙ୍କର ଛାତ୍ରୀମାନଙ୍କୁ ଶୋଷଣରେ କୁତ୍ସା । ଅପରାହ୍ନରେ ବାହାରିଲା ଛାତ୍ରମାନଙ୍କର ବିରାଟ ଶୋଭାଯାତ୍ରା । ସୀତା, ସାବିତ୍ରୀଙ୍କ ଦେଶ, ମା' ଭଉଣୀମାନଙ୍କର ଅପମାନ ବରଦାସ୍ତ କରିବନାହିଁ । ସମାଜବାଦ ଜିନ୍ଦାବାଦ୍ ।

ଚକିତ ନେତ୍ରରେ ସେଇଆଡ଼େ ଅନାଇ ଅଭିରାମ ଦେଖିଥିଲେ ସେଇସବୁ ହଜାର ହଜାର ହାତ—ଯେଉଁମାନେ କି ଦୁଇଖଣ୍ଡ ନିର୍ଜୀବ କାଠଖଣ୍ଡ ଭଳି ଜେନାର ପିସ୍ତଲ ତଳରେ ଦେହ ଦୁଇପଟେ କେବଳ ଝୁଲି ରହିଥାଆନ୍ତି, ଆଜି ସେଇସବୁ ହାତ ବୀର ବିକ୍ରମରେ ପବନ କାଟୁଥିଲେ । ଆଉ ତୁଣ୍ଡରୁ ସ୍ଲୋଗାନ୍ ବାହାରୁଥିଲା—ଇନ୍କିଲାବ୍— ଜିନ୍ଦାବାଦ୍···

ଅଭିରାମ ପୁନର୍ବାର ଅଧ୍ୟକ୍ଷଙ୍କର ସମ୍ମୁଖୀନ ହେଲେ । କହିଲେ—ଆପଣ ଜାଣନ୍ତି, ଏସବୁ ସମ୍ପୂର୍ଣ୍ଣ ମିଥ୍ୟା । ଶିକ୍ଷକ ଛାତ୍ରୀର ପବିତ୍ର ସମ୍ପର୍କରେ ଆପଣ କଳଙ୍କର ଟୀକା ଲଗାଇବାକୁ ଉତ୍ସାହିତ କରୁଛନ୍ତି ।

ବିରକ୍ତି ପ୍ରକାଶ କରି ଅଧ୍ୟକ୍ଷ କହୁଥିଲେ—ମୁଁ ଜଜ୍ କିମ୍ବା ମାଜିଷ୍ଟ୍ରେଟ୍ ନୁହେଁ ଅଭିରାମବାବୁ । ସତ ଆଉ ମିଛ ଜାଣିବାର କଷଟିପଥର ମୋ ପାଖରେ ନାହିଁ । ମୁଁ ବି ପୋଲିସ୍ ନୁହେଁ ଯେ, ଯିଏ ଯାହା କଲେ ତାକୁ ବାଧା ଦେଇପାରିବି । ମୁଁ ଜଣେ ଗରିବ ମାଷ୍ଟର । ପିଲାମାନଙ୍କୁ ପଢ଼ାଇବା ମୋର କାମ । ଶିକ୍ଷକ ଛାତ୍ରୀର ବ୍ୟକ୍ତିଗତ ସମ୍ପର୍କ ବିଷୟରେ ଅନୁସନ୍ଧାନ କରିବାକୁ ମୋର ସମୟ ନାହିଁ କିମ୍ବା ରୁଚି ମଧ୍ୟ ନାହିଁ ।

ପୁଣିଥରେ ଅଭିରାମ ଶୂନ୍ୟହାତରେ ଅଧ୍ୟକ୍ଷଙ୍କ ପାଖରୁ ଫେରି ଆସିଲେ । ପଦ୍ମଜାଙ୍କର ଦୁର୍ଭେଦ୍ୟ କଳାବାଦଲ, ସତେ ଯେମିତି ତାଙ୍କୁ ଧୀରେ ଧୀରେ ଗ୍ରାସ କରିବାକୁ ଆରମ୍ଭ କରିଥିଲା । ସେ ବିଷଣ୍ଣ ମନରେ ଅଧ୍ୟାପକଙ୍କ ପ୍ରକୋଷ୍ଠରେ ଯାଇ ବସିଲେ ।

ମନସ୍ତତ୍ତ୍ୱ ଅଧ୍ୟାପକ ଦିବ୍ୟସିଂହ କହିଲେ—ପରିସ୍ଥିତିର ସ୍ରୂପରେ ପରିବର୍ତ୍ତିତ ସ୍ୱଦମାନସ ସହିତ ଯୋଗାଯୋଗ ରକ୍ଷାକରି ଚାଲିବାରେ ହିଁ ଆମର ମୂଲ୍ୟବୋଧ ସୁରକ୍ଷିତ ରହିବ ସାର୍ ।

ତାଙ୍କ ଆଡ଼େ ଅନାଇ ଅଭିରାମ କହିଲେ—ଏଇ ଗୁଣ୍ଡାରାଜ ହେଉଛି, ତେବେ ଆମର ମୂଲ୍ୟବୋଧ ! ତେବେ ତମେମାନେ ନିଜ ନିଜର ପୁଅମାନଙ୍କୁ ଗୋଟିଏ ଗୋଟିଏ ଗୁଣ୍ଡା କରି ଗଢ଼ୁନ କାହିଁକି ? ପିତା ଜନ୍ମ ତମମାନଙ୍କର ସାର୍ଥକ ହୋଇଯିବ ।

ଇତିହାସର ପ୍ରଫେସର ମୁହଁ ଖୋଲିଲେ, କହିଲେ—ଖରାପ ଭାବିବେ ନାହିଁ ସାର୍ । ଆପଣ ସାମାନ୍ୟ ଘଟଣାଟିକୁ ଅତି Serious କରି ପକାଉଛନ୍ତି । ଠିକ୍ ଏ Rightly କଥାଟାକୁ ବିଚାର କଲେ···

ବାଧାଦେଇ ଅଭିରାମ କହିଲେ—ହଁ, ସମସ୍ତେ ଜାଣନ୍ତି ମୁଁ ସିରିଅସ୍ ଲୋକ । ଆପଣମାନଙ୍କ ଚିନ୍ତା ସହିତ ନିଜକୁ ଖାପ୍ ଖୁଆଇ ଚଳିବାର ବୟସ ବି ପାରିହୋଇ ଆସିଚି । ଆପଣମାନେ ବିଶ୍ୱାସ କରି ନପାରନ୍ତି । ତେବେ ଆଜିର ସମାଜରେ ଭାବନା ଚିନ୍ତାର କୌଣସି ପ୍ରୟୋଜନ ଅଛି ବୋଲି ମୁଁ ମନେକରୁ ନାହିଁ । ସତରେ କାହାରି ପେଟଭରେ ନାହିଁ । ସମାଜ ଆଡ଼େ ଚାହାନ୍ତୁ । ଆଜି ପ୍ରତ୍ୟେକ ପିତା ନିଜର ସନ୍ତାନକୁ ସତ୍ୟନ୍ୟାୟ ବିଷୟରେ ଶିକ୍ଷା ଦେବା ପରିବର୍ତ୍ତେ ପଇସା କମାଇବାର ଫନ୍ଦି ଫିକର ଶିଖାଇବାରେ ବ୍ୟସ୍ତ । ଏ ଧରଣର ଶିକ୍ଷା ପାଉଚି ଯିଏ, ତା'ର ମେରୁଦଣ୍ଡରେ ବା କୁଆଡ଼ୁ ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ଠିଆ ହେବାର ଶକ୍ତି ଆସିବ ? ବିଷାକ୍ତ ପରିବେଶର ଏଇ ଚକ୍ରବ୍ୟୂହ ଭେଦିବାକୁ ଜଣେ ହେଲେ ଅଭିମନ୍ୟୁ କାହିଁ କେଉଁଠି ମୋ ଆଖିରେ ପଡ଼ୁନାହିଁ । ପ୍ରତ୍ୟେକ ଗୁଣ୍ଡାର ହାତ ଶୃଙ୍ଖଳ ତାଙ୍କ ଭଳି ଝୁଲୁଚି, କିମ୍ବା ଶଙ୍କର ଜେନା ଭଳି ପିସ୍ତଲ ଧରିଛି । ଗ୍ରପ୍ ବନ୍ଦି କରୁଛି କିମ୍ବା ଚୌକରେ ବସି ଟେବୁଲ୍ ତଳବାଟେ ଲାଞ୍ଚ ନେଉଛି ।

ଏତେଗୁଡ଼ାଏ କଥା ଏକାଥରକେ କହିଦେଇ ଅଭିରାମ କେମିତି ଆସ୍ୱସ୍ତି ଅନୁଭବ

କରୁଥିଲେ । ତାଙ୍କର ପୁଣି ଶ୍ୱାସକଷ୍ଟ ହେଉଥିଲା । ସେ ଭାବୁଥିଲେ, ଦେଶର ଏହି ବୁଦ୍ଧିଜୀବୀମାନଙ୍କ ଆଗରେ ଏତେ କଥା କହି ଲାଭ ବା କ'ଣ ? ସେମାନେ କ'ଣ ଏ କଥା ଜାଣିନାହାନ୍ତି ? ସେମାନେ କ'ଣ ଦେଖୁନାହାନ୍ତି ଦେଶରେ ପୂର୍ବାପେକ୍ଷା ପୋଲିସ୍ ସି. ଆର୍. ପି. ଆଉ ପାରାମିଲିଟାରୀ ଶକ୍ତି ଏ ଭିତରେ କେତେ ଗୁଣ ବଢ଼ିଯାଇଛି । ତଥାପି ଶୋଷଣ, ପୀଡ଼ନ, ଲୁଣ୍ଠନ ଆଉ ହତ୍ୟା ବନ୍ଦ ହେଉଛି କି ? ପ୍ରତ୍ୟେକ ଦିନ ଖବରକାଗଜ ଖୋଲିଲେ ତ ତାର ନମୁନା ଦେଖିବାକୁ ମିଳୁଛି । ଦେଶଦ୍ରୋହୀ ତସ୍କରମାନେ ଦେଶର ସମ୍ମାନୀୟ ନାଗରିକର ଆସନ ଅଧିକାର କରି ବସିଛନ୍ତି । ସ୍କୁଲଶିକ୍ଷକ ବିଜବିସ୍ତାରେ ମାଡ଼ ଖାଉଛି । ମାଟ୍ରିକ୍ ପଢ଼ା କନେଷ୍ଟବଲ ହାତରେ ଠେଙ୍ଗାଧରି ଜନତା ଉପରେ ତମ୍ବି ତୋଫାନ ଦେଖାଉଛି । ଆଉ କମିଶନ୍ ପଇସାରେ ମଉଜ ମଜଲିସ୍ କରୁଚି । ନୈତିକ ଅଙ୍ଗୀକାର ଅତୀତର ବର୍ତ୍ତମାନର ସହାୟତା କରିବାରେ ସମ୍ପୂର୍ଣ୍ଣ ଅକ୍ଷମ । ଶକ୍ତିଧର ବଞ୍ଚୁଛି, ଯାହାକୁ ପରବାୟ ନକରି ଦୁର୍ବଳଟି ବିଚରା ତା' ପାଦତଳେ ଚାପିହୋଇ ଆର୍ତ୍ତନାଦ କରୁଛି । ଦେହର ଆଉ ମୁହଁର ଶକ୍ତି ହୋଇଛି ବର୍ତ୍ତମାନ ବଞ୍ଚିବାର ଏକମାତ୍ର ସାଧନ ।

ଅଭିରାମ ମନ ସ୍ଥିର କରିସାରିଥିଲେ । ସେ ପୁରୁଣାକାଳିଆ ଲୋକ । ସାଧୁଭାବରେ ବଞ୍ଚିବାକୁ ତ ବହୁପ୍ରକାର ଉଦ୍ୟମ କଲେ, ହେଲାନାହିଁ । ଏଥର ତାଙ୍କୁ ଅସ୍ତ୍ରତ୍ୟାଗ କରିବାକୁ ପଡ଼ିବ । ପରାଜୟର ବେଦନା ସହ୍ୟ କରିବାକୁ ପଡ଼ିବ । ମୁଣ୍ଡ ନୁଆଁଇ ଚୁପ୍‌ଚାପ୍ ଏ ସାମ୍ରାଜ୍ୟରୁ ବିଦାୟ ନେବାକୁ ପଡ଼ିବ । ତିରିଶ ବର୍ଷ ଧରି ବିଶାଳ ଏ ଜଗତ୍ ସହିତ ଯେଉଁ ଆତ୍ମୀୟତା ଗଢ଼ିଉଠିଥିଲା, ଆଜି ତାକୁ ନିଜ ହାତରେ ଛଡ଼ାଇ ଦେବାକୁ ପଡ଼ିବ । ଗାନ୍ଧୀ ଗୌତମର ରକ୍ତଧାର ଉପରେ ଠିଆହୋଇ ଅନ୍ତତଃ ବଞ୍ଚିବାର ଅଭିନୟ କରିବାକୁ ପଡ଼ିବ ନାହିଁ ।

ଅଭିରାମ ଦୀର୍ଘଶ୍ୱାସଟିଏ ପକାଇ ଅଧ୍ୟକ୍ଷଙ୍କ ପ୍ରକୋଷ୍ଠ ଆଡ଼େ ଚାଲିଲେ । ନିଷ୍ପତ୍ତି ନେଇସିବା ପରେ ମନରେ ଶାନ୍ତି ତ ଆସିଥିଲା, ମାତ୍ର ଦେହରେ ଯେମିତି କୌଣସି ଶକ୍ତି ନଥିଲା ।

ରାମଚନ୍ଦ୍ର ଭ୍ରୁକୁଟୀ କୁଟିଳ ନେତ୍ରରେ ତାଙ୍କ ଆଡ଼େ ଅନାଇ କହୁଥିଲେ—ମୋର ଯାହା କହିବାର କଥା ଆପଣଙ୍କୁ କହିସାରିଛି । ପରିସ୍ଥିତି ସହିତ ଖାପଖୁଆଇ ଚାଲିପାରିବେ ଯଦି ଚେଷ୍ଟା କରନ୍ତୁ । ନଚେତ୍ ମୋର ଆଉ କିଛି କହିବାର ନାହିଁ ।

ଅଭିରାମ ନିଜକୁ ପ୍ରସ୍ତୁତ କରି ନେଉଥିଲେ । ସମୟର ଦାବୀ ନିକଟରେ ସେ ନିଜର ନୈତିକତାକୁ ଢଳଢଳ କରି ବଳୀ ଦେଇପାରିବେ ନାହିଁ । ଯେଉଁ ବାଟରେ ଚାଲିଚାଲି ସେ ଜୀବନର ଏତେ ପଥ ଅତିକ୍ରମ କରି ଆସିଲେ, ଆଜି ସାମାନ୍ୟ ବୈଷୟିକ ଲୋଭରେ ତାକୁ ସେ ଛାଡ଼ିପାରିବେ ନାହିଁ । ସଂସାରରେ ନିଜବାଟରେ ଚାଲିବାର ଅଧିକାର ସମସ୍ତଙ୍କର ଅଛି ।

ବାଟତ କେଉଁ କାଳରୁ ସେମିତ ପଡ଼ିଛ । ସେଇ ବାଟରେ ସ୍ୱୈର, ତକାପ୍ରୁତ, ସାଧୁ, ସନ୍ଥ ସମସ୍ତେ ଗ୍ଲୁଲଛନ୍ତ । ଗୋଟାଏ ବାଟରେ କଣ୍ଟା ମାଡ଼ିଲେ ବୋଲି ସେ କଣ ବାଟକୁ ନନ୍ଦବେ ? ଦୋଷ ତାଙ୍କର ବ ଅଛ । ନଜେ ଗୋଟାଏ ବାଟରେ ଗ୍ଲୁଲ ସେ ନଜର ଅନୁଗାମୀ ସୃଷ୍ଟି କରବାକୁ ଚେଷ୍ଟା କରୁଥିଲେ । ଶଙ୍କର ଜେନା ହେଉ ବା ଅଂଷ ରାମଚନ୍ଦ୍ର ହୁଅନ୍ତୁ, ସମସ୍ତେ ତ ସେଇଆ କରୁଛନ୍ତ । ଆଜି ତାଙ୍କର କାମନା ପୂରଣ ହେଲନାହିଁ ବୋଲି ସେ ସମସ୍ତଙ୍କୁ ନନ୍ଦା କରବେ କୋଉ ଅଧିକାରରେ ? ନଜର ଅପୂର୍ଣ୍ଣ ଆଶାକୁ ଫଳବତୀ କର ନ ପାରବାରୁ ତ ସଂସାରରେ ମଣିଷ ସମସ୍ୟା ସୃଷ୍ଟିକରେ । ସେ ଆଉ ଏମାନଙ୍କ ସଂଖ୍ୟା ବଢ଼ାଇବେ ନାହିଁ । ବରଂ ନଜ ବାଟରେ ଏକୁଟିଆ ଗ୍ଲୁଲବେ ।

ରାମଚନ୍ଦ୍ର ତାଙ୍କୁ କହୁଥିଲେ—ଦେଖନ୍ତୁ ଅଭିରାମବାବୁ, ଆପଣଙ୍କ ସମସ୍ୟା ମୁଁ ବୁଝୁଛ । ଆପଣଙ୍କର ଦୀର୍ଘ ତରଣ ବର୍ଷର କ୍ୟାରିୟର୍ । ଥରେ ନେତାଙ୍କ ପାଖକୁ ଯାଆନ୍ତୁ । ମିଳାମିଶା କରନଅନ୍ତୁ । ଶଙ୍କର ତା'ପରେ ଆଉ ବଳେଇ ଯିବନାହିଁ ।

ଅଭିରାମ ଏଥର ସବୁକଥା ବୁଝିଲେ । ନେତାଙ୍କର ସାମ୍ରାଜ୍ୟ ଆଜି ତାଙ୍କର ପାଇଁ ଦୁର୍ବଳ ହୋଇଯିବାକୁ ଆରମ୍ଭ କରଛ । ଏଣୁ ଶ୍ୱେତପତାକା ହାତରେ ତାଙ୍କୁ ହିଁ ଯିବାକୁ ପଡ଼ିବ । ନେତାଙ୍କର ସିଂହାସନ ତଳେ ଦୀନ ଭାବରେ ଠିଆହୋଇ ଆନୁଗତ୍ୟର ମୁଚୁଲକା ଲେଖିଦେଇ ଆସିବାକୁ ପଡ଼ିବ ।

ସେ ଏଥର ମୁହଁ ଖୋଲଲେ । କହଲେ—୧୯୪୨ ମସିହା କଥା ଆପଣଙ୍କର ମନେଥିବ ସାର୍ । ସେତେବେଳେ ମୁଁ ଏଇ ଅନୁଷ୍ଠାନର ଛାତ୍ର । ସ୍ୱାଧୀନତାର ଲଢ଼େଇ ଆମେ ବ ଲଢ଼ିଛୁ । ପୋଲିସ୍‌ର ଲାଠି ମାଡ଼ରେ ହାଡ଼ ଭାଙ୍ଗିଯାଇଥିଲା । କୁଳମଣି ପୋଲିସ୍‌ର ଗୁଳି ଆଗରେ ଛାତି ପତେଇ ଦେଇଥିଲା । ସେତେବେଳେ ବ କେତେ ଛାତ୍ରଙ୍କ ପାଖରେ ପିସ୍ତଲ, ଛୁର, ଲାଠି ଥିଲା । କନ୍ତୁ ସେମାନଙ୍କର ଗୋଟାଏ ଆଦର୍ଶ ଥିଲା । ଦେଶକୁ ମୁକ୍ତ ନକରବା ପର୍ଯ୍ୟନ୍ତ ସେମାନେ ସାଧୁସନ୍ଥଙ୍କ ଭଳି ଜୀବନ କଟାଇବେ ବୋଲି ଶପଥ ନେଇଥିଲେ । ସେମାନଙ୍କ ପିସ୍ତଲର ପ୍ରତିଟି ଗୁଳି ପରାଧୀନତାର ଶିକୁଳି କାଟିବା ପାଇଁ ଉଦ୍ଦିଷ୍ଟ ଥିଲା । ଆମେ ବ ରେଳ ଧାରଣା ଉଠାଇଛୁ, ଟେଲିଫୋନ୍ ତାର କାଟିଛୁ । ତେବେ ସେଦିନ ଆମ କଣ୍ଠରୁ ବାହାରୁଥିଲା 'ବନ୍ଦେ-ମାତରମ୍'—ଆଉ ଆଜି ?

ଯାହାହେଉ, ନଜଭଳି ବଞ୍ଚିବାର ଅଧିକାର ସମସ୍ତଙ୍କର ଅଛ । ସାରା ଜୀବନ ମୁଁ ମୋ ବାଟରେ ଗ୍ଲୁଲଛ । ରାଜନୀତି ସହତ ମୋର କୌଣସି ସମ୍ପର୍କ ନାହିଁ । ଫଳ ବ ହାତେ ହାତେ ପାଉଛ । ଚାକିରି ଜୀବନରେ ମଫସଲରୁ ମଫସଲକୁ ଘୂରିବୁଲିଛ । ତଥାପି ମୁଁ ବାଟ ବଦଳାଇ ନାହିଁ । ଯଦି ନେତାଙ୍କ ପଛେ ପଛେ ଘୂରିବୁଲିଥାଆନ୍ତି, ତେବେ ବୈଷୟିକ ଦିଗରୁ ମୁଁ ନିଶ୍ଚୟ ଅଧିକ ସଫଳତା ପାଇଥାଆନ୍ତି । ତେବେ ଆକାଡ଼େମିକ୍ କ୍ଷେତ୍ରରେ ଯାହା କିଛି କରିପାରିଛ, ସେତକ କରିପାରି ନଥାନ୍ତି । ଯାହା ଆଗରୁ କରିପାରି ନାହିଁ, ତା' ଆଉ ବର୍ତ୍ତମାନ କରିପାରିବ ନାହିଁ । ସେ ମୋର ସ୍ୱଧର୍ମ ନୁହେଁ ।

ରାମଚନ୍ଦ୍ର ନିଜ ଆସନରେ ବସି ଏ ବେଆଡ଼ା ଲୋକଟି ଆଡ଼େ ଚାହିଁରହିଲେ । ତାଙ୍କର ଆଉ କିଛି କହିବାର ବି ନଥିଲା । ଅଭିରାମ ଏଥର ନିଜ ପକେଟରୁ ଖଣ୍ଡିଏ କାଗଜ ବାହାର କରି ତାଙ୍କ ଆଡ଼କୁ ବଢ଼ାଇଲେ । ରାମଚନ୍ଦ୍ର ତାକୁ ଦେଖି କହିଲେ—ଏ କଣ, ଆପଣ ଇସ୍ତଫା ଦେଉଛନ୍ତି ?

ଅଭିରାମ କହିଲେ—ଏହାଛଡ଼ା ମୋର ବଞ୍ଚିବାର ଆଉ କୌଣସି ଉପାୟ ନାହିଁ ରାମବାବୁ । ଜୀବନଯାକ ଲଢ଼ି ଲଢ଼ି ମୁଁ ଆଜି କ୍ଲାନ୍ତ, ଅବସନ୍ନ ଆଉ ପରାଜିତ । ଏଥର ଦେଖେ, ବିଶାଳ ଏ ଦୁନିଆରେ ନିଜଭଳି ବଞ୍ଚିବାକୁ ମୋତେ ଟେଁନାଏ ଜାଗା ମିଳୁଛି କି ନାହିଁ !

ଅଧ୍ୟକ୍ଷ କହିଲେ—ଆପଣ ଜୀବନରେ କଣ ହରାଇଲେ, ସେଇଟା ବଡ଼ କଥା ନୁହେଁ ଅଭିରାମବାବୁ । ଯାହା ପାଇଛନ୍ତି, ତାର ରକ୍ଷଣାବେକ୍ଷଣଟା ହିଁ ହେଉଛି ମୂଳକଥା ।

ଅଭିରାମ ନିଜ ଆସନରୁ ଉଠି ଠିଆହେଲେ । ଦୁର୍ବଳ ପାଦକୁ କୌଣସିମତେ ଟାଣି ଫେରିଯିବାକୁ ଆରମ୍ଭ କଲେ ।

ନିଜ ଅଜାଣତରେ ରାମଚନ୍ଦ୍ର ମଧ୍ୟ ଆସନରୁ ଉଠି ଠିଆହୋଇ ଏଇ ବିଚଷକର୍ମା ଲୋକଟି ଆଡ଼େ ଅନାଇ ରହିଥିଲେ ।

ତାଙ୍କ ମୁହଁରୁ ଝାଳ ବୋହୁଥିଲା ନା କଣ ? ସେ ରୁମାଲଟା ଆଖିତଳେ ଚାପି ଧରିଥିଲେ ।

# ଦ୍ୱିତୀୟ ମୃତ୍ୟୁ

ହିମାଂଶୁ ! କିଛିଦିନ ତଳେ ତୁମେ ମନେ ପଡ଼ିଥିଲ । ରାସ୍ତାରେ ଯାଉଁ ଯାଉଁ ହଠାତ୍ ସେଦିନ ତୁମ ରଞ୍ଜୁ ଭାଇଙ୍କ ସାଥିରେ ଦେଖା ହୋଇଗଲା । ଗୋଟିଏ ସାର୍ଥକ ପାରିବାରିକ ଜୀବନର ଯେଉଁ ତୃପ୍ତି ତାଙ୍କ ମୁହଁରେ ଲେଖା ହୋଇଥିଲା, ତାକୁ ଦେଖି ମୋର ତୁମ କଥା ମନେ ପଡ଼ିଗଲା । ଏକଦା ତୁମେ ଆଉ ମୁଁ ରଞ୍ଜନଙ୍କର ବ୍ୟର୍ଥ ପାରିବାରିକ ଜୀବନର କାହାଣୀ ଆଲୋଚନା କରି ସମବେଦନା ପ୍ରକାଶ କରିଥିଲେ ।

ଆଉ ଆଜି ? ବିନାମିଙ୍କ ସହ ତାଙ୍କର ସ୍ୱଚ୍ଛନ୍ଦ ସମ୍ପର୍କ ବିଷୟ ତ ତାଙ୍କର ଲାଜୁଆ ଗୃହିଣୀରୁ ହିଁ ଫୁଟି ବାହାରୁଥିଲା ।

ଜାଣ ହିମାଂଶୁ ! ଏଇ ମଣିଷ, ବିଶାଳ ପୃଥିବୀରେ ତା'ର ସ୍ଥିତି କେତେ ନଗଣ୍ୟ ଅଥଚ ତା'ର ସେଇ ଛୋଟିଆ ଶରୀର ଭିତରେ ଯେଉଁ ଅନ୍ଧକାର ଲୁଚି ରହିଛି, ତା'ର ଆକାର କି ବିରାଟ । ପାରମ୍ପରିକ ସଂଘର୍ଷର ସ୍ଫୁଲିଙ୍ଗ ଯେ କେତେ ସୁନ୍ଦର ସଂସାରକୁ ଜାଳିପୋଡ଼ି ଛାରଖାର କରିଦେଉଛି, ତା'ର ଇୟତ୍ତା ନାହିଁ ।

ଆଃ, ମଣିଷ ଯଦି ମଣିଷକୁ ଠିକ୍ ବୁଝିପାରୁ ଥାଆନ୍ତା ! ବିନାମିଙ୍କ ଜୀବନରେ ଏବେ ଜହ୍ନରାତିର ସମାରୋହ । ପାଖାପାଖି ଆଉ ଗୋଟିଏ ଜୀବନ—ଯେଉଁଠି ଜହ୍ନରାତିର ସମ୍ଭାବନା ଥିଲା, ପ୍ରସ୍ତୁତି ଥିଲା; ମାତ୍ର ପରିଣାମ ପ୍ରତିକୂଳତାର ଅନ୍ଧକାର ଗର୍ଭରେ ହଜିଗଲା । ତାହାରି ବିଷୟ ମୋର ଏବେ ବାରବାର ମନେ ପଡ଼ୁଛି ।

ବୟସ ବଢ଼ିଗଲେ, ମଣିଷର ଦୁଃଖର ସୀମା ମଧ୍ୟ କ୍ରମଶଃ ବିସ୍ତୃତ ହୋଇଯାଏ । ଆମର ଜନନୀ, ଏଇ ବୃଦ୍ଧା ପୃଥିବୀର ବୟସ ତ ଅନେକ ହୋଇଗଲାଣି—ସେଇ ପରିମାଣରେ ତା'ର ଦୁଃଖର ବୋଝ ବି ଆସ୍ତେ ଆସ୍ତେ ବଢ଼ି ଚାଲିଛି । ନ ହେଲେ ମଣିଷ ତ ସବୁଦିନେ ଥିଲେ । ସେମାନଙ୍କର ଦୁଃଖର ପରିମାଣ ଯେ ଏତେ ବେଶି, ସେ କଥା ମୁଁ ପୂର୍ବରୁ ଜାଣି ନଥିଲି—ତୁମେ ଜାଣିଥିଲ ?

ରାସ୍ତାରେ ସେଦିନ ହଠାତ୍ ଜଣେ ଅପରିଚିତା ମହିଳା ରିକ୍ସା ଅଟକାଇ ମୋତେ ନମସ୍କାର କଲେ । ହୁଏତ କୌଣସି ଅଫିସରେ କ୍ଲର୍କ କରନ୍ତି । ତାଙ୍କର କୋରଡ଼କୁ ପଶି

ଯାଉଥିବା ଉଦାସ ଆଖି, ଅଯତ୍ନ ବିନ୍ୟସ୍ତ ଫୁରୁଫୁରୁ ଉଡ଼ୁଥିବା ରୁକ୍ଷ କେଶ, ପ୍ରସାଧନହୀନ ମୁହଁ, ସବୁଆଡ଼ୁ ଗୋଟିଏ ଅପରିସୀମ କ୍ଲାନ୍ତି, ଜଗତ ସଂସାର ପ୍ରତି ଏକ ଅହେତୁକ ବିରକ୍ତି ଫୁଟି ବାହାରୁଥିଲା । ଚପଲ ଘୋଷାଡ଼ି ଘୋଷାଡ଼ି ଇଷତ୍ ନଇଁ ପଡ଼ି ସେ ଚାଲୁଥିଲେ ଏକ ଅଥର୍ବ କ୍ଲାନ୍ତ ପଶୁ ଦୁର୍ବହ ଭାର ଉପାୟହୀନ ପ୍ରକ୍ରିୟାରେ ଟାଣି ଟାଣି ଚାଲିଲା ପରି ।

କିଏ ଇଏ ?

ଭଦ୍ରମହିଳା ନିଜର ପରିଚୟ ଦେବା ପରେ ସାରା ପୃଥିବୀ ମୋ ପାଇଁ ଉଦ୍ଦେଶ୍ୟହୀନ ହୋଇ ଯାଇଥିଲା । ଅନନ୍ତ ଅନ୍ଧକାର ଗର୍ଭରୁ ମୁଁ ଝଲକାଏ ଆଲୋକ ପାଇଁ, ଟିକିଏ ବତାସ ପାଇଁ ଅସହାୟ ଭାବରେ ଚିତ୍କାର କରୁଥିଲି ।

ଏଇ ଯନ୍ତ୍ରଣାର ଅନ୍ୟ ନାମ ତେବେ ଜୀବନ ?

ଅସୀମା ନୂଆବୋଉ ଗହଣା ପରେ ଗହଣା ଗଢ଼ି ଲକର ଭିତରେ ବନ୍ଦୀ କରି ରଖି ଚାଲିଥିଲେ । ଦାମିକା ଶାଢ଼ି ସବୁ ସୋ କେଶ୍ ଗର୍ଭ ଅନ୍ଧାର କରିଦେଇ ଅସୀମା ନୂଆବୋଉଙ୍କ ବାକ୍ସ ଭିତରକୁ ଚାଲି ଆସୁଥିଲେ, ଝିଅକୁ ଯେତେବେଳେ ମାତ୍ର ବାର ବର୍ଷ ବୟସ ହୋଇଥିଲା ।

ଅକ୍ଷୟଭାଇ କହୁଥିଲେ, ଗୋଟାଏ ତ ମାତ୍ର ଝିଅ । ତାକୁ ମୁଁ ରାଜରାଣୀ କରିଦେବି । ଝିଅ ଏଣେ କ୍ଲାସ ପରେ କ୍ଲାସ ଉପରକୁ ଉଠୁଥିଲା, ଆଉ ବାପମାଆଙ୍କର ସ୍ୱପ୍ନର ପରିଧି ବଢ଼ି ଚାଲିଥିଲା ।

ଏଇ ତେବେ ସେଇ ଝିଅ ? ସୀମାହୀନ ଜନକ ଜନନୀ ପ୍ରାଣର ବ୍ୟାକୁଳ ବ୍ୟର୍ଥତାର ସାକାର ପରିଣତି । କାହିଁକି ଏମିତି ହେଲା ? ଛକ କାଟି ମଣିଷ ନିଜ ପାଇଁ ଯେଉଁ ପଥଟି ପ୍ରସ୍ତୁତ କରେ, ସେଇ ପଥ ଦେଇ ଜୀବନ ଗଡ଼ିଯାଏନା କାହିଁକି ? ଜୀବନର ଅଙ୍କ ସବୁବେଳେ ଅଧା ରହିଯାଏ କାହିଁକି ?

ଅମିତା କହୁଥିଲା, ଜୀବନର ଅନ୍ଧଗଳିରେ ପଥ ହରାଇ ମୁଁ ଆଜି ଗୋଟିଏ ମାସିକ ପତ୍ରିକାର ପରିଚାଳନା ବିଭାଗରେ ଉପସ୍ଥିତ ହୋଇଛି । ସେଠି ଜୀବିକା ତ ଅଛି । ମାତ୍ର ଜୀବନକୁ ତଥାପି ଖୋଜୁଛି ।

ଗୁରୁଜନୋଚିତ ସମସ୍ତ ଗାମ୍ଭୀର୍ଯ୍ୟ ବିସ୍ମୃତ ହୋଇ ମୁଁ ନିର୍ଲଜ ଭାବରେ ତାକୁ ପ୍ରଶ୍ନ କରୁଥିଲି—ଆଉ ଅମିତାଭ ?

ଅମିତା ମ୍ଲାନ ହସିଲା । କହିଲା—ଏତେଦିନ ପରେ ଆପଣ ମୋତେ ଏଇ ପ୍ରଶ୍ନ ପଚାରିଲେ ମଉସା ? ଅମିତାଭ ମାନେ ଯେ, ସଂସାରର ଧରାବନ୍ଧା ନୀତି ନିୟମ ମାନି ଚଳନ୍ତି ନାହିଁ, ଏ କଥା କ'ଣ ଆପଣ ଇତିହାସରୁ ପଢ଼ି ନାହାନ୍ତି ?

ମୁଁ ତା'ର ଶୁଭ୍ର ସୀମନ୍ତକୁ ଚାହିଁ ନିର୍ବୋଧଙ୍କ ଭଳି ପ୍ରଶ୍ନ କରୁଥିଲି, 'ତେବେ ?'

ଏଥର ଅନୀତା ଗମ୍ଭୀର ହେଲା । କହିଲା—ଗସ୍ତାରେ ଠିଆ ହୋଇ ଜୀବନର ଦେଣା ପାଉଣାର ହିସାବ ନିକାଶ କରିବା ଭାରି ଦୁଷ୍କିକର୍ । ମଉସା । ଆପଣ ବରଂ ଘରକୁ ଆସନ୍ତୁ । ବୋଉ ଏବେ ଏଇଠି ରହୁଛି—ଆପଣଙ୍କୁ ଦେଖିଲେ ସେ ନିଶ୍ଚୟ ଖୁସି ହେବ ।

ଅସୀମା ନୂଆବୋଉ ଆହୁରି ବୟସ୍କା ଦେଖା ଯାଉଥିଲେ । ଚୂର୍ଣ୍ଣ କୁନ୍ତଳର ଫାଙ୍କେ ଫାଙ୍କେ ଈଷତ୍ ରୁପେଲି ରେଖାସବୁ ଉଙ୍କି ମାରୁଥିଲେ । ପୂର୍ଣ୍ଣତାର ଆନନ୍ଦ ବାର୍ଦ୍ଧକ୍ୟକୁ ଯେଉଁ ମହିମାମଣ୍ଡିତ ରୂପଶ୍ରୀରେ ମଣ୍ଡିତ କରିଥାଏ, ତାଙ୍କଠାରେ ତାହାର ସଖ୍ୟ ମାତ୍ର ନଥିଲା । ଜୀବନ ଯୁଦ୍ଧରେ ଲଢ଼ି ଲଢ଼ି ସେ ମଧ୍ୟ ଆଜି କ୍ଳାନ୍ତ, ପରାଜିତ ।

କ୍ଳାନ୍ତ ସ୍ୱରରେ କହୁଥିଲେ, ଜୀବନକୁ ଗୋଟାଏ ନିର୍ଦ୍ଦିଷ୍ଟ ବିନ୍ଦୁରେ ପହଞ୍ଚାଇବାକୁ ଏମାନେ ବୋଧହୁଏ ପସନ୍ଦ କରନ୍ତି ନାହିଁ । ତାହାହେଲେ ତ ସବୁ ସରିଯିବ । ଆମର ଜୀବନ ସମ୍ପର୍କୀୟ ଯାହା ଧାରଣା, ଏମାନେ ସବୁ ତାକୁ ଆଦୌ ସ୍ୱୀକାର କରନ୍ତି ନାହିଁ । ତେଣୁ ତ ଏମାନେ କାଳକାଳକୁ ସମାନ୍ତରାଳ ରେଖା ହୋଇ ରହିଯାଆନ୍ତି ।

ମୁଁ ତାଙ୍କୁ ପଚାରିଲି—କିନ୍ତୁ ଏମିତି ତ ହେବାର କଥା ନୁହେଁ । ଅମିତାଭ…

ଅନ୍ୟମନସ୍କ ଭାବରେ ଅସୀମା ନୂଆବୋଉ କହିଲେ—ଶୁଣୁଛି ସେ ଏବେ ଭାରତ ବାହାରକୁ ଚାଲିଗଲାଣି……

ଅନୀତା ଉତ୍ତର ଦେଲା—ଅମିତାଭର ସମ୍ବାଦ ବୋଉ ଅପେକ୍ଷା ମୁଁ ଆପଣଙ୍କୁ ଅଧିକ ଦେଇ ପାରିବି । ସେ ତ ମୋତେ ବିବାହ କରିବାକୁ ଚାହିଁଥିଲା ।

ମୁଁ କହିଲି—ତୁ କ'ଣ ତେବେ ତାକୁ ଫେରାଇ ଦେଲୁ ?

ଅନୀତା କହିଲା—ନା' ତ, ମୁଁ କେବଳ କହିଥିଲି ଏତେ ତରତରର କାହିଁକି ?

ସମ୍ରାଟ୍ ଯେତେବେଳେ ସୁନ୍ଦରୀ ଦ୍ୱାରରେ ଭିକ୍ଷାପାତ୍ର ହାତରେ ପହଞ୍ଚି ଯାଆନ୍ତି, ସେତେବେଳେ ତାଙ୍କୁ ଶୂନ୍ୟ ହାତରେ ଫେରାଇ ଦେବାକୁ ହୁଏ ନାହିଁ, ବରଂ ସେଇ ଦୁର୍ଲ୍ଲଭ ମୁହୂର୍ତ୍ତଟିର ପୂର୍ଣ୍ଣ ସୁଯୋଗ ଗ୍ରହଣ କରିବାକୁ ହୁଏ, ଏହା କ'ଣ ଅନୀତା ଜାଣି ନାହିଁ ?

ମୋର ଜିଜ୍ଞାସା ଅନୀତା ବୋଧହୁଏ ବୁଝି ପାରିଲେ । ତେଣୁ ସେ କହିଲା, "ଗୋଟାଏ ତ ମାତ୍ର ଜୀବନ ମଉସା, ତା' ସମ୍ପର୍କରେ କୌଣସି ନିଷ୍ପତ୍ତି କ'ଣ ଏତେ ଶୀଘ୍ର ନେଇହୁଏ ? ଏଠି କେତେକଥା ଜାଣିବାକୁ ଅଛି, ଦେଖିବାକୁ ଅଛି । ବିବାହ ବେଦୀରେ ପହଞ୍ଚିଯାଇ ମୁଁ ହଠାତ୍ ସେ ସବୁଥିରୁ ନିଜକୁ ବଞ୍ଚିତ କରିବାକୁ ଚାହିଁଥାଆନ୍ତି କାହିଁକି ? ମୁଁ ଅମିତାଭକୁ କହିଲି—"ସ୍ୱାଧୀନତାର ପ୍ରଥମ ପାହାଚ ହେଲା ଚାକିରି । ସେତକ ପାଇସାରିଲା ପରେ ମୁଁ ଯାଇ ଅନ୍ୟ ବିଷୟରେ ଚିନ୍ତା କରିବି ।"

ଜାଣନ୍ତି ମଉସା, ପ୍ରତ୍ୟେକ ପୁରୁଷ ନିଜକୁ ଜଣେ ବାଦ୍‌ଶାହ ମନେ କରନ୍ତି । ଜୀବନର ଛିଟା ମୁଣ୍ଡାଖଣ୍ଡା ସିଂହାସନରେ ବସି ସେମାନେ ଚାହାନ୍ତି ଖାଲି ଆଦେଶ କରିଯିବାକୁ, ଆଉ ଚାହାନ୍ତି ସ୍ତ୍ରୀଟି ବାନ୍ଦୀଭଳି ଖାଲି କୁର୍ଣ୍ଣିସ୍ କରିଚାଲିଥିବ ।

ମୁଁ କ୍ଷୁବ୍ଧ ହୋଇ କହିଲି—ଏମିତି କହୁଚ କାହିଁକି ? ସ୍ୱାର୍ଥପରତା ଆଉ ହୁକୁମ୍ ନାମରେ ଯଦି ସଂସାର ଚାଲୁଛି, ତେବେ ଏଠି ଜଣକ ପାଇଁ ଜଣେ ନିଜକୁ ବିକାଇ ଦିଏ କାହିଁକି ? ସ୍ନେହ, ପ୍ରେମ, ଭଲପାଇବା, ଏସବୁ ·····

ହସି ଉଠି ଅନୀତା କହିଲା—ଆପଣ ସତ୍ୟଯୁଗର କଥା କହୁଛନ୍ତି ମଉସା । ବାପାଙ୍କୁ ପଚାରନ୍ତୁ—ମୋର ବିବାହ ପ୍ରସ୍ତାବ ନେଇ ସେ ଅମିତାଭର ଘରକୁ ଯାଇଥିଲେ । ସେଠି ସେ କ'ଣ ଶୁଣି ଆସିଲେ, ମୁଁ ଅବଶ୍ୟ କେବେ ସେକଥା ତାଙ୍କୁ ପଚାରି ନାହିଁ । ତେବେ ଅନୁମାନ କରୁଛି, ମୋ ଚରିତ୍ର ସମ୍ପର୍କରେ ତାଙ୍କୁ ସେଠି ଅନେକ ଆକ୍ଷେପ ଶୁଣିବାକୁ ମିଳିଛି । କିଏ ଏସବୁ କହିଛି ଜାଣନ୍ତି ? ଯାହାର ପ୍ରେମର ହାଟରେ ମୁଁ ନିଜକୁ ବିକାଇ ଦେବାକୁ ଆଗ୍ରହୀ ହୋଇ ଧାଇଁ ଯାଇଥିଲି, ସେଇ ଅମିତାଭ ।

ମୋ ପାଟିରୁ କେବଳ ବାହାରି ଆସିଲା—ଅମିତାଭ ?

ଦୀପ୍ତ କଣ୍ଠରେ ଅନୀତା କହିଲା—ହଁ ସେଇ, ଅମିତାଭ । ଅଥଚ ଆପଣ ଜାଣନ୍ତି ନାହିଁ । ତା' ସହିତ ଦୀର୍ଘ ଦିନର ସମ୍ପର୍କରେ ମୁଁ କେବେ ତାକୁ ମୋତେ ଛୁଇଁବା ପର୍ଯ୍ୟନ୍ତ ଦେଇନାହିଁ । ନାରୀର ଚରିତ୍ର ଯେ ଭଙ୍ଗୁର କାଚପାତ୍ରଟିଏ, ଏକଥା ମଧ୍ୟବିତ୍ତ ଓଡ଼ିଆ ପରିବାରର ଝିଅ ହୋଇ ମୁଁ ଜାଣି ନଥାନ୍ତି କେମିତି ? ଶୁଣିଲି ସେ ଅନ୍ୟ କେଉଁଠି ବିବାହ କରିବାକୁ ସ୍ଥିର କରିଥିଲା······

ଅସୀମା ନୂଆବୋଉ ଏଥର ମୁହଁ ଖୋଲିଲେ । କହିଲେ, ସଂସାରରେ ସମସ୍ତେ ଅମିତାଭ ନୁହନ୍ତି । ସେ ନହେଲା, ଅରୁଣ······

ତାର କଥା ମୁଁ ଏବେ କହୁଚି ବୋଉ । ଦୀର୍ଘ ଚାରିବର୍ଷ ହେଲା ମୁଁ ତାକୁ ଦେଖୁଚି—ପାଖାପାଖି ଟେବୁଲରେ ବସି କାମ କରୁଚି । କହିବାକୁ ଗଲେ ମୋ ହାତଧରି ସେଇତ ସବୁ କାମ ଶିଖାଇଚି—ଅପରିଚିତ ସେଇ ଜଗତରେ ଅରୁଣ ପରି ବନ୍ଧୁ ନଥିଲେ, ଚାକିରି ମୋର ମୁହୂର୍ତ୍ତେ ରହି ନଥାନ୍ତା, ଅଥଚ ଆଜି ସେ ମୋତେ ସ୍ପଷ୍ଟ ଭାବରେ ଜଣାଇ ଦେଲା—ସଦାବେଳେ ନିଜର ପତାକା ନିଜେ ହିଁ ବହନ କରିବା ଉଚିତ । ସେଠାରେ ଅନ୍ୟ ଲୋକର ଦଖଲ ନିହାତି ଦୃଷ୍ଟିକଟୁ ।

ବୁଝନ୍ତୁ ମଉସା । ଆପଣମାନେ କ'ଣ ଭାବନ୍ତି, ନାରୀର ଆତ୍ମସମ୍ମାନ ଜ୍ଞାନ ନାହିଁ ? ସବୁବେଳେ ସେ କ'ଣ 'ଅନ୍ୟ ଲୋକ'ର କବାଟ ବାଡ଼େଇବାକୁ ଧାଇଁଛି ? କିଏ ତେବେ ଏ ବିଶାଳ ପୃଥିବୀରେ ତା'ର ନିଜ ଲୋକ ? କାହା ଉପରେ ସେ ନିର୍ଭର କରିବ ? କାହା ଉପରେ ନିଜର ପୂର୍ଣ୍ଣ ଭାର ଲଦିଦେଇ ସେ ନିଶ୍ଚିନ୍ତ ହେବ ?

ଅମିତାଭ ସାଥିରେ ମୋର ପରିଚୟ ସେଇ କୋଉ ଛୋଟ କାଳରୁ । ସେ କହିଲା, ମୁଁ Flirt, ମୋର ଚରିତ୍ର ନାହିଁ । ତା' ବାଟ ଆଉ ମୋ ବାଟ ଅଲଗା । ଆଉ ଏଇ ଅରୁଣ ? ତାକୁ ଜାଣିବା ତ ପ୍ରାୟ ଚାରିବର୍ଷ ହୋଇଗଲା, ଆଜି ସେ କହୁଚି ଜଣଙ୍କର ଜୋତାରେ ଅନ୍ୟ ଜଣେ ପାଦ ପୂରାଇବା ମୂର୍ଖତା ବ୍ୟତୀତ ଅନ୍ୟ କିଛି ନୁହେଁ । ମୋ ପାଇଁ ତେଣୁ ତା'ର କିଛି କରିବାର ନାହିଁ । ଦୀର୍ଘକାଳର ଏଇ ମିଳାମିଶା, ଅନ୍ତରଙ୍ଗତା ମୋ ପାଇଁ ତା' ମନରେ ଯେଉଁ ଟିକିଏ ଦୁର୍ବଳତା ସୃଷ୍ଟି କରିଛି, ସେଇଟା ତା' ମତରେ ସ୍ୱାଭାବିକ, ସହଜାତ—ପାଳିତ ପଶୁ ପାଇଁ ମଧ୍ୟ ଏଇତକ ମମତା ଆପେ ଆପେ ସୃଷ୍ଟି ହୋଇଯାଏ ।

ଏଇତ ମୋର ଜୀବନ । ଅମିତାଭ ମୋର ମନ ଦର୍ପଣରେ ଗୋଟାଏ ଗମ୍ଭୀର ଛାଇ ହୋଇଯିବାକୁ ଚାହିଁଥିଲା—ମଧ୍ୟବିତ୍ତ ପରିବାରର ରକ୍ଷଣଶୀଳ ମନ ନେଇ ମୁଁ ତେଣୁ ତା' ଠାରୁ ଦୂରେଇ ଆସିଲି । ଶୂନ୍ୟ ହାତରେ ସେଠୁ ଫେରିଲାବେଳକୁ ସେ ମୋତେ ଗୋଟିଏ ବିକ୍ଷୋଭ ବିଦାୟ ଉପହାର ସ୍ୱରୂପ ଦେଲା । ଆଉ ଅରୁଣ । ତା'ର ଉଦାସ ନିର୍ଜନ ମୁହୂର୍ତ୍ତ-ଗୁଡ଼ିକୁ ମୋର ଉପସ୍ଥିତିର ପୂର୍ଣ୍ଣତାରେ ଭରିଦେଇ ପାରିଲି ନାହିଁ ବୋଲି ସେ ମଧ୍ୟ ମୋତେ ମୋ ବାଟରେ ଛାଡ଼ିଦେଇ ଚାଲିଗଲା ।

କିନ୍ତୁ ମୋ ଜୀବନର ପ୍ରକୃତ ସମସ୍ୟା କ'ଣ ଜାଣନ୍ତି ମଉସା । ବହୁଦିନ ପୂର୍ବରୁ ହଜିଯାଇଥିବା, ଅପରିଚିତର ଦୂରତ୍ୱ ରଖି ଅଲଗା ରାସ୍ତାରେ ଚାଲୁଥିବା, ଜଣେ କେହି ଯଦି ହଠାତ୍ ଫେରିଆସି ପଚାରେ, 'ଆମେ କ'ଣ ପୁଣି ପଛକୁ ଫେରିଯାଇ ପାରିବା ନାହିଁ ?' ସେତେବେଳେ ତାକୁ କ'ଣ ଉତ୍ତର ଦେବାକୁ ହେବ, ସେତକ ମାତ୍ର ମୁଁ ସ୍ଥିର କରିପାରୁ ନାହିଁ··· ।

ମୁଁ ବିସ୍ମିତ ଦୃଷ୍ଟିରେ ଅଜୀତାକୁ ଅନାଇ କହିଲି, "ବେଳେବେଳେ ପଛକୁ ଫେରି ଅନାଇବାରେ ମହତ୍ତ୍ୱ ଥାଏ ମା', ମାତ୍ର ପ୍ରଥମେ ନିଜ ପାଖରେ ନିଜେ ସ୍ପଷ୍ଟ ହେବା ଆବଶ୍ୟକ ।"

ଅନ୍ୟମନସ୍କ ଭାବରେ ଅଜୀତା କହୁଥିଲା, ମଣିଷ ନିଜକୁ ଏତେ ତଳକୁ ଖସାଇ ଆଣିପାରେ କେମିତି ? ଏଥିରେ ତା'ର ଆତ୍ମସମ୍ମାନ କ୍ଷୁଣ୍ଣ ହୁଏ ନାହିଁ ? ହୁଏତ ସ୍ୱାର୍ଥ ପାଇଁ ମଣିଷ ସବୁ କରିପାରେ ।

ମୁଁ କହିଲି—ସବୁବେଳେ ସ୍ୱାର୍ଥକୁ ବଡ଼ କରି ଦେଖିଲେ, ଜୀବନର ତ୍ରୁଟି ସୁଧାର ହୁଏ ନାହିଁ । କିଛିଟା ନଇଁଗଲେ, ଯାହା ଅହଂକାର ବୋଲି ମନେ ହୋଇଥାଏ, ସେଇଥିରୁ ସ୍ନେହ ବାହାରି ଆସେ । ଜୀବନଟା ତ ଗୋଟାଏ ବିରାଟ ସାଲିସ୍ ।

ଅଜୀତା କହିଲା—ହୁଏତ ଆପଣ ଯାହା କହୁଛନ୍ତି, ତା' ଠିକ୍ । ନହେଲେ ଗୋଟିଏ ଝିଅକୁ ତା' ଜୀବନର ସବୁଠାରୁ ବଡ଼ ଅପବାଦଟି ଦେଇସାରି ସେଥିପାଇଁ ସାମାନ୍ୟ ଦୁଃଖ

ପ୍ରକାଶ କରିଦେଲେ, ଯଦି ଦାୟିତ୍ୱ ଶେଷ ହୋଇଯାଏ, ଜୀବନର ସମସ୍ତ ଘୃଣା ଯଦି ପ୍ରେମରେ ରୂପାନ୍ତରିତ ହୋଇଯାଏ, ଆଉ ସେଥିରେ ମୁଁ ଯଦି କେବଳ ସ୍ୱାର୍ଥ ବ୍ୟତୀତ ଅନ୍ୟ କିଛି ଦେଖିବାକୁ ପାଇ ନଥାଏ, ତେବେ ସେଥିପାଇଁ କେହି ମୋତେ ଦୋଷ ଦେଇପାରିବ ନାହିଁ ।

ମୁଁ ଆଉ ଅସୀମା ନୂଆବୋଉ ଏକାଥରକେ ଚମକି ଉଠିଲୁ । ଅସୀମା ନୂଆବୋଉ କହିଲେ, 'ତେବେ' ।

ନିରୁତ୍ତାପ ଭାବଲେଶହୀନ କଣ୍ଠରେ ଅମିତା କହିଲା—"ହଁ, ଅମିତାଭ ଫେରି ଆସିଛି । ସେ କହୁଛି, କିଛି ହଜିଯାଇ ନାହିଁ । ଏ ଗୃଶବର୍ଷର ଘଟଣାକୁ ଦୁଃସ୍ୱପ୍ନ ଭଳି ଭୁଲିଯିବାକୁ ହେବ । ସେ ବଦଳି ନାହିଁ, ମୁଁ ବି ନୁହେଁ । ତା'ର ବୁଝିବା ଉଚିତ ଯେ ଗଲାକାଲି ଆଉ ଆଜି ଭିତରେ ଅନେକ ଦୂରତ୍ୱ । ସତ୍ୟର ରୂପ ସେଠି ଭିନ୍ନ । ଦୂରତ୍ୱ ନିବିଡ଼ତାକୁ ବିସ୍ମୃତିର ଧୂଳିରେ ଆଚ୍ଛନ୍ନ କରିଦିଏ । ତାକୁ ଝାଡ଼ାପୋଛାକରି ପୁଣି ତା'ର ନିଜସ୍ୱ ରୂପକୁ ଫେରାଇ ଆଣିବାକୁ ଚେଷ୍ଟା କରି କେହି କେବେ ସଫଳ ହୋଇନାହିଁ ।"

ଅସୀମା ନୂଆବୋଉ କହିଲେ, "ତଥାପି ମଣିଷ ପୁରୁଣା ଜିନିଷକୁ ଫୋପାଡ଼ି ଦିଏନାହିଁ ମା' । ଯତ୍ନ କରି ରଖି ତା'ରି ଭିତରେ ନିଜର ଅତୀତକୁ ଖୋଜିବାକୁ ଉଦ୍ୟମ କରେ ।"

ଅମିତା ଉତ୍ତେଜିତ ହେଲା । କହିଲା—ଉଦ୍ୟମ କରେ ? ଯଦି ତାକୁ ପୋକ କାଟି ଛିକି ଛିକି କରି ଦେଇଥାଏ, ଯଦି ସେଥିରେ ପ୍ରାଣର କୌଣସି ସ୍ପର୍ଶ ନଥାଏ, ତଥାପି ବି ମଣିଷ ତାକୁ ଆଦର କରି ଗ୍ରହଣ କରେ ? ଅମିତାଭର ବ୍ରେନ୍ କ୍ୟାନ୍‌ସର୍ ହୋଇଛି ବୋଧେ ।

ଅସୀମା ନୂଆବୋଉ ବିମୂଢ଼ ହୋଇଗଲେ । ତଥାପି କହିଲେ, "ଏ ବିଷୟରେ ଆଉ ଆଲୋଚନା କରି ଲାଭ କ'ଣ ?"

ଲାଭକ୍ଷତିର ହିସାବ କ'ଣ ଏତେ ସହଜରେ ଶେଷ ହୁଏ ବୋଉ ? ଦିନେ ମୋତେ ସେ ଭଲ ଲାଗିଥିଲା । ତା' ପାଖରୁ ମୁଁ ଦୂରେଇ ଗଲି । କିଛିଦିନ ଅରୁଣ ଭିତରେ ଅମିତାଭକୁ ଖୋଜିବାକୁ ଚେଷ୍ଟା କଲି । ଅରୁଣ ତ ନିହାତି ବସ୍ତୁବାଦୀ—Career ତା' ପାଖରେ ସବୁଠୁଁ ବଡ଼ । ଭଲପାଇବା, ପ୍ରେମ ଇତ୍ୟାଦି ତା' ପାଇଁ ନିହାତି ସେକେଣ୍ଡାରୀ । ତାକୁ ନେଇ ସମୟ କଟାଯାଇ ପାରେ, ମାତ୍ର ତା' ପାଖରେ ଗର୍ବ କଲା ଭଳି ତ କିଛି ନାହିଁ ।

ଅରୁଣ ପାଇଁ ମୁଁ ଗୋଟାଏ ଆଚିଭମେଣ୍ଟ । ସେଥିରୁ ମୁଁ କ'ଣ ପାଇବି ? ଜୀବନର ଶୂନ୍ୟତା ତ ଅନ୍ୟର ପୌରୁଷକୁ ନେଇ ଭରେ ନାହିଁ । ମୋର ପ୍ରୟୋଜନ ଜଣେ ସମ୍ବେଦନଶୀଳ ବନ୍ଧୁର । ଯିଏ ମୋତେ ବୁଝିପାରିବ—ଜୀବନକୁ ମୋ ସହିତ ଭାଗ କରି ଭୋଗ କରିବ । ଅରୁଣ ସ୍ୱତନ୍ତ୍ର, ଜୀବନ ତା' ପାଇଁ ଗୋଟାଏ ବ୍ୟବସାୟ । ତାକୁ ନେଇ ମୁଁ କ'ଣ କରିବି ?

ଆଉ ଅସିତାଭ । ତା'ର ଆଜି ଆଉ କେହି ନାହିଁ । ଜୀବନର ସମସ୍ତ ସବୁଜିମା ତା' ଆଖି ଆଗରେ ବିବର୍ଣ୍ଣ ହୋଇଯାଉଛି । ସମସ୍ତେ ତାକୁ ଜଣ ଜଣ କରି ଛାଡ଼ି ଚାଲିଯାଇଛନ୍ତି । ଏତିକିବେଳେ ତ ତା' ପାଖରେ ମୋର ପ୍ରୟୋଜନ । ମା' ଭଳି ମମତା ଦେବ । ଭଉଣୀ ଭଳି ସ୍ନେହ କରିବ । ଆଉ ସ୍ତ୍ରୀ ଭଳି ସୋହାଗ କରିବ । ଏଇଭଳି ଜଣେ ନାରୀ ତା' ପାଇଁ ଆଜି ପ୍ରୟୋଜନ ।

ଅସୀମା ନୂଆବୋଉ ଆର୍ତ୍ତନାଦ କରି ଉଠିଲେ । ଜାଣି ଶୁଣି ତୁ ମରିବୁ ମିତା···

ମ୍ଳାନ ହସ ହସି ଅମିତା କହିଲି—ପ୍ରେମ ମାନେ ତ ମୃତ୍ୟୁ ବୋଉ । ଯେଉଁଦିନ ତାକୁ ପ୍ରଥମେ ଦେଖିଲି ସେଇଦିନ ମୁଁ ମରିଚି । ଦ୍ୱିତୀୟବାର ଏ ମୃତ୍ୟୁରେ ତ କିଛି ନୂତନତା ନାହିଁ । ସେଇ ମୋର ଘର, ସେଇ ମୋର ଅହଂକାର, ତା'ର ସତ୍ତା ମୋତେ ଚାରିଆଡ଼ୁ ଘେରି ରଖିଚି—ମୁଁ ଆଜିଯାଏ ବୁଝିପାରି ନଥିଲି । ତା' ଜାଗାରେ କ'ଣ ମୁଁ ଅନ୍ୟ କାହାକୁ ବସାଇ ପାରିବ ? ତା'ର ପ୍ରୟୋଜନ ଅନନ୍ତ ଶକ୍ତିର, ମୁଁ ତା'ର ସେଇ ଶକ୍ତି, କଣ୍ଠରେ ତାର ଆକଣ୍ଠ ତୃଷ୍ଣା । ମୁଁ ହେବି ତା' ପାଇଁ କଳନାଦିନୀ, ଶୀତଳ ସଲିଳା ବନନିର୍ଝରଣୀ । ଯେତେ ସୁନ୍ଦର ଆଖି ମୁଁ ଆଜି ପର୍ଯ୍ୟନ୍ତ ଦେଖିଚି, ସବୁଠି ତା'ର ସେଇ ଶୋକାକୁଳ ଶୋକାକୁଳ ମମତା ଛଳ ଛଳ ଆଖି ଦୁଇଟିକୁ ମୁଁ ଅନୁଭବ କରିଛି । ଯେଉଁଠି ଯେତେ କଣ୍ଠସ୍ୱର ଶୁଣିବାକୁ ପାଇଛି, ତା'ର ପ୍ରତ୍ୟେକଟି ଶବ୍ଦ ଭିତରେ ଦେଇ ତାରି କଣ୍ଠସ୍ୱର ହିଁ ମୋ କାନରେ ବାଜୁଛି । ମୁଁ ତା'ର ନିକଟକୁ ଫେରିଯିବାକୁ ଚାହେଁ ।

ଉଦ୍‌ଭ୍ରାନ୍ତ ଅସୀମା ନୂଆବୋଉଙ୍କ କଣ୍ଠରୁ କେବଳ ଗୋଟାଏ ଯାନ୍ତ୍ରିକ ଧ୍ୱନି ବାହାରି ଆସିଲା ।

ଗମ୍ଭୀର କଣ୍ଠରେ ଅମିତା କହୁଥିଲା—ନଇଁ ପଡ଼ିଲେ ସବୁ ସହ ହୋଇଯାଏ ବୋଉ । ଗୋଟାଏ ତ ମାତ୍ର ଜୀବନ, ତା' ପାଇଁ ଏତେ ହିସାବ ନିକାଶ ମୁଁ ଆଉ କରିପାରିବି ନାହିଁ । ତା' ବାଟରେ ସେ ବହିଯାଉ । ସମୟର ସ୍ରୋତରେ ଉଜାଣି ବାହିଯାଇ ଜୀବନକୁ ନୂଆକରି ଆରମ୍ଭ କରିବାର ଏ ଯେଉଁ ସୁଯୋଗ ମୁଁ ପାଇଛି ତାକୁ ଗ୍ରହଣ କରିନେଇ ଦେଖେଁ, ଜୀବନର ପ୍ରକୃତ ଅର୍ଥ ତଥାପି ମୁଁ ବୁଝି ପାରୁଛି କି ନାହିଁ ।

ଅସୀମା ନୂଆବୋଉ ନିରୁପାୟତାର ଯନ୍ତ୍ରଣାରେ କଇଁ କଇଁ ହୋଇ କାନ୍ଦୁଥିଲେ । ମୁଁ ତାଙ୍କୁ ବୁଝାଇ କହୁଥିଲି, "ଯନ୍ତ୍ରଣାର ସମୁଦ୍ରରେ ବ୍ୟର୍ଥତାକୁ ସମ୍ବଳ କରି ଭାସିବାର ନାମ ତ ଯୌବନ ।"

ମୁଁ କ'ଣ ଭୁଲ କରିଛି ହିମାଂଶୁ ?

---

# ମନ ଏକ ନଦୀ

ନୂଆମା' ଚାଲିଗଲେ···

ମୃତ୍ୟୁର କଜ୍ଜଳକୃଷ୍ଣ ଓଢ଼ଣା ତଳେ ତାଙ୍କର ଅତି ପରିଚିତ ଶୀର୍ଣ୍ଣ ଦେହଟା ଅଦୃଶ୍ୟ ହୋଇଗଲା । ପଛରେ ରହିଗଲା ଅନେକ ମାନ, ଅଭିମାନ, ପ୍ରବଞ୍ଚନା ଆଉ ଅପମାନର ସକରୁଣ ଇତିହାସ ।

ଯେଉଁ ଯାନମା' ପ୍ରାତ୍ୟହିକ ନାମ ଜପ ସହିତ ନୂଆମା'ଙ୍କର ନିନ୍ଦାଗାନକୁ ଏକ ଅତ୍ୟାବଶ୍ୟକ ଉଦ୍ଦିଷ୍ଟ କର୍ମ ବୋଲି ମନେକରୁଥିଲେ, ସେ ମଧ୍ୟ ଏଇ ମୁହୂର୍ତ୍ତରେ ଅଶ୍ରୁମୁଖୀ ହୋଇଉଠିଥିଲେ ।

ସଙ୍କୀର୍ଣ୍ଣ ସ୍ୱାର୍ଥପରତାର ସୀମା ଡେଇଁ ହୁଏତ ମନ ତାଙ୍କର ଯଥାର୍ଥରେ ସମ୍ବେଦନଶୀଳ ହୋଇଉଠିଥିଲା ।

ମୃତ୍ୟୁର କଷଟିରେ ମନୁଷ୍ୟତାର ଅମଳିନ ସ୍ୱର୍ଣ୍ଣଦ୍ୟୁତି ଝଲକି ଉଠେ ।

ହୁଏତ ନୂଆମା' ମଣିଷ ଭଲ ମଣିଷ ଥିଲେ । ହୁଏତ ନଥିଲେ· ·

ମୁଁ କିନ୍ତୁ ତାଙ୍କୁ ନିଷ୍ଠୁର ହୃଦୟ ସଂସ୍କୃତ ପଣ୍ଡିତଙ୍କଠାରୁ ଉଚ୍ଚସ୍ତରୀୟ ଯୋଗ୍ୟତା ସମ୍ପନ୍ନ ବୋଲି ମନେକରି ପାରୁନଥିଲି ।

କିଆବୁଦାରେ ନିଆଁ ଲଗାଇ ଶିଆଳ ପିଲାର ଦୁର୍ଦ୍ଦଶାରେ ଉଲ୍ଲସିତ ହୋଇ ଉଠିବା ମୁହୂର୍ତ୍ତରେ ନୂଆମା'ଙ୍କର ରକ୍ତଝରା ଚକ୍ଷୁ ଯେଉଁ ଭଳି ଭାବରେ ଆମର ଆନନ୍ଦର ଅର୍ଦ୍ଧେକ ନଷ୍ଟ କରି ଦେଉଥିଲା, ଗ୍ରୀଷ୍ମ ଦିବସର ଦୀର୍ଘ ବିଳମ୍ବିତ ମଧ୍ୟାହ୍ନରେ ବିଶ୍ରାମସୁଖବଞ୍ଚିତ କୋକିଳ କୂଳର ତ୍ରାସ ସଞ୍ଚାରକାରୀ ଶିଶୁମନର ଉଲ୍ଲାସ ନିମନ୍ତେ ତାଙ୍କର ସ୍ମୃତିମାନ ସେହିଭଳି ବିଭୀଷିକାପ୍ରଦ ମନେ ହେଉଥିଲା ।

ଆମପାଇଁ ସେ ମୃତ୍ୟୁଦେବତାଙ୍କର ଦ୍ୱିତୀୟ ଅବତାର ଥିଲେ ।

ବହୁଦିନ ପୂର୍ବେ ବସ୍‌ଷ୍ଟାଣ୍ଡରୁ ଫେରିବା ସମୟରେ ଘଟିଯାଇଥିବା ଏକ ସାମାନ୍ୟ ଘଟଣା ନିମନ୍ତେ ନୂଆମା'ଙ୍କର ଜ୍ୱଳସ୍ଫୁଲିଙ୍ଗୀ କ୍ରୋଧର ଶରବ୍ୟ ରୂପେ ଯେଉଁ ଦୁର୍ଭୋଗ ଅନୁଭବ କରିବାକୁ ପଡ଼ିଥିଲା, ତାହାର ସ୍ମରଣ ଏବେ ସୁଦ୍ଧା ଆମ ଶରୀରରେ ରୋମାଞ୍ଚ ସୃଷ୍ଟି ନିମନ୍ତେ ଯଥେଷ୍ଟ ।

ବାପାଙ୍କୁ ବିଦାୟ ଦେଇ ଫେରିବା ସମୟରେ ନୂଆମା' ସାନଭାଇ ନିମନ୍ତେ କିଛି ଗରମ ଜିଲେପି କାନିରେ ବାନ୍ଧି ଘରକୁ ଆସୁଥିଲେ । ପଛେ ପଛେ ଅନୁସରଣ କରି ଆସୁଥିଲୁ ଆମେ, ମାନେ ମୁଁ ଆଉ ମୋର ବଡ଼ଭଉ । ଏବେ ମାତ୍ର ଭାଇଙ୍କୁ ବିଦାୟ ଦେଇ ହୁଏତ ନୂଆ ମା'ଙ୍କର ମନ କିଛିଟା ଉଦାସ ହୋଇଯାଇଥିଲା । ଯଦ୍ୟପି ପିତୃବିଚ୍ଛେଦଜନିତ ବେଦନା ଅପେକ୍ଷା ନୂଆମା'ଙ୍କ କାନିରେ ବନ୍ଧା ହୋଇ ପିଠିପାଖରେ ନୃତ୍ୟପରାୟଣ ଜିଲେପିପୁଡ଼ାକୁ ଆୟତ୍ତାଧୀନ କରିବାର ଚିନ୍ତା ହିଁ ଆମକୁ ବ୍ୟାକୁଳିତ କରୁଥିଲା ଅଧିକ ।

ଆଗରେ ଅନ୍ୟମନସ୍କା ମନ୍ଥରଚରଣା ନୂଆମା'...

ପଛ ପାଖରେ ପଦପାତରେ ତାଳେ ତାଳେ ଦୋଦୁଲ୍ୟମାନ ଜିଲେପିପୁଡ଼ା...

ଈଷତ୍ ଉଷ୍ଣ, ରସସିକ୍ତ...ଆଃ...

କାନିମିଶା ପୁଡ଼ାଟିର ଲୋଭନୀୟ ଆକର୍ଷଣ ।

ମୋର ପାଟି ପ୍ରଥମେ ଚୁମ୍ବକଭଳି ଆକୃଷ୍ଟ ହୋଇ କାନିସୁଦ୍ଧା ମିଶାଇ ପୁଡ଼ାଟିକୁ ଆତ୍ମସାତ୍ କରିଥିଲା । ତା'ପରେ ଭାଇ ..ତା'ପରେ ମୁଁ—ନୂଆମା'ଙ୍କ ଗତି ସହିତ ତାଳରକ୍ଷି ଆମର ଆସ୍ୱାଦନ କ୍ରିୟା ଚାଲୁ ରହିଥିଲା ।

ଆଃ...ପୃଥିବୀର ସବୁ ଆନନ୍ଦ ଯଦି ଏମିତି ଦୀର୍ଘସ୍ଥାୟୀ ହେଉଥାଆନ୍ତା !

ଘରେ ପହଞ୍ଚି ସାନ ଭାଇକୁ ଦେଖି ନୂଆମା'ଙ୍କର ମିଠାଇ କଥା ମନେପଡ଼ିଲା । କାନିର ଅବସ୍ଥା ଦେଖି ସେ କିଛି କଠିନ ହୋଇଉଠିଲେ ।

ତାଙ୍କ ଆଖିରେ ନିଷ୍ଠୁରତା ନାଚୁଥିଲା । ଆମ ଦୁଇଜଣଙ୍କୁ ଧରିଆଣି ଓଳିକର ଖାଦ୍ୟ ବନ୍ଦ କରି ସେ ଶାସ୍ତିର ବ୍ୟବସ୍ଥା କରିଥିଲେ ।

ସେଦିନର ସେଇ କଠିନ ଭାବଲେଶହୀନ ମୁହଁ...ଶ୍ୱାପଦ ସୁଲଭ ହିଂସ୍ର ଦୃଷ୍ଟି... ଆଃ...

ପୁରୁଷହୀନ ପରିବାରରେ ନୂଆମା'ହିଁ ଥିଲେ ଆମର ଅଭିଭାବକ । ଚାକର, ହଳିଆ, କୋଠିଆ, ବନ୍ଧୁ-ବାନ୍ଧବଙ୍କ ଠାରୁ ମା' ପର୍ଯ୍ୟନ୍ତ ତାଙ୍କ ମୁହଁକୁ ଅନାଇ ରହୁଥିଲେ ।

ନୂଆମା' କଠୋର ହସ୍ତରେ ସଂସାରର ଆହୁଲା ଧରି ବସିଥିଲେ ।

ଶୁଣା ଯାଉଥିଲା, ସେ ଅଚଳାଚଳ ସମ୍ପତ୍ତିର ଅଧିକାରିଣୀ ଥିଲେ । ଅନେକ ଦିନ ପୂର୍ବେ ପ୍ରଥମ ଯୌବନରେ ତତ୍କାଳୀନ ଏକ ପ୍ରତିଷ୍ଠିତ ପରିବାରରେ ତାଙ୍କର ବିବାହ ହୋଇଥିଲା । ଗାଈ, ଘୋଡ଼ା, ସବାରୀ, ପାଲିଙ୍କି, ଖଟ, ବାସନ, ପୋଇଲି, ପରିବାରୀ ସହ ଯଥୋଚିତ ବିଦାୟ ନେଇ ନୂଆମା' ନୂଆ ସଂସାର ପାତିବାକୁ ଚାଲିଯାଇଥିଲେ ।

ମାତ୍ର ଗୋଟିଏ ଦିନ ପରେ ସେ ନିଜର ପ୍ରିୟ କେଶା ପୋଇଲା ଅନୁ ଗହଣା ବାକ୍ସଟି ମାତ୍ର ସମ୍ବଳ କରି ପିତ୍ରାଳୟକୁ ଫେରି ଆସିଥିଲେ ।

ତାଙ୍କର ଏଇ ନାଟକୀୟ ପ୍ରତ୍ୟାବର୍ତ୍ତନ ନିଶ୍ଚୟ ଉଭୟ ପରିବାରରେ ପ୍ରଶ୍ନର ଘୂର୍ଣ୍ଣି ସୃଷ୍ଟି କରିଥିବ । ତତ୍କାଳୀନ କଠୋର ସମାଜ ନିଶ୍ଚୟ ନୀରବ ରହି ନଥିବ ।

ମାତ୍ର ନୂଆମା' ନିର୍ବିକାର ଥିଲେ ।

ଏକମାତ୍ର ସ୍ନେହ ପରିପୂର୍ଣ୍ଣା କନ୍ୟାର ଲବଲେଶହୀନ ମୁହଁକୁ ଚାହିଁ ତାଙ୍କର ପିତା ତାଙ୍କୁ କୌଣସି ପ୍ରଶ୍ନ ପଚାରି ନଥିଲେ । ଏ ସମ୍ପର୍କୀୟ ସମସ୍ତ ଆଲୋଚନାକୁ ପାରିବାରିକ ଅଭିଜାତ୍ୟ ବଳରେ ନିଷେଧ କରି ଦିଆଯାଇଥିଲା ।

ଅନେକ ଦିନ ପରେ ଜେଜେବାପାଙ୍କର ମୃତ୍ୟୁ ପରେ କେଶା ପୋଇଲା ମା'ଙ୍କୁ ଘଟଣାର ଯେଉଁ ଗୋପନୀୟ ବିବରଣୀ ପେଶ୍ କରିଥିଲା, ତାହିଁରୁ ସେତେବେଳେ କିଛି ବୁଝିବାର ବୟସ ଆହୁରି ମୋର ହୋଇନଥିଲା ।

ଚତୁର୍ଥୀ ଦିନ ଆୟୋଜିତ ଭୋଜି ସବୁ ସରୁ ବୈଶାଖ ରାତି ପ୍ରାୟ ଅତିକ୍ରାନ୍ତ ହୋଇ ଯାଇଥିଲା । ସ୍ତ୍ରୀ ଆଚାର ପରେ ବରବଧୂ ଶୟନ କକ୍ଷରେ ପ୍ରବେଶ କରିଥିଲେ ।

କେଶା ସିଡ଼ି ତଳେ ଏକ ସୁବିଧା ଜନକ ସ୍ଥାନ ଖୋଜିନେଇ କ୍ଳାନ୍ତ ମେଣ୍ଟାଉଥିଲା ।

ହଠାତ୍ ନୂଆମା'ଙ୍କର ଶୟନ କକ୍ଷର ଦରଜା ଖୋଲିଯାଇଥିଲା । ଭିତରୁ ବାହାରି ଆସିଥିଲେ ସ୍ୱୟଂ ନବବଧୂ । ତାଙ୍କ ଆଖିରୁ ନିଆଁ ଝରୁଥିଲା । ସଯତ୍ନ ବିନ୍ୟସ୍ତ ଦୀର୍ଘ କବରୀ ଖୋଲିଯାଇ ଚୂର୍ଣ୍ଣ କୁନ୍ତଳ ସବୁ ରାତି ଶେଷର ଶୀତଳ ପବନରେ ଏଣେ ତେଣେ ଉଡ଼ୁଥିଲା । ସିନ୍ଦୂର ଟୋପା କପାଳ ସାରା ବୋଳି ହୋଇ ଯାଇଥିଲା ।

ପଛେ ପଛେ ତାଙ୍କର ପ୍ରାୟ ଯୋଡ଼ହସ୍ତ ନବବିବାହିତ ସ୍ୱାମୀ ଚାଲି ଆସୁଥିଲେ ।

ନୂଆମା'ଙ୍କର ତୀକ୍ଷ୍ଣ କଣ୍ଠସ୍ୱରରେ ରାତି ଶେଷର ନୀରବତା ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ଯାଉଥିଲା ।

କେଶା ତାଙ୍କ ଆଡ଼କୁ ଧାଇଁ ଯାଇଥିଲା ।

ହାତରେ ଧରିଥିବା ବାକ୍ସଟିକୁ ତା' ଆଡ଼କୁ ବଢ଼ାଇ ଦେଇ ନୂଆମା' ଆଦେଶ ଦେଇଥିଲେ, "ରଥ ବେହେରାକୁ ସବାରୀ ଭିଡ଼ିବାକୁ କହ ।"

କେଶା ଅଶ୍ରୁସିକ୍ତ ବିସ୍ଫାରିତ ନେତ୍ରରେ କିଛିକ୍ଷଣ ଅନାଇ ରହିଥିଲା ମାତ୍ର ।

ସବାରିରେ ଉଠିବା ପୂର୍ବରୁ ଶୁଭ୍ର ପ୍ରାସାଦର ବିସ୍ତୃତ ଅଙ୍ଗନରେ ଉଦାସ କରୁଣ ମୁଖରେ ଦଣ୍ଡାୟମାନ ନିଜର ସ୍ୱାମୀଙ୍କ ଆଡ଼କୁ ଅନାଇ ଘୃଣା ବ୍ୟଞ୍ଜକ ସ୍ୱରରେ ନୂଆମା' କହିଥିଲେ, "ନିର୍ଭେସଣାର ରାଧିକା ହୋଇ ଏଠାରେ ରହିବା ଅପେକ୍ଷା ମୁଁ ବରଂ ଘରକୁ ଫେରିଯାଉଛି ।"

ତା'ପରେ ସେ ସବାରି କବାଟ ବନ୍ଦ କରିଦେଇଥିଲେ । ବେହେରାମାନେ ସବାରି ଉଠାଇ ଜୋରରେ ଧାଇଁଥିଲେ ।

ପଛେ ପଛେ ଗୁଲିଥିଲା କେଣ୍ଟି ।

ଘରକୁ ଫେରି ନୂଆମା' ପ୍ରଥମେ କିଛିଦିନ ନିଜକୁ ଗୋଟିଏ କୋଠରୀରେ ବନ୍ଦ କରି ରଖିଥିଲେ ।

ଶେଷ ବୈଶାଖର ଏକ ସାୟାହ୍ନରେ, ଯେଉଁଦିନ ସେ ଏଇ ପରିବାର ଗୋଟିଏ ଦିନ ପାଇଁ ମାତ୍ର ଛାଡ଼ିଯାଇଥିଲେ, ଠିକ୍ ସେହିଦିନ ତାଙ୍କର ଅମ୍ଳ ନିର୍ବାହନ ଶେଷ ହୋଇଥିଲା ।

ମାସ ପରେ ମାସ ବିତିଯାଉଥିଲା—ବର୍ଷ ପରିଣତ ହେଉଥିଲା ଯୁଗରେ । ନୂଆମା'ଙ୍କ ଆଖି ଆଗରେ ପରିବାରରେ ଅନେକ ପରିବର୍ତ୍ତନ ହେଉଥିଲା । ପିତା ମାତାଙ୍କର ମୃତ୍ୟୁ, ଜମିଦାରୀ ଲୋପ, ଏକମାତ୍ର ଭାଇର ବିଦେଶ ଯାତ୍ରା ପ୍ରଭୃତି ତାଙ୍କର ମାନସିକତାକୁ ଅନେକ ଦୁର୍ବଳ କରିପକାଇଥିଲେ ମଧ୍ୟ ସେ ଭାଙ୍ଗି ପଡ଼ି ନଥିଲେ । ଶାସନର, ପରିଗୁଳନାର ଦଣ୍ଡ ନିଜ ହାତକୁ ଉଠାଇ ନେଇ ସେ ଦୃଢ଼ ଭାବରେ ସମସ୍ତ ରକ୍ଷା କରୁଥିଲେ ଆଉ ସମସ୍ତ ଶିଶୁକୁଳ ତାଙ୍କର ଆଶୁମରଣ କାମନା କରୁଥିଲେ ।

ନୂଆମା' ବୋଧହୁଏ ଦୁର୍ଭାଗ୍ୟର ଅଭିଶାପ ନେଇ ସଂସାରକୁ ଆସିଥିଲେ । ନଚେତ୍ ଚୌଧୁରୀ ରାଜେନ୍ଦ୍ର ନାରାୟଣଙ୍କ ପରିବାର ଅଳ୍ପ ଦିନ ମଧ୍ୟରେ ଏପରି ଦୁର୍ଦ୍ଦଶାର ସମ୍ମୁଖୀନ ହୁଅନ୍ତା କାହିଁକି ?

ଜମିଦାରୀ ପ୍ରତିପତ୍ତି ସବୁ ହରାଇ ନୂଆମା'ଙ୍କର ଏକଦା ସ୍ୱାମୀ ବୋଲାଉଥିବା ସେହି ନିରୀହ ଭଦ୍ରଲୋକଟି, ଯେଉଁ ସ୍ତ୍ରୀ ତାଙ୍କୁ ଉପହାସ କରି ଛାଡ଼ି ଗୁଲିଆସିଥିଲା, ତାଙ୍କରି ପାଖରେ ହାତପାତି ଠିଆ ହେବାକୁ ତାଙ୍କୁ ପଡ଼ନ୍ତା କାହିଁକି ?

ସମ୍ବାଦ ପାଇ ନୂଆମା'ଙ୍କର ମୁହଁ କଠିନ ହୋଇଯାଇଥିଲା । କେବଳ ସୀମନ୍ତରେ ସାମାନ୍ୟ ସିନ୍ଦୂର ରେଖା ବ୍ୟତୀତ ବିବାହିତା ରମଣୀର ଅନ୍ୟ କୌଣସି ସୂଚନା ତାଙ୍କଠାରେ ନଥିଲା । ଅଳଙ୍କାର ପ୍ରତି ତାଙ୍କର ଆବାଲ୍ୟରୁ ଅନିହା ଥିଲା । ଯାହା ସାଜସଜ୍ଜା ଥିଲା, ତାହା କେବଳ ମାତ୍ର ବସନରେ । ମଣିଆବନ୍ଧ, ସମ୍ବଲପୁର ଅଞ୍ଚଳରୁ ସଂଗୃହୀତ ବୟନକର୍ମର ଶ୍ରେଷ୍ଠ ନମୁନା ବ୍ୟତୀତ ଆଉକିଛି ସେ ପିନ୍ଧୁନଥିଲେ । ଦୁର୍ଘଟଣାଟି ଘଟିଯିବା ପରେ ସେତକ ମଧ୍ୟ ଛାଡ଼ିଦେଇ ମୟୂରଭଞ୍ଜ ମୋଟା ଖଣ୍ଡିକ ମାତ୍ର ସେ ବ୍ୟବହାର କରୁଥିଲେ । ଆମିଷ ସେ ମୂଳରୁ ଖାଉ ନଥିଲେ ।

ନୂଆମା'ଙ୍କର କ୍ରୋଧ ପରିବାରର ଆତଙ୍କର କାରଣ ହୋଇଥିଲା । ହେତୁଭଳି ଅବସରରେ ତାଙ୍କର ସ୍ୱାମୀ ମୋର ମା'ଙ୍କ ବ୍ୟତୀତ ଆଉ କେହି ତାଙ୍କର ସମ୍ମୁଖୀନ ହେବାକୁ ସାହସ କରୁନଥିଲେ ।

ଏଥର ମଧ୍ୟ ତାହାହିଁ ହେଲା । କୁଣ୍ଠିତ ପଦକ୍ଷେପରେ ମା' ନୂଆମା'ଙ୍କ କକ୍ଷରେ ଉପସ୍ଥିତ ହେଲେ ।

ଭ୍ରାତୃଜାୟାଙ୍କର ଉପସ୍ଥିତି ନୂଆମା'ଙ୍କର ସଦା କଠୋର ମୁଖମଣ୍ଡଳକୁ ଅଧିକ ବିକୃତ କରିପକାଇଲା । ଆଖି ତାଙ୍କର ରକ୍ତବର୍ଣ୍ଣ ହୋଇଗଲା । ଦାନ୍ତ କଡ଼ମଡ଼ କରି ସେ କହିଲେ—ନା...'

ମୃଦୁ ସ୍ୱରରେ ମା' କହିଲେ, "ଦ୍ୱିଜୁବାବୁ ଏ ପରିବାରର ବନ୍ଧୁ । ବିପଦ ସମୟରେ ତାଙ୍କୁ ସାହାଯ୍ୟ ନକଲେ, ଲୋକେ କହିବେ କ'ଣ ?"

ନୂଆମା' ଆଖି ବୁଜିଲେ । ଅନେକକ୍ଷଣ ପରେ ଧୀରେ ଧୀରେ କହିଲେ—ଆଚ୍ଛା ! ନୂଆଜେଜେ ରହିଗଲେ ।

ମଣିଷ ମଣିଷକୁ ପାଖରେ ରଖେ, ସୌଜନ୍ୟ ଦେଖାଏ, ସମ୍ବର୍ଦ୍ଧେ, ଆଉ ନାନାଭାବେ ଲାଳନ କରେ, କେବଳ ନିଜର ସାମର୍ଥ୍ୟ ଅନୁଯାୟୀ ତାକୁ ଅପମାନ କରିପାରିବ ବୋଲି ।

ନୂଆମା'ଙ୍କର ଆଚରଣରୁ ଅନ୍ତତଃ ତାହାହିଁ ଜଣାପଡ଼ୁଥିଲା । ନୂଆଜେଜେଙ୍କର ରହିବା ବ୍ୟବସ୍ଥା କରାଯାଇଥିଲା ବାହାର ମହଲରେ, ଯେଉଁଠାରେ କି ଚାକର କୋଠିଆ-ମାନେ ରହୁଥିଲେ । ସମସ୍ତଙ୍କର ଆହାର ପରେ ବ୍ରାହ୍ମଣୀ ନାନୀ ନୂଆଜେଜେଙ୍କ ପାଇଁକୁ ଚାକର ହାତରେ ଆଲୁମିନିୟମ୍ ଥାଳରେ ଅଣ୍ଟାଭାତ ଓ ସାମାନ୍ୟ ତରକାରୀ ପଠାଇ ଦେଉଥିଲେ । ପ୍ରାୟାନ୍ଧକାର ଗୃହରେ ଗୋଟିଏ ଟଳଟଳାୟମାନ ତ୍ରିପାଦଯୁକ୍ତ ତକ୍ତପୋଷ ଉପରେ ଏକଦା ମହାପ୍ରତାପୀ ଜମିଦାରଙ୍କର ମଳିନ ଶଯ୍ୟା ସଦା ପ୍ରସ୍ତୁତ ଥିଲା । ପାଞ୍ଚଖଣ୍ଡ ଇଟା ତକ୍ତପୋଷଟାର ଚତୁର୍ଥ ପାଦର ଭୂମିକା ତୁଲାଉଥିଲା ।

ତଥାପି ନୂଆଜେଜେ ପଡ଼ିରହିଥିଲେ ।

ଏ ବ୍ୟବସ୍ଥା ବୋଧହୁଏ ମା'ଙ୍କର ମନଃପୂତ ହୋଇନଥିଲା । ମାତ୍ର ନୂଆମା' ତାଙ୍କୁ ପ୍ରତିବାଦର ସାମାନ୍ୟ ମାତ୍ର ସୁଯୋଗ ନଦେଇ କହିଥିଲେ, "ଯାହାର ଯାହା ପ୍ରାପ୍ୟ ତାକୁ ସେତିକମାତ୍ର ଦେବାଭଳି ସାଂସାରିକ ବୁଦ୍ଧି ମୋର ଅଛି । ଏ ବିଷୟରେ କୌଣସି ଉପଦେଶ ଗ୍ରହଣ କରିବାକୁ ମୁଁ ପ୍ରସ୍ତୁତ ନୁହେଁ ।"

ମା' ଚୁପ୍ ରହିଥିଲେ ।

ନୂଆମା'ଙ୍କର ପ୍ରତିବାଦର ଅସହିଷ୍ଣୁ ରୂପ ସହିତ ସେ ଭଲଭାବରେ ପରିଚିତା ଥିଲେ ।

ନୂଆମା' ପ୍ରଚୁର ସମ୍ପତ୍ତିର ଅଧିକାରିଣୀ ଥିଲେ । ଯୌତୁକ ସୂତ୍ରରେ ସେ 'ତେଲହଲଦୀ' ନାମକ ଯେଉଁ ମୌଜା ପାଇଥିଲେ ତାହାର ଆୟ, ଆଉ କେତେ ତାଙ୍କର ଭରଣପୋଷଣ ନିମନ୍ତେ ଗଚ୍ଛିତ ରଖିଥିବା ବିପୁଳ ଅର୍ଥ ଏପର୍ଯ୍ୟନ୍ତ ପ୍ରାୟ ଜମିରହିଥିଲା ।

ତାଙ୍କର ଜ୍ଞାତଭଗ୍ନୀ ସାନମା' ନିଜର ବିରାଟ ପରିବାରରୁ ଗୋଟିଏ ପୁରୁଷପିଲା ଉତ୍ସର୍ଗ କରି ବୃନ୍ଦଆଦୀ ସମସ୍ତ ପରିବାରର ପାଣି ପାଇବାର ଯେଉଁ ଉଦାର ପ୍ରସ୍ତାବ ପଠାଇଥିଲେ, ତାହା ନୂଆମା'ଙ୍କ ଦ୍ୱାରା ସିଧାସଳଖ ପ୍ରତ୍ୟାଖ୍ୟାତ ହୋଇଥିଲା ।

ସାନମା' ଖୋଲାଖୋଲି ଭାବରେ ଏକ ବନ୍ଧ୍ୟା ନାରୀର ସୃଷ୍ଟିଛଡ଼ା ଔଦ୍ଧତ୍ୟ ବିରୁଦ୍ଧରେ ସମାଲୋଚନା ଆରମ୍ଭ କରିଦେଇଥିଲେ ।

ଏଥିରେ କଣ୍ଟକ୍ଷତ ଅନଭ୍ୟସ୍ତା ନୂଆମା'ଙ୍କୁ କେତେଟା ବାଧୁଥିଲା କେଜାଣି, ତାଙ୍କର ଆଚରଣରୁ କିନ୍ତୁ ଏହାର ସାମାନ୍ୟତମ ପରିଚୟ ମିଳୁନଥିଲା ।

ନୂଆମା' ରୋଗଶଯ୍ୟାରେ ଶୋଇରହିଥିଲେ । ମନେପଡ଼ିବା ଭିତରେ ତାଙ୍କୁ କେବେ ଶଯ୍ୟାଲଗ୍ନା ହେବାର ଦେଖି ନାହିଁ । ଏକାନ୍ତ ଶୃଙ୍ଖଳିତ ଦିନଚର୍ଯ୍ୟା ତାଙ୍କର ଆରମ୍ଭ ହେଉଥିଲା ବ୍ରାହ୍ମ ମୁହୂର୍ତ୍ତରେ ଏବଂ ରାତ୍ରିର ମଧ୍ୟଯାମ ପର୍ଯ୍ୟନ୍ତ ତାଙ୍କୁ ଶଯ୍ୟା ସ୍ପର୍ଶ କରିବାର ଅବକାଶ ନଥିଲା ।

ଦୋର୍ଦ୍ଦଣ୍ଡ ପ୍ରତାପଶାଳିନୀ ପରିବାରର ଅସପତ୍ନ ସାମ୍ରାଜ୍ଞୀ ନୂଆମା'ଙ୍କର ଅସହାୟ ମୂର୍ତ୍ତି ଏକ କରୁଣ ପରିବେଶ ସୃଷ୍ଟି କରିଥିଲା ।

ତକିଆକୁ ଆଉଜି ନୂଆମା' ବସିରହି ବାତାୟନ ଦେଇ ସପ୍ତଶଯ୍ୟା ଆରପଟରେ ଅସ୍ତାୟମାନ ସୂର୍ଯ୍ୟଙ୍କର ବିଦାୟକାଳୀନ ଉତ୍ସବ ଦେଖୁଥିଲେ । ଅସ୍ତସୂର୍ଯ୍ୟର ରକ୍ତାଭା ତାଙ୍କର ମୁଖମଣ୍ଡଳକୁ ଏକ ନୈସର୍ଗିକ ଦୀପ୍ତିରେ ପରିପୂର୍ଣ୍ଣ କରିଥିଲା ।

ନୂଆମା' ମୋତେ ଦେଖି ପାଖକୁ ଡାକିଲେ । ତାଙ୍କର ଆଖି ଉଜ୍ଜ୍ୱଳପ୍ରାଣ ଏବଂ ମମତା-କରୁଣ ଦେଖାଯାଉଥିଲା । ରକ୍ତଶୂନ୍ୟ ଶେତା ମୁହଁରେ ଡୋଳା ଦୁଇଟି କାଚଗୁଲି ଭଳି ଚକ୍ ଚକ କରୁଥିଲା । ଇଶାରାରେ ପାଖକୁ ଡାକି ମୋତେ ଶଯ୍ୟାଧାରରେ ବସିବା ନିମନ୍ତେ ଇଙ୍ଗିତ ଦେଲେ ।

ନୂଆମା'ଙ୍କଠାରୁ ଏଭଳି ବ୍ୟବହାର ପାଇବାରେ ଆମେ ଅଭ୍ୟସ୍ତ ନଥିଲୁ । ମୁଁ ଆଶଙ୍କିତ ଚିତ୍ତରେ ତାଙ୍କ ପାଦ ତଳକୁ ବସିପଡ଼ିଲି ।

ନୂଆମା' ଏ ମଧ୍ୟରେ ମନ ସ୍ଥିର କରିସାରିଥିଲେ । ମା' କିନ୍ତୁ ତାଙ୍କୁ ବାଧାଦେଇ କହିଥିଲେ, "ଅନ୍ୟର ଅଭିଶାପ ମୁଣ୍ଡରେ ନେଇ କାହାର ମଙ୍ଗଳ ହୁଏନାହିଁ । ତମେ ବରଂ ଅନ୍ୟ କାହାକୁ…"

ମା'ଙ୍କର ଇଙ୍ଗିତ ବୁଝିବା ନୂଆମା'ଙ୍କ ପକ୍ଷରେ କଷ୍ଟସାଧ୍ୟ ନଥିଲା । ବାଧାଦେଇ ସେ କହିଲେ, ଶକୁନର ଅଭିଶାପରେ ଗୋରୁ ମରୁଥିଲେ ସଂସାର ଆଉ ନଥାନ୍ତା । ତମେ ମୋତେ ବାଧା ଦିଅନା । ମୁଁ ମନ ସ୍ଥିର କରିସାରିଛି ।

ନୂଆମା' ମୋତେ ଦତ୍ତକ ନେବେ ବୋଲି ସିଦ୍ଧାନ୍ତ କରିସାରିଥିଲେ । ଏ ସନ୍ଧାନ୍ତରେ ତାଙ୍କର ମୁହଁ ଖୋଲିବା ହିଁ ପରିବାର ପାଇଁ ଯଥେଷ୍ଟ ଥିଲା ।

ତେଣୁ ସେ ପୁଣି କହୁଥିଲେ, "ଓକିଲଙ୍କୁ ଖବର ଦିଆଯାଇଛି । ତେଲିହଳଦୀ ମୌଜା ଆଉ ବ୍ୟାଙ୍କର ସମସ୍ତ ଟଙ୍କା ତୋତେ ଦେଇଯାଉଛି । ଗହଣାସବୁ ମା' ପାଖରେ ରହିଲା । ମୋର ଆଉ ସେସବୁ ହେବ କ'ଣ ? ବୋହୂ ଆସିଲେ ପିନ୍ଧିବ ।

କେବଳ ମାତ୍ର ବୋହୂର ଉଲ୍ଲେଖ ମୋର କିଶୋର ମନକୁ ଲଜ୍ୟା ଭାରାକ୍ରାନ୍ତ କରି ପକାଇଥିଲା ।

ନୂଆମା'ଙ୍କର କ୍ଳାନ୍ତ ସ୍ୱର ଯେତେ ଯେମିତି ବହୁଦୂରରୁ ଶୁଣା ଯାଉଥିଲା, "ଏଥର ମରିହେବ ସିନା । ମୋତେ ଥରେ ମାଆ' ବୋଲି ଡାକ୍ ତ..."

ଏକ ବଞ୍ଚିତା, ମୃତପ୍ରାୟା ଜନନୀ ପ୍ରାଣର ବ୍ୟାକୁଳତା ବୁଝିବା ଭଳି ବୟସ ସେତେବେଳେ ମୋର ହୋଇନଥିଲା । ନୂଆମା'ଙ୍କର ବାରମ୍ବାର ଆକୁଳ ନିବେଦନ, ମୋ ମୁହଁକୁ ତାଙ୍କ ଗୁଡିରେ ମାଡ଼ିଧରି ଆଦର କରିବାର ବ୍ୟର୍ଥ ପ୍ରୟାସ ମୋତେ ବିରକ୍ତ କରାଉଥିଲା ମାତ୍ର । ମୁଁ ସେଠାରୁ ଧାଇଁ ପଳାଇ ଆସିଥିଲି ।

ନୂଆମା' ତା'ପରେ ନୂଆଜେଜେଙ୍କୁ ଡକାଇ ପଠାଇଥିଲେ । କୌଣସି ଭୂମିକା ନକରି ଶୂନ୍ୟକୁ ଅନାଇ ସେ କହୁଥିଲେ, "ନରକୁ ମୁଁ ଦତ୍ତକ ନେଲି । ପରେ ଯେମିତି କେହି ଏଥିରେ ବାଧା ସୃଷ୍ଟି ନକରନ୍ତି ।"

ନୂଆଜେଜେ ସବୁଦିନ ପାଇଁ ନୂଆମା'ଙ୍କର 'କେହି' ତାଲିକାରେ ରହିଗଲେ ।

ନୂଆଜେଜେ ନୀରବରେ ଠିଆହୋଇ ରହିଥିଲେ । ହୁଏତ ଜୀବନରେ ସେ ଦ୍ୱିତୀୟ ଥର ପାଇଁ ନିଜର ପ୍ରତାପଶାଳିନୀ, ଏକଦା ବିବାହିତା ପତ୍ନୀକୁ ଦେଖୁଥିଲେ ।

ନୂଆମା'ଙ୍କର ସ୍ତିମିତ କଣ୍ଠସ୍ୱର ଧ୍ୱନିତ ହୋଇଉଠିଲା, "ନର, ପାଦଧୂଳି ଟିକିଏ ଆଣ । କାହାର ପାଦଧୂଳି ଶେଷ ସମୟରେ ତାଙ୍କର ଏତେ ପ୍ରୟୋଜନ ହୋଇପଡ଼ିଲା, ତା' ବୁଝିବାକୁ ମୋର କିଛି ଅସୁବିଧା ହୋଇନଥିଲା ।

ଧଇଁ ସଇଁ ହୋଇ ନୂଆମା' ସ୍ୱାଗତ କହୁଥିଲେ, "ମୋଭଳି ସ୍ତ୍ରୀ, ଆଉ ଏହିଭଳି ସ୍ୱାମୀ ଯୁଗେ ଯୁଗେ କାହାକୁ ନମିଳୁ......"

ତାଙ୍କର ଆଖି ଦୁଇଟି ଧୀରେ ଧୀରେ ମୁଦ୍ଦ ହୋଇଆସୁଥିଲା । ସେ ଘୁମାଇଁ ପଡ଼ୁଥିଲେ ।

ନୂଆକେକେଙ୍କର ଦୁଇଆଖିରୁ ଦୁଇଧାର ଅଶ୍ରୁ ଝରିପଡ଼ୁଥିଲା । ସେ ହୁଏତ ନଜର ପରଲୋକଗତା ଦୁର୍ବିନୀତା ପତ୍ନୀଙ୍କୁ ବୁଝାଇବାକୁ ଚାହୁଁଥିଲେ, ଯେ ମଣିଷର ମନ ହେଉଛି ଏକ ନଦୀ ଆଉ ଅନୁତାପର ସମୁଦ୍ରରେ ତାହା ପୂରାପୂରି ନଜର ସତ୍ତା ହରାଇଦିଏ ।

ମାତ୍ର ନୂଆମା' ତାଙ୍କୁ ସେ ସୁଯୋଗ ଦେଲେ କେଉଁଠି ?



# ଲକ୍ଷହୀରା ସମ୍ବାଦ

ମଧୁଶାଳାର ପ୍ରାୟାନ୍ଧକାର ପରିବେଶ ସେଦିନ ସନ୍ଧ୍ୟାରେ ମଧୁଲୋଭୀ ଭ୍ରମରମାନଙ୍କର କଳଗୁଞ୍ଜନରେ ମୁଖରିତ ହୋଇ ଉଠିଥିଲା । ପାଖ ଘରୁ ଶୁଣାଯାଉଥିଲା ସୋଡ଼ା ବୋତଲ ଖୋଲିଯିବାର ଫଟ୍‌ଫାଟ୍ ଶବ୍ଦ । ଉର୍ଦ୍ଦିପିନ୍ଧା ବେହେରାର ଦଳ ଟ୍ରେରେ ଡିକାଣ୍ଟର ସଜାଇ ପବନରେ ଭାସିଲା ଭଳି ଯିବା ଆସିବା କରୁଥିଲେ । କନର୍ଟରେ ରକ୍ ଉଦ୍ବେଳକାରୀ ଏକ ଚଟୁଳ ବାଜଣାର ସୁର ତଥାପି ବାଜି ଚାଲିଥିଲା ।

ଡାନ୍‌ସଫ୍ଲୋର୍‌ରେ ବିଭିନ୍ନ ଅଙ୍ଗଭଙ୍ଗୀ କରି ନାଚୁଥିଲେ, ଏସିଆର ସର୍ବାଧିକ ହଟ୍ ଆପଲ୍ ଗାର୍ଲ ମେଲିଣ୍ଟା । ତାଙ୍କ ଦେହର ଚାରିଆଡ଼େ ବିଭିନ୍ନ ବର୍ଣ୍ଣର ନାତି ବୃହତ୍ ବେଲୁନ୍ ସବୁ ଖଞ୍ଜା ଯାଇଥିଲା । ନୃତ୍ୟ ଭଙ୍ଗୀରେ ଘୂରି ବୁଲୁଥିବା ସେଇ ହସୁଥିବା ଅଲୋକରଶ୍ମି ବହୁରଙ୍ଗୀ ବେଲୁନ୍‌ରେ ପ୍ରତିବିମ୍ବିତ ହୋଇ ଇନ୍ଦ୍ରଧନୁର ଆଭାସ ମାତ୍ର ଦେଉଥିଲା ।

ମଧୁଶାଳାର ଗୋଟିଏ କୋଣରେ ବସି ମୁଁ ଆଦିମ ପ୍ରବୃତ୍ତିର ସେଇ ସର୍ବାଧିକ ପ୍ରଦର୍ଶନ ଆଡ଼େ ବିସ୍ମୟଚକିତ ଦୃଷ୍ଟିରେ ଅନାଇ ଶ୍ଳୀଳତା ରକ୍ଷକ ମୋର ଅତି ବିରକ୍ତ ପ୍ରୌଢ଼ ବନ୍ଧୁଙ୍କୁ ନିମ୍ନ କଣ୍ଠରେ ପଚାରୁଥିଲି । ଦେହସାରା ବେଲୁନଗୁଡ଼ାଏ ଝୁଲାଇଥିବା ଏଇ ନର୍ତ୍ତକୀକୁ ଆପଲ୍ ଗାର୍ଲ ବୋଲି ସମ୍ବୋଧନରେ କୁହାଯାଉଛି କାହିଁକି ?

ଇନ୍‌ସ୍‌ପେକ୍ଟର ବନ୍ଧୁ ଗୋଟିଏ ହାତ ମୋ କାନ୍ଧରେ ରଖି ମୋତେ ନୀରବ ରହିବାକୁ ଇଙ୍ଗିତ ଜଣାଇ ଚାପା ସ୍ୱରରେ କହୁଥିଲେ, "ମଜା ଦେଖନ୍ତୁ ନା ।"

ଚପଳଛନ୍ଦା ସେଇ ରମଣୀ ନୃତ୍ୟ ଛନ୍ଦରେ ନିଜ ଦେହ ଲଗ୍ନ ବେଲୁନ୍‌ଗୁଡ଼ିକୁ ଫୁଟାଇବା ନିମନ୍ତେ ଦର୍ଶକମାନଙ୍କୁ ଅର୍ଥବହ ଆହ୍ୱାନ ଜଣାଉଥିଲେ ।

ବେଲୁନ୍ ଫଟା ମହୋତ୍ସବର ବାଲକ୍ରୀଡ଼ାରେ ସତର ବର୍ଷର ସଦ୍ୟ ପକ୍ଷ ବିସ୍ତାର କରୁଥିବା ବଣିକ ନନ୍ଦନଠାରୁ ସତୁରି ବର୍ଷର ଲୋଳଚର୍ମୀ ଶିଳ୍ପପତି ପର୍ଯ୍ୟନ୍ତ ସମାନ ଉତ୍ସାହରେ ଯୋଗ ଦେଉଥିଲେ । ଉନ୍ମାଦ କୋଟିପତି ଦୁଏତ ଅତି ଉତ୍ସାହରେ ନର୍ତ୍ତକୀଙ୍କର କୋମଳ ଊର୍ଦ୍ଧ୍ୱାଙ୍ଗର ଅଂଶ ବିଶେଷକୁ ଦୀର୍ଘ ସମୟ ଧରି ନିଜ ହାତମୁଠାରେ ଧରି ପେଷଣ କରିବାରେ ଏକ ପ୍ରକାର ପାଶବିକ ଆନନ୍ଦ ଅନୁଭବ କରୁଥିଲେ । ଯନ୍ତ୍ରଣାରେ କ୍ରମଶଃ ନୀଳ ହୋଇ ଯାଉଥିବା ନର୍ତ୍ତକୀ ଆତ୍ମରକ୍ଷାର ନିରୁପାୟତାରେ ପକ୍ଷଝଡ଼ା ଦେଇ ମୁକୁଳି ଯିବାର ପ୍ରଚେଷ୍ଟାରେ ଶେଷରେ ସଫଳ ହେଲେ ।

ଘଟଣାଟା ବିଦ୍ୟୁତ୍ ଗତିରେ ଘଟିଗଲା ଏବଂ କଣ ହୋଇଛି ଜାଣିବା ପୂର୍ବରୁ ଅଧଃପତିତ ବୃଦ୍ଧଙ୍କର ଯନ୍ତ୍ରଣା କାତର ଆର୍ତ୍ତନାଦର କ୍ଷୀଣ ସ୍ୱର ମାତ୍ର ଶୁଣାଯାଇଥିଲା । ତାଙ୍କ ବାମହାତର ପାପୁଲି ଜଣେ କେଶବିନ୍ୟ ତରୁଣଙ୍କର ପ୍ଲାଟଫର୍ମ ସୁତଳେ ଚପି ହୋଇ ରହି ଯାଇଥିଲା । ଉତ୍ତେଜନାର ସେଇ ଚରମ ମୁହୂର୍ତ୍ତରେ ତରୁଣ ଜଣକ ନିମ୍ନକୁ ଥରେ ମାତ୍ର ନ ଅନାଇ ନିକଟବର୍ତ୍ତିନୀ ନର୍ତ୍ତକୀଙ୍କର ଊର୍ଦ୍ଧ୍ୱାଙ୍ଗରେ ତଥାପି ଅକ୍ଷତ ରହିଥିବା ଶେଷ ବେଲୁନ୍‌ଟିକୁ ନିଜର ଅଧରଓଷ୍ଠ ସାହାଯ୍ୟରେ ଦବାଇବା ନିମନ୍ତେ ପ୍ରୟାସ କରୁଥିଲେ । ଛଳନାମୟୀ ବିଦ୍ୟୁତ୍ ଗତିରେ ଦୂରକୁ ଅପସରି ଯାଉଥିବା ବେଳେ ସର୍ବସ୍ୱ ହରାଇବାର ବେଦନା ନେଇ ତରୁଣ ଜଣକ ଭୂମିଲଗ୍ନ ହୋଇପଡ଼ିଲେ ।

ନର୍ତ୍ତକୀଙ୍କ ଦେହର ବିଶେଷ ବିଶେଷ ସ୍ଥାନମାନଙ୍କରେ କେତୋଟି ସୁପକ୍ୱ ରକ୍ତ ବର୍ଣ୍ଣର ଆପେଲ ଝୁଲାଇ ରଖାଯାଇ ଥିବାର ଏଥର ଦେଖା ପଡ଼ୁଥିଲା । ଉଦ୍ଦାମ ବାଜଣାର ତାଳେ ତାଳେ ଅପସ୍ମାରଗ୍ରସ୍ତ ରୋଗୀ ଭଳି ଥରୁଥିବା ନର୍ତ୍ତକୀର ଦେହ ଆପେଲ୍ ଅପସାରଣ ପର୍ବ ହିଁ କେବଳ ବାକି ଥିଲା ।

ଇନ୍‌ସପେକ୍ଟର ବନ୍ଧୁ କହୁଥିଲେ, ଏସବୁ ନାଚରେ ନର୍ତ୍ତକୀକୁ ଆମେ ଅଶୀ ପର୍ସେଣ୍ଟ ପର୍ଯ୍ୟନ୍ତ ସୁବିଧା ଦେବାରେ ଆପତ୍ତି କରୁନାହୁଁ । ଯଦି କେହି ତାକୁ ଅତିକ୍ରମ କରିବାକୁ ଚେଷ୍ଟା କରେ, ତେବେ ଅବଶ୍ୟ ଆଇନ୍ ଅନୁସାରେ···

ନଗର ଉପକଣ୍ଠରେ ଉଦ୍‌ଘାଟିତ ହୋଇଥିବା ଜଣେ ସମାଜସେବୀଙ୍କ ସାକାର ସ୍ୱପ୍ନ ଏହି ମଧୁଶାଳା କିଛିଦିନ ହେଲା ବେଶ୍ ବିଶୃଙ୍ଖଳା ସୃଷ୍ଟି କରିଥିଲା । ବିଶେଷ କରି ଦୁଇ ମାସର କଣ୍ଟ୍ରାକ୍ଟ ନେଇ ମଧ୍ୟଏସିଆ ଦିଗ୍‌ବିଜୟ ସାରି ଏଇ ନୂତନ ଆପେଲ୍ ଗାର୍ଲ ଯେଉଁ ଦିନଠୁଁ ଏଠାରେ ତାଙ୍କର ସୋ ଦେଖାଇବାକୁ ଆରମ୍ଭ କରିଥିଲେ, ସେଇ ଦିନଠାରୁ ସମଗ୍ର ସହର ଯେମିତି ଏକ ନୂତନ ଉତ୍ତେଜନାରେ ଫାଟି ପଡ଼ିଲା ଭଳି ବୋଧ ହେଉଥିଲା । ବୁକିଂ କାଉଣ୍ଟର ପାଖରେ ଯେଉଁ ଅସମ୍ଭବ ଭିଡ଼ ହୋଇଥିଲା, ତାକୁ ଦେଖିଲେ ମନେ ହେଉଥିଲା, ଐତିହାସିକ ଏଇ କ୍ଷୁଦ୍ର ସହରଟି ଲଣ୍ଡନ ନ୍ୟୁୟର୍କରେ ପରିଣତ ହୋଇଯିବା ନିମନ୍ତେ ଆଉ ଖୁବ୍ ବେଶୀ ବିଳମ୍ବ ନାହିଁ ।

ଆନନ୍ଦଲୋଭୀ ଜନତାଙ୍କ ପଛେ ପଛେ ଶ୍ଳୀଳତାର ରକ୍ଷକ ପୋଲିସ କର୍ମଚାରୀଙ୍କୁ ମଧ୍ୟ ସେଠାରେ ଉପସ୍ଥିତ ରହିବାକୁ ପଡ଼ୁଥିଲା । ଇନ୍‌ସପେକ୍ଟର ବନ୍ଧୁଙ୍କ ସହାୟତାରେ ମୁଁ ମଧ୍ୟ ନୂତନ ଅଭିଜ୍ଞତା ସଂଗ୍ରହ କରିବା କାମନାରେ ମଧୁଶାଳାର ରାତିର ଅତିଥି ହୋଇଥିଲି ।

ବାଟ ଚାଲୁ ଚାଲୁ କେତେ ମୁହଁ ଆଖିରେ ପଡ଼େ । ସେମାନେ ବାଟଭଳି ନିଜ ନିଜ ରାସ୍ତାରେ ଚାଲିଯାଆନ୍ତି । ତଥାପି ଅପରିଚିତ ସେଇ ମୁହଁର ଅରଣ୍ୟ ମଧ୍ୟରୁ କେବେ କେମିତି 'ଗୋଟିଏ ମୁହଁର ସ୍ମୃତି ଅଲିଭା ହୋଇ ରହିଯାଏ । ଆପେଲ ଗାର୍ଲ ମିସ୍ ଲୋଲିଟା କ'ଣ

ସେଇଭଳି ଏକ ପରିଚିତ ମୁହଁ !

ସ୍ମୃତିର ମୁଅରେ ଉକାଣି ବାହୁଗଲେ, କେତେ ତିକ୍ତ ଆଉ ମଧୁର ଘଟଣାର ଛବି ମନର ପରଦାରେ ଗୋଟିକ ପରେ ଗୋଟିଏ ଭାସିଯାଏ, ଯେଉଁଗୁଡ଼ିକ ଦୁଃଖ ଆଉ ବେଦନାର ଅଙ୍କି ରୁକ୍ଷ ନିର୍ମମ ପଥ ଅତିକ୍ରମ କଲାଭଳି ସେଗୁଡ଼ିକୁ ଶୀଘ୍ର ପାର ହୋଇଯିବାକୁ ପଡ଼େ । ଆଶା ଆଉ ଆନନ୍ଦ, ରୋମାଞ୍ଚ ଆଉ ଉତ୍ତେଜନା—ଯେଉଁଠି ଦିନେ ସମ୍ପୃକ୍ତ ହୋଇଥିଲି, ତାହାର ପାଖରେ ଆଖି ସ୍ଥିର ହୋଇ ରହେ···

ଆଲୋକ ଅନ୍ଧକାରର ସେଇ ଦିଗନ୍ତଜା ରେଖଣି ଯେଉଁଠି ଦିନେ ଲହଡ଼ି ଖେଳୁଥିଲା, ସେଇଠି ଉଚ୍ଛୁଳି ଉଠିଥିଲା ଗୋଟିଏ ରେଲୱେ ପ୍ଲାଟଫର୍ମର ଦୃଶ୍ୟ, ସେଠି ପୁଣି ଅଭିନୀତ ହେଉଥିଲା ଗୋଟିଏ ବିୟୋଗାନ୍ତକ ନାଟକର ଶେଷ ଦୃଶ୍ୟର ବିଦାୟ ପର୍ବ ।

ଷ୍ଟିମ ଇଞ୍ଜିନର ଗାଢ଼ କଳା ଧୂଆଁ ମେଘ ଆକାରରେ ବୁକୁରେ ବର୍ଣ୍ଣବିଧୂର ଏକ ଅଦ୍ଭୁତ କଣ୍ଟ୍ରାଷ୍ଟ ସୃଷ୍ଟି କରିଥିଲା । ଆସନ୍ନ ଶରତର ସେହି କଳଙ୍କହୀନ ନିର୍ମେଘ ସକାଳ, ଅଜସ୍ର ଯାତ୍ରୀଙ୍କର କର୍ମବ୍ୟସ୍ତତା । ସଦ୍ୟ ନିଦ ଭାଙ୍ଗି ଉଠୁଥିବା ସହର, ନିଃସଙ୍ଗ ଏକ ହଳଦୀ-ବସନ୍ତର କରୁଣ କୂଜନ—ଏହାରି ଭିତରେ ମୁଁ ମୋର ସହପାଠିନୀକୁ ବିଦାୟ ଦେବା ନିମନ୍ତେ ପ୍ରସ୍ତୁତ ହେଉଥିଲି ।

ଝରକା ପାଖ ବେଞ୍ଚରେ ବସି ଶ୍ରେଭୁବ୍ୟମାନା ଲଳିତା କହୁଥିଲା, "ପ୍ରତିକୂଳ ପରିସ୍ଥିତିରେ ଜୀବନର ସ୍ଥିତି ଖୋଜିବାର ଅନ୍ୟନାମ ତ ଯୌବନ । ଆଜି ମୁଁ ତାହାରି ସନ୍ଧାନରେ ଯାତ୍ରା କରୁଛି । ଆଶୀର୍ବାଦ କର, ମୁଁ ଯେମିତି ଏଥିରେ ସଫଳ ହୁଏ ।"

ପ୍ରାୟ ସମବୟସୀ ସହପାଠିନୀକୁ କେମିତି ଆଶୀର୍ବାଦ ଜଣାଇବାକୁ ହୁଏ, ତାହା ମୋତେ ଜଣା ନଥିଲା । ମୁଁ କେବଳ କହୁଥିଲି, "ଜୀବନ ହୁଏତ ଏକ କସ୍ତୁରୀ ମୃଗ । ତାହାର ସନ୍ଧାନରେ ଅଜଣା ଏକ ସବୁଜ ଅରଣ୍ୟ ଆଡ଼େ ଯିବା କ'ଣ ନିତାନ୍ତ ଦରକାର ?"

ଗମ୍ଭୀର ଲଳିତା ନୀରବତା ଭାଙ୍ଗି ପୁଣି କହିଲା, "ଜୀବନ ତ ମାତ୍ର ଗୋଟାଏ । ତାକୁ ବୟସର ଭାରରେ ଜର୍ଜ୍ଜରିତ ପ୍ରାୟ ହୁକ୍କା ଉଠୁଥିବା ଏଇ ସହରର ସଙ୍କୀର୍ଣ୍ଣ ପରିଧି ମଧ୍ୟରେ ନଷ୍ଟ କରି ଦେବାକୁ ମୁଁ ଚାହେଁନା ।"

ଚାହେଁ ନାହିଁ ଯେ, ଏହାର ପରିଚୟ ତ ଲଳିତା ବହୁ ପୂର୍ବରୁ ଦେଇସାରିଛି । ତାହାର ଉଚ୍ଚ ଆକାଂକ୍ଷା, କେବଳ ଏହି ସହର ନୁହେଁ, ସମଗ୍ର ବିଶ୍ୱର ସୀମା ଛଡ଼ାଇ ହୁଏତ ଆକାଶକୁ ଛୁଉଁଥିଲା । ଇଣ୍ଟରମିଡ଼ିଏଟ୍ ପାସ୍ କରିସାରିବା ପରେ ଆମେ ସବୁ ଯେତେବେଳେ ଆଗ୍ରହର କ୍ୟାରିୟରର ସମ୍ପର୍କରେ କୌଣସି ନିଶ୍ଚିତ ସିଦ୍ଧାନ୍ତ ନେଇ ପାରୁନଥିଲୁ, ସେତେବେଳେ ଲଳିତାର ଏଇ ବାହାରକୁ ଯିବାର ଘୋଷଣା ବନ୍ଧୁ ମହଲରେ ଏକ ଆଲୋଡ଼ନ ସୃଷ୍ଟି କରିଥିଲା ।

ଗାଡ଼ି ଗୁଡ଼ବାର ସମସ୍ତ ହୋଇଯାଇଥିଲା । କାଚ୍ ଝରକାର ଫ୍ରେମ୍‌ରେ ବନ୍ଧା ହୋଇଥିବା ଗୋଟିଏ ଲବଣ୍ୟଭରା ମୁଖ ହଠାତ୍ ଯେମିତି ବେଦନାରେ ଆଉ ଦୁଃଖରେ ଭାରାକ୍ରାନ୍ତ ହୋଇପଡ଼ିଥିଲା । ଆଦ୍ୟ ଆଷାଢ଼ର ଏଇ ପ୍ରଥମ ବାରପାତକୁ ତୃଷିତା ପୃଥିବୀ ଭଳି ଶୋଷିନେବା ନିମନ୍ତେ ମୋର ଦେହମନ ଉନ୍ମୁଖ ହୋଇଉଠିଲା । ଲଳିତା କହୁଥିଲା, ହୁଏତ ଆଉ ଦେଖା ହୋଇପାରେ ନପାରେ, ତଥାପି କହୁଚ, ମନେରଖିବ ।"

ମୁଁ କହିଲି, "ତମ ପାଦତଳର ଦୁବ ହୋଇ ରହିବାକୁ ଏ ସହରର ଅଜସ୍ର ତରୁଣ ଏବେ ମଧ୍ୟ ଗୃତକ ଭଳି ଗୁହିଁ ରହିଛନ୍ତି । ମର୍ଯ୍ୟାଦାର ଏଇ ବିପୁଳ ଆୟୋଜନ ତ୍ୟାଗ କରି ତମେ କେଉଁ ସୁନାର ହରିଣ ଧରିବାକୁ ବାହାରିଚ ଲଳିତା ?"

ବିଷଣ୍ଣ ହସ ହସି ଲଳିତା କହୁଥିଲା, "ଭାବପ୍ରବଣ ହୁଅନାହିଁ ଜନ୍ତୁ, ତମେ ଯାହା କହିଲ, ମୋର ଲକ୍ଷ୍ୟ କେବଳ ସେତିକ ନୁହେଁ । ତାକୁ ବାଦ୍ ଦେଇ ଦୁନିଆରେ ଜୀବନର ଅନ୍ୟ କୌଣସି ରୂପ ଅଛି କି ନାହିଁ, ତାହାର ଅନ୍ୱେଷଣରେ ମୁଁ ଯାଉଛି ।"

ଗାଡ଼ି ଦୋହଲି ଉଠିଥିଲା । ଧୂଆଁଳିଆ କାଚଝରକାର ଆରପଟେ ଅଶ୍ରୁ ମୁକ୍ତା ଫୁଲରେ ମାଳା ଗୁନ୍ଥୁଥିବା ଲଳିତାକୁ ଶେଷ ବିଦାୟ ଜଣାଇ, ତା'ର ସେଇ କରୁଣ ବିଷଣ୍ଣ ମୁହଁ ଆଡ଼କୁ ଅନାଇ ମୁଁ ତଥାପି କହିଥିଲି, "ତମେ ଫେରି ଆସିବ ଲଳିତା ।"

ହୁଏତ ସେ ଶୁଣିଥିଲା—ହୁଏତ ଶୁଣି ନଥିଲା ।

ବର୍ଷ ପରେ ବର୍ଷ ବିତି ଯାଇଥିଲା ଆଉ ଲଳିତାର ସ୍ମୃତି ଉପରେ ବିସ୍ମୃତିର ପରସ୍ତ ପରସ୍ତ ଧୂଳି ଜମୁଥିଲା । ଲଳିତା ସହିତ ମୋର ସମ୍ପର୍କରେ ହୁଏତ କୌଣସି ଆନ୍ତରିକତା ନଥିଲା । ଅହରହ ସାନ୍ନିଧ୍ୟ ତାକୁ ଅଳ୍ପ କେତେଦିନ ମଧ୍ୟରେ ଯେଉଁ ଘନିଷ୍ଠତାର ରୂପ ଦେଇଥିଲା, ଅଦର୍ଶନରେ ତାହା କ୍ରମଶଃ ଫିକା ହେବାକୁ ଆରମ୍ଭ କରିଥିଲା । ହୁଏତ ସେ ବୟସର ତାହା ହିଁ ଧର୍ମ । ତା'ପରେ ଗୃହଆଡ଼େ ଅଜସ୍ର ଚମ୍ପା, ଚମେଲି, ରଜନୀଗନ୍ଧାର ଅରଣ୍ୟ ମଧ୍ୟରେ କିଏ ଅବା କେତେଦିନ ଯାଏ ପ୍ରସ୍ତାଧାରର ଗୋଟିଏ ସତେଜ ଅଥଚ ବିଷଣ୍ଣ ଗୋଲାପକୁ ମନେରଖିଲା । ତେଣୁ ରମା, ଅମିତା, ଲୀନା ପ୍ରଭୃତି ବହୁ ବନ୍ଧୁଙ୍କ ଗହଣରେ ଲଳିତା ଆଉ ଅନନ୍ୟା ହୋଇ ରହିଲା ନାହିଁ ।

ଇନସ୍‌ପେକ୍ଟର ବନ୍ଧୁ ମୋ ପାଇଁ ଅସାଧ୍ୟ ସାଧନ କରିଥିଲେ । ଲଳିତା ମୋ ସହିତ ଏକ ସାକ୍ଷାତ୍କାରରେ ଯୋଗ ଦେବା ନିମନ୍ତେ ଅଗତ୍ୟା ରାଜି ହୋଇଥିଲେ । ସାଧାରଣ ଔପଚାରିକତା, ହସପିଟାଲ ଷ୍ଟାଟିଷ୍ଟିକ୍ସ ସମ୍ପର୍କୀୟ ଡାକ୍ତର ସୁନ୍ଦରତ ପ୍ରମାଣ ପତ୍ର, ଦେଶ ବିଦେଶରେ କିଛି ବେମାଞ୍ଚକର ଅଭିଜ୍ଞତା ବର୍ଣ୍ଣନା—ସେସବୁ ବ୍ୟାପାର ସରିଗଲା ପରେ ମୁଁ ହଠାତ୍ ନର୍ତ୍ତିକାଙ୍କୁ ପ୍ରଶ୍ନ କଲି, "ସହସ୍ର ସହସ୍ର ଲୋଲୁପ ଅଉ କାମନାସିକ୍ତ ଚକ୍ଷୁ ସମ୍ମୁଖରେ ଉଜ୍ଜ୍ୱଳ ଆଲୋକ ବୃତ୍ତର କେନ୍ଦ୍ରରେ ନିଜକୁ ଅନାବୃତ କରିବାକୁ ଆପଣଙ୍କୁ ସଙ୍କୋଚ ଲାଗେ ନାହିଁ ?"

ନର୍ତ୍ତକୀ ନୀରବ ରହିଲେ । ହୁଏତ ଏହି ଧରଣର ବ୍ୟକ୍ତିଗତ ପ୍ରଶ୍ନ ତାଙ୍କୁ କେହି କେବେ କରି ନଥିଲେ । ଗୋଟିଏ ମଧ୍ୟବିତ୍ତ ରକ୍ଷଣଶୀଳ ମନ ନେଇ ମୁଁ କଳା ବ୍ୟକ୍ତି ଓ ସମଷ୍ଟିର ପାର୍ଥକ୍ୟକୁ କେତେବେଳେ ଉଠାଇ ଦେଇଥିଲି ।

ନର୍ତ୍ତକୀ ଉତ୍ତର ଦେଲେ, "ଦେଖନ୍ତୁ ଶ୍ଳୀଳତା ଓ ଅଶ୍ଳୀଳତା ଏକ ମାନସିକ ବ୍ୟାପାର । ସୌନ୍ଦର୍ଯ୍ୟ ତ ଦେଖିବାର ଜିନିଷ । ତାକୁ ଅନ୍ୟକୁ ଦେଖାଇବାରେ ଅଶ୍ଳୀଳତା ରହିଲା କେଉଁଠି ?"

ମୁଁ ଗମ୍ଭୀର ସ୍ୱରରେ କହୁଥିଲି—"ସାମାଜିକତା ଦୃଷ୍ଟିରୁ ଏ ସମ୍ପର୍କରେ ଆମକୁ ସବୁଦା ଗୋଟିଏ ସୀମା ମାନିନେବାକୁ ପଡ଼ିବ । ଜାଣନ୍ତି ତ, ସୀମା ଅତିକ୍ରମ କରି ହିଁ ସୀତା ବିପଦରେ ପଡ଼ିଥିଲେ ।"

ଉଦ୍ଦୀପ୍ତା ଅଭିନେତ୍ରୀ ଏଥର କହିଲେ, "ଦେଖନ୍ତୁ ସାମ୍ବାଦିକ, ମୁଁ ବ୍ୟବସାୟୀ । ଦେହ ହେଉଛି ମୋର ଏକମାତ୍ର ପଣ୍ୟ । ନାଚିବାକୁ ଓହ୍ଲାଇ ମୁଣ୍ଡରେ ହାତେ ଲମ୍ବ ଓଢ଼ଣା ଟାଣିବାର କିଛି ମାନେ ହୁଏ ? ଅପରେସନ୍ କରିବାକୁ ପ୍ରସ୍ତୁତ ହୋଇ ଡାକ୍ତର କ'ଣ ଶ୍ଳୀଳତା ଆଉ ଅଶ୍ଳୀଳତା ମଧ୍ୟରେ କୌଣସି ସମନ୍ୱୟ କରିବା କଥା ଚିନ୍ତା କରୁଥାଏ ?"

ମୁଁ କହିଲି, "ସେ ସ୍ୱତନ୍ତ୍ର କଥା ।"

ଲଲିତା ଏଥର କହିଲେ, "ତାହାହିଁ ବୁଝିବା ଭୁଲ୍ । ଆଜିର ସମାଜ ରୂପତୃଷ୍ଣାର ଯେଉଁ ପଗ୍ରୁତା ପୂଣଧର୍ମ କ୍ଷୟରୋଗରେ ଭୋଗୁଛି, ଦେହର ଅଙ୍ଗସୌଷ୍ଠବ ପ୍ରଦର୍ଶନ ସାହାଯ୍ୟରେ ମୁଁ, ସେତକକୁ ହିଁ କାଟି ବାହାର କରିଦେବାକୁ ଉଦ୍ୟମ କରେ । ଏଥିରେ ମୋର ଅପରାଧ କ'ଣ, ମୁଁ ମୋଟେ ବୁଝିପାରୁ ନାହିଁ ।"

ଆତ୍ମଗୋପନର ପର୍ବ ଶେଷ ହୋଇ ଯାଇଥିଲା । ଆପାଦମସ୍ତକ ବସ୍ତ୍ର ସାହାଯ୍ୟରେ ନିଜକୁ ଆବୃତ୍ତ କରିଥିବା ଆଜିର ଏଇ ଭଦ୍ରମହିଳା ଏବଂ ଗତକାଲି ରାତିର ସେଇ ଦ୍ରାସୁ ବିବସ୍ତ୍ରା ଅଭିନେତ୍ରୀ ମଧ୍ୟରେ ମୁଁ ବହୁଦିନ ପୂର୍ବର ରେଲଓ୍ୱେ ପ୍ଲାଟଫର୍ମ ବୁକୁରେ ଧୂମାଭ ଝରକା ଆରପଟେ ଲୁହଧୂଆ ଗୋଟାଏ ଲାବଣ୍ୟଭରା ମୁଖମଣ୍ଡଳର ସନ୍ଧାନ କରୁ କରୁ କହିଲି, "ଅନୁସନ୍ଧାନ ତମର ଶେଷ ହୋଇଛି ଲଲିତା ? ଜୀବନର ଯେଉଁ ବିଶେଷ ରୂପର ସନ୍ଧାନରେ ତମେ ଏଇ ସହର ଛାଡ଼ି ପଳାଇ ଯାଇଥିଲ, ଏଇ ତେବେ ସେଇ ଜୀବନ ?"

ଅଭିନେତ୍ରୀ ସାମାନ୍ୟ ଅସ୍ୱସ୍ତି ବୋଧ କଲେ । ଉଦାସ ଗମ୍ଭୀର କଣ୍ଠରେ କହିଲେ, "କିଏ ଜାଣେ ? ଅନୁସନ୍ଧାନ ତ ଶେଷ ହୋଇନାହିଁ । ଫଳାଫଳ କ'ଣ ଏତେ ଶୀଘ୍ର ଘୋଷଣା କରିପାରିବ ?" କିଛିକ୍ଷଣ ନୀରବ ରହି ଲଲିତା କହିଲେ, "ତମେ କ'ଣ କେବଳ ପୁରୁଣା ପରିଚୟକୁ ଘଷିମାଜି କିଛି କ୍ଷଣ ଜଣେ ଅଭିନେତ୍ରୀର ସାନ୍ନିଧ୍ୟ ଲାଭ କରିବା ନିମନ୍ତେ ଚାଲି ଆସିଲ ଜନ୍ତୁ ?"

ମୁଁ କହିଲି, "ତମେ ତ ମୋତେ ଜାଣ । ମୁଁ କେବଳ ଜାଣିବାକୁ ଚାହେଁ, ତମେ ମୋତେ ଯାହା କହି ଦିନେ ଚାଲି ଯାଇଥିଲ, ଆଜି ସେସବୁ ବିଶ୍ୱାସ କରୁଛ କି ନାହିଁ ?"

ଲଳିତା କହିଲେ, "ବିଶ୍ୱାସ ଅବିଶ୍ୱାସର ପ୍ରଶ୍ନ ତ ନୁହେଁ । ମଣିଷ ଚରିତ୍ର ବିଷୟରେ ତମ ଅପେକ୍ଷା ମୋର ଅଭିଜ୍ଞତା ଢେର ବେଶୀ । ସେଇ ମାପକାଠିରେ ତମକୁ ମାପି ଅନ୍ୟମାନଙ୍କଠୁ ତମର କୌଣସି ପାର୍ଥକ୍ୟ ମୁଁ ଅନୁଭବ କରି ନାହିଁ । କାଲି ମୁଁ ତମକୁ ସେଠି ଦେଖି ଦୁଃଖିତ ହୋଇଛି ।"

ମୁଁ ଅଗତ୍ୟା କହିଲି, "ଦୁଃଖ ତ ମୋର ବେଶୀ ଲଳିତା । ତମକୁ ସେଇ ବେଶରେ ସେଠି ଦେଖି ବାରମ୍ବାର ମୁଁ ନିଜକୁ ଅଭିଶାପ ଦେଇଛି । ହୁଏତ ସେଦିନ ତମକୁ ଜୋର୍ କରିଥିଲେ, ତମେ ଏହି ସର୍ବନାଶର ପଥରେ ଯାଇନଥାନ୍ତ ।"

ଲଳିତା କହିଲେ, "ସେ ତମର ବୁଝିବା ଭୁଲ୍ । ଅଭିଜ୍ଞତା ଆହରଣର ଯେଉଁ ନିଶା ସେତେବେଳେ ମୋତେ ଗ୍ରାସିଥିଲା, ସେଥିରୁ ବ୍ରହ୍ମା ମଧ୍ୟ ମୋତେ ନିବର୍ତ୍ତାଇ ପାରିନଥାନ୍ତେ । ମଶାଣିରେ ଗୋଟିଏ ପାଦ ରଖିଥିବା ସେଇ ବୃଦ୍ଧ ଗତକାଲି ମୋର କି ଅବସ୍ଥା କରିଛନ୍ତି ତମେ ଜାଣିଛ ?"

ଲଳିତା ବ୍ୟଙ୍ଗ ହସ ହସିଲେ । ତାଙ୍କର ସେଇ ତେଢ଼ରଚ୍ଛା ଚାହାଣୀ, ମ୍ଳାନ ସ୍ମିତରେଖାରୁ ଅନେକ ଅକୁହା କାହାଣୀ ଫୁଟି ବାହାରୁଥିଲା ।

ଅଗତ୍ୟା ମୋତେ କହିବାକୁ ହେଲା, "କିନ୍ତୁ ଏ ଜୀବନ ତ ତମେ ଆପେ ବରଣ କରି ନେଇଛ । ବର୍ତ୍ତମାନ ଏ ବିଷୟରେ ଆକ୍ଷେପ କରି ଲାଭ କ'ଣ ?"

ଲଳିତା ନୀରବ ଥିଲେ । ତାଙ୍କର ଭସାଭସା ଆଖି ହୁଏତ ସୁଦୂର ଅତୀତର ସେଇ ବିଷଣ୍ଣ ସକାଳ ମଧ୍ୟରୁ କୌଣସି ଅମୂଲ୍ୟ ମଣିମୁକ୍ତା ସାଉଁଟି ଆଣିବାରେ ବ୍ୟସ୍ତ ଥିଲା । ନୀରବତା ମଧ୍ୟରେ ସେ ହୁଏତ ଅନୁଯୋଗ ଜଣାଉଥିଲେ ନିଜର ଭାଗ୍ୟକୁ ।

ଶ୍ମଶାନର ଏଇ ପ୍ରଶାନ୍ତି ବଡ଼ ଅସହ୍ୟ ମନେ ହେଉଥିଲା । ମୋର ଅସ୍ଥିରତା ଲକ୍ଷ୍ୟ କରି ଲଳିତା କହିଲେ, "ମଦ୍ୟପ ସ୍ୱାମୀ ଆଉ ହିଟ୍‌ଲର ଶାଶୁ ଯେତେବେଳେ ମୋ ଜୀବନର ସରସତା ଢାଳ ଢାଳ କରି ଚୁସୁକ୍ତି ନେଇ ସଂସାରରେ ଅପଙ୍କ୍ତେୟର ହାଟ ବସାଇ ଦେଉଥିଲେ, ସେତେବେଳେ ତମେ କେଉଁଠି ଥିଲ ? ତମେ କ'ଣ କହିବାକୁ ଚାହଁ, ଶଗଡ଼ ଗୁଳାରେ ଚାଲିବାରେ ମୋର ଆପତ୍ତି ଥିଲା ?"

ମୁଁ ବିସ୍ମିତ ହେଲି । ଏଇ ଅଟ୍ଟାଳିକୋଜ୍ଜ୍ୱଳ ପରିବେଶକୁ ଆଦରି ନେବା ପୂର୍ବରୁ ଲଳିତା ଯେ ତୁଳସୀ ଚଉରା ଆଉ ସନ୍ଧ୍ୟାଦୀପର ଅଭିଜ୍ଞତା ସଂଗ୍ରହ କରି ନେଇଛନ୍ତି, ଏ ସମ୍ବାଦ ମୋ ପାଇଁ ନୂତନ ଥିଲା ।

ମୋର ଚିନ୍ତାଧାରା ମୁହୂର୍ତ୍ତକରେ ବୁଝି ନେଇ ବୁଦ୍ଧିମତୀ ଅଭିନେତ୍ରୀ କହିଲେ, "କ'ଣ ଆଉ କରାଯିବ କୁହ । ହୁଏତ ସବୁ ଜୀବନ ସମସ୍ତଙ୍କ ପାଇଁ ନୁହେଁ ।"

ଲଳିତାଙ୍କର ଏଇ ଦାର୍ଶନିକ ନିର୍ଲିପ୍ତତା ମୋତେ ଭଲ ଲାଗି ନଥିଲା । ମୁଁ କହିଲି, ମୁଣ୍ଡ ନୁଆଁଇ ବସିପଡ଼ିଲେ ସଂସାରର ଅନେକ ସମସ୍ୟା ଆପେ ଆପେ ଦୂର ହୋଇଯାଏ, ଏଇ ସାଧାରଣ ସତ୍ୟଟି ଯଦି ତମ ମନରେ ଧରା ନପଡ଼ିଲା, ତେବେ ତମେ ମିଛରେ ଏତେ ପାଠ ପଢ଼ିଥିଲ ।"

ମୋର କଣ୍ଠର ଉତ୍ତେଜନା ହୁଏତ ଛପି ରହିଲା ନାହିଁ । ଲଳିତା ତେଣୁ କହିଲେ, "ନାରୀର ନିରୁପାୟତା ତମେ କ'ଣ ବୁଝ ? ନହେଲେ ନାଟକ ସତ୍ତା ବନ୍ଧ୍ୟା ଅପେକ୍ଷା ସଂସାରର ରୂଢ଼ ନିର୍ମମତା ଆହୁରି ମର୍ମନ୍ତୁଦ ।"

ଲଳିତା ନିଜ ସମ୍ପର୍କରେ କିଛି କହୁ ନଥିଲେ, ଅଥଚ ମୋର ଇଚ୍ଛା ଥିଲା ଅଭ୍ୟୁଦୟ ଆଉ ପତନର ନିଜସ୍ୱ ପଥଟିକୁ ଉଙ୍କିମାରି ଦେଖିବାକୁ । ମନରେ ଜଳି ଉଠୁଥିବା ଆଗ୍ରହର ନିଆଁରେ ନିର୍ଲିପ୍ତତାର ଜଳ ଢାଳି ଦେଇ ଲଳିତା କହିଲେ, "କହିବା ଭଳି ନୂତନ ତ କିଛି ନାହିଁ । ଜେନେରେସନ୍ ଗ୍ୟାପ୍‌ର ଯେଉଁ ନୂତନ ସମସ୍ୟା ଷାଠିଏ ଭାଗ ପରିବାରକୁ ଧ୍ୱଂସ ଆଡ଼କୁ ଠେଲି ନେଉଛି, ମୋର କାହାଣୀ ମଧ୍ୟ ସେଇଭଳି । ସେମାନେ ଯାହା ଚାହିଁଥିଲେ, ମୁଁ କାହିଁକି ମଥାରେ ରକ୍ତ ପତାକା ଉଡ଼ାଇ ଜୀବନ ଧରି କୌଣସି ନାରୀ ତାହା କରିପାରନ୍ତା ନାହିଁ । ତେଣୁ ସେମାନେ ଯେମିତି ଭାବିଥିଲେ, ମୁଁ ତାହାହିଁ କଲି । ତା' ପୂର୍ବରୁ ସିନ୍ଦୁର ଗାରଟିକୁ ପୋଛି ଲିଭାଇ ଦେବାକୁ ପଡ଼ିଲା ମାତ୍ର ।"

ଗୋଟିଏ ମାତ୍ର ଜୀବନରେ ଲଳିତା ଯାହା କରି ଦେଖାଇଥିଲେ, ମୋ ପାଇଁ ତାହା ପ୍ରକୃତରେ ଅଭିନବ ଥିଲା । ଲଳିତା ଉଚ୍ଚାଭିଳାଷିଣୀ, ଏକଥା ମୁଁ ସେଇ ଛାତ୍ରାବସ୍ଥାରୁ ଜାଣେ । ସୁନାର ହରିଣ ପଛରେ ଧାଇଁ ଧାଇଁ ଜୀବନକୁ ହୁଏତ ମାଗୁଥିଲେ ଟିକିଏ ସୁଖ । ସେଇଠୁ ସିଧା ସଳଖ ସେ ଯେ ଏତେ ତଳକୁ ଓହ୍ଲାଇ ଯିବେ, ଏହା ମୁଁ ଆଦୌ ଚିନ୍ତା କରିପାରୁ ନଥିଲି ।

ଲଳିତା କହିଲେ, "ଶୁଖିଲା କ୍ଷତରୁ ଟାଣି ଓଟାରି ନୂତନ ରକ୍ତ ବୁହାଇବାରେ କୌଣସି ପୌରୁଷ ନଥାଏ ଜାଣ୍ଡ । ସାଧାରଣ ଦୃଷ୍ଟିରେ ମୁଁ ପତିତା—ତେଣୁ ତମ ପାଇଁ ଭଦ୍ରତା ଟିକକ ବି ରକ୍ଷା କରିପାରିଲି ନାହିଁ । ମୋତେ କ୍ଷମା ଦେବ ।"

ଲଳିତା କ'ଣ କହିବାକୁ ଚାହାଁନ୍ତି, ତା' ମୁଁ ବୁଝି ପାରିଲି । ତେବେ କୌଣସି ସାନ୍ତ୍ୱନା ବାକ୍ୟ କହିବା ପୂର୍ବରୁ ଲଳିତା ପୁଣି କହିଥିଲେ, "ତମେ ଯାହା କହିବ ମୁଁ ଜାଣେ । ଠିକ୍ ଅଛି, ମୋର ନିରୁପାୟତା ନିମନ୍ତେ କ୍ଷମା ମାଗି ନେଉଛି ।"

ମଧୁଶାଳାର ବିଳାସ କକ୍ଷରେ ଫ୍ଲଡ୍ ଲାଇଟ୍‌ର ଉଜ୍ଜ୍ୱଳ ଆଲୋକରେ ମୁଁ ଗତକାଲି ସନ୍ଧ୍ୟାରେ ଏସିଆ ମହାଦେଶରେ ନବାବିଷ୍କୃତ ଯେଉଁ ସେକ୍ସବମ୍ବକୁ ଦେଖିଥିଲି, ମୋ ସମ୍ମୁଖରେ

ଶୁଭ୍ର ବେଶରେ ସଜ୍ଜିତା ଆଜିର ଏଇ ଗ୍ରାମର ସ୍ୱାମୀ ଲଳିତା ସହିତ ତାର କୌଣସି ସମ୍ପର୍କ ନଥିଲା । ଗତକାଲିର ସେଇ ଆଦିମ ପ୍ରବୃତ୍ତିର ନିର୍ଲଜ ହଟ୍ଟଗୋଳ ମଧ୍ୟରେ ଭାସିବୁଲୁଥିବା ଅର୍ଦ୍ଧଉଲଗ୍ନା ନର୍ତ୍ତକୀ, ଆଉ ଆଜିର ଏଇ ଧୂପ ଦୀପ ସୁରଭିତ ଶୁଚିସ୍ନିଗ୍ଧ ପରିବେଶର ଗୃହସ୍ଥ ବଧୂତୁଲ୍ୟା ଲଳିତା ମଧ୍ୟରେ କୌଣସି ସାମଞ୍ଜସ୍ୟ ଖୋଜିବା ଏକ କଷ୍ଟ କଳ୍ପନା ବ୍ୟତୀତ ଅନ୍ୟ କିଛି ନଥିଲା ।

ତେବେ···

ଲଳିତା କହିଲେ, "ତମର ହୁଏତ ବିଳମ୍ବ ହେଉଛି କିନ୍ତୁ । ମୋର ମଧ୍ୟ ଟିକେ ବାହାରକୁ ଯିବାକୁ ଅଛି । ଫେରି ଆସି ପୁଣି ଦେହ ପାଇଁ କିଛି ସମୟ ଦେବାକୁ ପଡ଼ିବ । ଆମ ଭଳି ପତିତାମାନଙ୍କର ସେତିକି ତ ପୁଞ୍ଜି, ନା' କ'ଣ କହୁଚ ?"

ମୁଁ ଆହତ ହେଲି । ଯିବା ନିମନ୍ତେ ବାହାରକୁ ପାଦ ବଢ଼ାଇବା ପୂର୍ବରୁ ଲଳିତା ମୋ କାନ୍ଧରେ ଗୋଟିଏ ହାତ ରଖି କହିଲେ, "କୁଆଡ଼େ ଯିବ କିଛି ତ ପଗ୍ଚାରିଲ ନାହିଁ ?"

କହିଲି, "ପ୍ରୟୋଜନ ବୁଝିଲେ ତମେ ନିଜେ କହିବ ବୋଲି ।"

ଖିଲ୍ ଖିଲ୍ ହସି ଲଳିତା କହିଲେ, "ମାନ ଅଭିମାନର କୌଣସି ମୂଲ୍ୟ ଦେବା ମୋ ପକ୍ଷରେ ଆଉ ସମ୍ଭବ ନୁହେଁ । ମିଷ୍ଟର ପଟ୍ଟନାୟକ ମୋତେ ଅପେକ୍ଷା କରିଥିବେ ।"

ଆଶ୍ଚର୍ଯ୍ୟ ହୋଇ କହିଲି, "ମିଷ୍ଟର ପଟ୍ଟନାୟକ ?"

ଲଳିତା କହିଲେ, "ସେ ମୋ ପୂର୍ବ ଜୀବନର ସ୍ୱାମୀ । ମୋ ଯୋଗେ ସିନା ତାଙ୍କର ଆଭିଜାତ୍ୟରେ କାଳି ଲାଗୁଥିଲା । ଅର୍ଥର ତ କୌଣସି କୌଳିନ୍ୟ ନଥାଏ ।"

ଏ ସବୁ ମୋତେ ପ୍ରହେଳିକା ପରି ବୋଧ ହେଉଥିଲା । ଲଳିତା ନିର୍ଲିପ୍ତ କଣ୍ଠରେ କହିଲେ, "ବୁଝି ପାରୁ ନାହିଁ ପରା । ଦିନେ ନାଁ ଥିଲା ତାଲ ପୋଖରୀ, ଏବେ ଆଉ ଗଡ଼ୁଟିଏ ବି ବୁଡ଼ୁନାହିଁ । ଅର୍ଥ ଆଉ ସାମର୍ଥ୍ୟ ସବୁ ଯେତେବେଳେ ଭସାମେଘ ପରି ଉଡ଼ିଗଲା, ସେତେବେଳେ ଏଇ ଅଭାଗିନୀ ନାରୀ ବ୍ୟତୀତ ଆଉ କିଏ ଭରସା ଅଛି କହ । ଯେତେହେଲେ ହିନ୍ଦୁ ନାରୀ ତ ।"

ଲଳିତା ଏକ ନୂତନ ରୂପରେ ମୋ ଆଗରେ ଠିଆ ହୋଇଥିଲେ । ମୁଁ ତାଙ୍କ ମଧ୍ୟରେ ଲକ୍ଷହୀରାର ସେଇ ପାରମ୍ପରିକ ସ୍ୱବଗମ୍ଭୀର ମୂର୍ତ୍ତିଟିର ଦର୍ଶନ କରୁଥିଲି ।

ଲଳିତା ପୁଣି କହିଲେ, "ମୋ ଲାଗି ଦୁଃଖ କରନାହିଁ । ଆଉ ସତ କହିବାକୁ ଗଲେ, ମୋର ଯେ ଏତେ ଅର୍ଥ, ଏ ସବୁ ମୋର ହେବ କ'ଣ ? ଦି' ଓଳି ଦି' ମୁଠା ଅରୁଆ ଭାତର କଥା ତ ! ପାପଧନ ପ୍ରାୟଶ୍ଚିତ୍ତରେ ଲାଗିଯାଉ ।"

ମୁଁ ପ୍ରତିବାଦ ଜଣାଇ କହିଲି, "କିନ୍ତୁ ସେ ତ ସ୍ୱାମୀର କର୍ତ୍ତବ୍ୟ ପାଳନ କରିନାହାନ୍ତି ।"

ଲଳିତା କହିଲେ, "ଅସହାୟତା ନିକଟରେ ଦାୟିତ୍ୱର ପ୍ରଶ୍ନ ଉଠେ ନାହିଁ । ପସ୍ତୁ ଲଭର୍ ନେଇ ଧନ ଗଣୁଥିବା ଗୋଟାଏ ଲୋକ ପାଇଁ ଏ ସବୁର ହିସାବ ତ ଆନ୍ତର ନିଷ୍ଠୁରତା ।"

ମୁଁ ପ୍ରଶ୍ନ କଲି, "ତମେ ତେବେ ତାଙ୍କୁ କ୍ଷମା କରିଛ ?"

ଛଳ ଛଳ ଆଖିରେ ଲଳିତା କହିଲେ, "ସେ ସୁଯୋଗ ପାଇବି, ଏତେ ସୌଭାଗ୍ୟ ମୋର ଅଛି ? ଆତ୍ମୀୟତାର ଯେଉଁ ସ୍ରୋତ ଦୁଇଟା କୂଳକୁ ଯୋଗ କରିଥାଏ, ଅବିଶ୍ୱାସର ମରୁବାଲିରେ ସେ ତ କେବେଠୁଁ ପଥ ହଜାଇ ସାରିଲାଣି । ସେ କ'ଣ ଖୋଜିଲେ ମିଳେ ?"

ଲଳିତା ନୀରବ ହୋଇଗଲେ । ମୁଁ ବିସ୍ମିତ ଦୃଷ୍ଟିରେ ମୋ ହାତ ପାହାନ୍ତାରୁ ବହୁ ଊର୍ଦ୍ଧ୍ୱକୁ ଉଠି ଯାଇଥିବା ଏଇ ନୂତନ ଲକ୍ଷ୍ମୀଶ୍ରୀଙ୍କୁ ମନେ ମନେ ପ୍ରଣତି ଜଣାଇ ବିଦାୟ ନେବା ନିମନ୍ତେ ପ୍ରସ୍ତୁତ ହୋଇଗଲି ।

ଲଳିତା ମୋତେ ବିଦାୟ ଦେବା ନିମନ୍ତେ ଦ୍ୱାର ପର୍ଯ୍ୟନ୍ତ ଆସିଲେ । ମୁଁ କିଛି କହିବା ପୂର୍ବରୁ ତଳକୁ ଅନାଇ କହିଲେ ଶୁଣ ଜିତୁ ! ତମେ ମୋତେ ଶ୍ଳୀଳତା ଅଶ୍ଳୀଳତା ସମ୍ପର୍କରେ ଗୋଟିଏ ପ୍ରଶ୍ନ ପଚାରିଥିଲ । ତମେ ମୋର ବାଲ୍ୟବନ୍ଧୁ । ଏ ପ୍ରଶ୍ନ ପଚାରିବାର ଅଧିକାର ତମର ଅବଶ୍ୟ ଅଛି । ଦେଖ, ଏହା ପୂର୍ବରୁ ମୁଁ ତମକୁ ଯାହା କହିଥିଲି, ହୁଏତ ସେସବୁ ସତ୍ୟ ନୁହେଁ । ରାତିସାରା ହଜାର ହଜାର କାମୁକ ଦୃଷ୍ଟି ସାମ୍ନାରେ ଦେହରୁ ସୂତା ଖିଅକ କାଢ଼ି ଫିଙ୍ଗି ଦେବାରେ ମୋର କୌଣସି ବିକାର ଆସେ ନାହିଁ । ମାତ୍ର ଯେତେବେଳେ ମୁଁ ଏକାକୀ ଥାଏ, ସେତେବେଳେ ଦେହରୁ ମୁଣ୍ଡରୁ ସାମାନ୍ୟ ଟିକିଏ ଲୁଗା ଖସିଗଲେ, ମତେ ଭାରି ଅସ୍ୱସ୍ତି ଲାଗେ, ମୁଁ ରହିପାରେ ନାହିଁ ।" ଏତିକି କହି ଲଜ୍ଜାବତୀ ଅଭିନେତ୍ରୀ ମୋତେ କୌଣସି ସମ୍ଭାଷଣ ନଜଣାଇ ଭିତରକୁ ଚାଲିଗଲେ ।

ମୁଁ ସ୍ଥାଣୁ ଭଳି ଠିଆ ହୋଇଥିଲି ।



# କଣ୍ଟାଗଛ, ଅମାବାସ୍ୟା ଓ ଜହ୍ନରାତର କାହାଣୀ

ଏ ଗଳ୍ପ ମୋର ନୁହେଁ—ହିମାଂଶୁର । ବୈଶାଖର ଏକ ରକ୍ତରଙ୍ଗା ସାୟାହ୍ନରେ ବଗିଚା ବେଳାରେ ବସି ଏଣୁ ତେଣୁ ନାନା କଥା ଭିତରେ ହିମାଂଶୁ ମୋତେ ରଞ୍ଜନ ଏବଂ ବନାନୀଙ୍କ କାହାଣୀଟି କହିଥିଲା, ରଞ୍ଜନ ତା'ର କେମିତି ଦୂର ସମ୍ପର୍କର ଆତ୍ମୀୟ ଥିଲେ ; ଉଭୟ ରଞ୍ଜନ ଆଉ ବନାନୀଙ୍କର କୁଣ୍ଠିତ ପାରିବାରିକ ସମ୍ପର୍କ ସଦ୍ୟ ତରୁଣ ହିମାଂଶୁର ଭାବ-ପ୍ରବଣ ମନରେ ଗଭୀର ଆଲୋଡ଼ନ ସୃଷ୍ଟି କରିଥିଲା ।

ହିମାଂଶୁ କହୁଥିଲା, ସାର୍, ଏ ଦେଶରେ ଅଭାବବୋଧ କହିଲେ ଆମେ ସାଧାରଣତଃ ଦାରିଦ୍ର୍ୟକୁ ବୁଝିଥାଉଁ । ସାଂସାରିକ ଅର୍ଥରେ ସବୁଥାଇ ମଧ୍ୟ ଲୋକେ ରିକ୍ତତାର ହାହାକାରରେ ଦୁନିଆ ଭରି ଦିଅନ୍ତି କାହିଁକି ?

ମୁଁ ତାକୁ ବୁଝାଇ କହିଥିଲି, ଅଭାବର ଅନେକ ରୂପ ହିମାଂଶୁ । କିଏ ଧନର କାଙ୍ଗାଳ ତ କିଏ ମନର । ଧନର କାମନା ହୁଏତ ଦାର୍ଶନିକତାର ଆବରଣରେ କିଛିଟା ଢାଙ୍କି ହୋଇ ଯାଇପାରେ, ମାତ୍ର ମନର ଶୂନ୍ୟତା କେବେ ପୂରଣ ହୋଇ ପାରେ ନାହିଁ । ତାକୁ ଏଡ଼ାଇ-ବାକୁ ମଣିଷ ଭୁଲ୍ ପରେ ଭୁଲ୍ କରେ । ଶିଶୁ-ସୁଲଭ ଚପଳତାରେ ଜୀବନ ପରିଧି ମଧ୍ୟରେ ଘୂରିବୁଲେ—ମନର ଦାରିଦ୍ର୍ୟ ଢ଼ାଙ୍କିଦେବାକୁ ସେ କାର୍ କିଣେ—ଫ୍ରିଜ, ଷ୍ଟିରିଓ, ଫୋନ୍‌ରେ ଘର ସଜାଏ—ଗୁଡ଼ ଫୁଲାଇ ଦଶ ଜଣଙ୍କ ପାଖରେ ଠିଆ ହୁଏ—ପ୍ରମାଣ କରିବାକୁ ଚାହେଁ, ତା'ର ସବୁ ଅଛି, ସେ ଭାରି ସୁଖୀ । ପରିଣାମରେ ସେ କିନ୍ତୁ ନିଜର ଲକ୍ଷ୍ୟ ବସ୍ତୁଠାରୁ ଦୂରରୁ ଦୂରକୁ ଚାଲିଯାଏ । ଆତ୍ମ ପ୍ରବଞ୍ଚନା ବଡ଼ ପୀଡ଼ାଦାୟକ ହିମାଂଶୁ—ତାକୁ ବୁଝିହୁଏ, ବୁଝାଇ ହୁଏନାହିଁ । ହିମାଂଶୁ କହିଥିଲା, "ଦୁଇଟା ମନର ଶୂନ୍ୟତାକୁ ଭରିଦେବା ନିମନ୍ତେ କ'ଣ କିଛି ଉପାୟ ନାହିଁ ସାର୍ ?"

ମୁଁ କହିଥିଲି, ଅସୁବିଧା କ'ଣ ଜାଣ ହିମାଂଶୁ ? ଦୁଇ ବ୍ୟକ୍ତିତ୍ୱ ଭିତରେ ଯେଉଁ ଦୁଇଟି ସ୍ୱତନ୍ତ୍ର ଅହଂ ଥାଏ, ତାକୁ ନମନୀୟ କରିବାକୁ ହେଲେ ପ୍ରୟୋଜନ ସମବେଦନାର । ସହାନୁଭୂତି ଏକ ଚମତ୍କାର ସିଡ଼ି ହିମାଂଶୁ । ଏକାବେଳକେ ଠିକ୍ ଜାଗାରେ ନେଇ ପହଞ୍ଚାଇ ଦିଏ ।

ଚକିତ ଭାବରେ ହିମାଂଶୁ କହିଥିଲା, "ଆପଣ ହୁଏତ ଠିକ୍ କଥା କହୁଛନ୍ତି ସାର୍ । ଏଇ ବୁଝାମଣାର ଅଭାବରେ ଆଜି ରଞ୍ଜୁ ଭାଇ ଆଉ ବନିଅପାଙ୍କର ସଂସାର ଛାରଖାର ହେବାକୁ ବସିଛି ।

ସେତେବେଳକୁ ରଞ୍ଜନ ପଟ୍ଟନାୟକଙ୍କ ସହିତ ମୋର ପରିଚୟ ନଥିଲା । କାହାଣୀର କିଛି ଅଂଶ ମାତ୍ର ମୁଁ ହିମାଂଶୁଠୁ ଶୁଣିଥିଲି । କିଛିଟା ପରେ ରଞ୍ଜନଙ୍କର ଜୀବନନାଟ୍ୟର ଅନ୍ୟ ଦୁଇ ଚରିତ୍ର ପାତ୍ର-ପାତ୍ରୀଙ୍କଠାରୁ । କାହାଣୀଟି ପୂର୍ଣ୍ଣାଙ୍ଗ ରୂପ ନେଲାବେଳକୁ ହିମାଂଶୁ କାହିଁ କୁଆଡ଼େ ଲୁଚିଗଲାଣି । ସେ ଏବେ କେଉଁଠି ଅଛି, ବଳଙ୍ଗ ବେଳାର ଉଦ୍‌ବେଳ ମନ ତା'ର ଏବେବି ରହିଛି କି ନା ତା' ମୁଁ ଜାଣେ ନାହିଁ । ତଥାପି ମୁଁ ଆଖିବୁଜିବା ମାତ୍ରେ ତା'ର ସେଇ ଛଳଛଳ ଚାହାଣୀ, ଆନ୍ତରିକ ବ୍ୟାକୁଳତା ଏବେ ମଧ୍ୟ ଦେଖିବାକୁ ପାଏ, ଆଉ ମନେ ମନେ ତାକୁ କୁହେ, ହିମାଂଶୁ, ଭୁଲ ଏକ ଅଚଳାୟତନ ନୁହେଁ, ଏକ ସାମୟିକ ବିଭ୍ରମ । ଚେଷ୍ଟା କଲେ ମଣିଷ ଏଥିରୁ ବାହାରି ଆସିପାରେ । ରଞ୍ଜନଙ୍କର ଜୀବନ ତ ବ୍ୟର୍ଥ ହୋଇଯାଇ ନାହିଁ । ଶୂନ୍ୟତା ମଧ୍ୟରୁ ପୂର୍ଣ୍ଣତା ଖୋଜି ଆଣିବାରେ ସେ ତ ବିଫଳ ହୋଇ ନାହାନ୍ତି । ସେ ଆଜି ଏକ ସଫଳ ପାରିବାରିକ ଜୀବନର ନାୟକ ।

ତେବେ ଏଥର ତାଙ୍କର କଥା କୁହେ ।

ସେଦିନ ବୁଲି ଯିବାକୁ ପ୍ରସ୍ତୁତ ହୋଇ ପାଇପ୍ ଲଗାଇବା ନିମନ୍ତେ ରଞ୍ଜନ ଯେତେବେଳେ ଦିଆସିଲି ଖୋଜୁଥିଲେ, ସେତିକିବେଳେ ବନାନୀ ଆସି ତାଙ୍କ ପାଖରେ ଠିଆ ହେଲେ ।

ରଞ୍ଜନଙ୍କର ନେତ୍ର ଆପେ ଆପେ କୁଞ୍ଚିତ ହୋଇଗଲା । ବିବାହର ମାତ୍ର ଅଳ୍ପ କେତେ ଦିନ ପରେ ରଞ୍ଜନଙ୍କ ପ୍ରତି ବନାନୀଙ୍କର ସମସ୍ତ ମୋହ ଭାଙ୍ଗି ଯାଇଥିଲା । ଯେଉଁ ସୀମାହୀନ ସ୍ୱପ୍ନର ନୀଳିମା ଆଉ ରଙ୍ଗୀନ କଳ୍ପନାକୁ ସାଙ୍ଗରେ ଧରି ବନାନୀ ମୁକ୍ତ ଆକାଶର ମାୟା ତ୍ୟାଗକରି ରଞ୍ଜନଙ୍କର ସୁନାପଞ୍ଜୁରି ମଧ୍ୟକୁ ପଶି ଆସିଥିଲେ, କିଛିଟା ଉତ୍ତେଜନା କଟିଯିବା ପରେ ସେ ଅନୁଭବ କଲେ ଯେ, ସେ ଅତି ଦୟନୀୟ ଭାବରେ ଠକି ଯାଇଛନ୍ତି । ଅନୁଶାସନ ହେଉଛି ଏଠି ଜୀବନର ମାପକାଠି । ନବ ତାରୁଣ୍ୟର ସ୍ୱପ୍ନ ନୀଳିମା ମଧ୍ୟରେ କିଏ କେବେ ନୀତି ନିୟମର ଗୁରୁତ୍ୱକୁ ସ୍ୱୀକାର କରିଥାଏ ? ଯୌବନ ଆଉ ବୁଢ଼ାମଣା—ଇଏ ତ ଦୁଇଟି ସମାନ୍ତରାଳ ରେଖା—ରଞ୍ଜନ, ରଞ୍ଜନ—ତମେ କ'ଣ ମୋର ଆଦର୍ଶ ଜାଣି ନଥିଲ ? ସବୁ ଜାଣି ତମେ ମୋତେ ଏମିତି ଲୋଭାଇ ଦେଲ କାହିଁକି ?

ଆଉ ରଞ୍ଜନ ?

ତାଙ୍କର ମଧ୍ୟ ତ ଅନେକ କଳ୍ପନା ଥିଲା । ମୋଟା ଦରମାର ଚାକିରି—ବଶମ୍ବଦ ସୁନ୍ଦରୀ ସ୍ତ୍ରୀ, ସାମାଜିକ ପ୍ରତିପତ୍ତି, ଗାଡ଼ି, ଘର, ଫୋନ୍, ଫ୍ରିଜ ଭିତର ଦେଇ ଏକ ଅତି ଲୋଭନୀୟ ଜୀବନକୁ ଯେତେବେଳେ ସେ ରୁଟିନ୍ ମଧ୍ୟରେ ବାନ୍ଧି ଆଣୁଥିଲେ, ସେତେବେଳେ ସେ ଅନୁଭବ କଲେ ଯେ, ସେ ବ୍ୟର୍ଥ ହୋଇ ଯାଉଛନ୍ତି । ଯେଉଁ ଜୀବନକୁ ଧରିବା ପାଇଁ ସେ ଫାଶ ବସାଇ ଥିଲେ, ସେଇଟି ତାଙ୍କ ପାଖରୁ ଦୂରକୁ ଦୂରକୁ ପଳାଇବାରେ ଲାଗିଛି ।

ଧରାବନ୍ଧା ରୁଟିନ୍ ଭିତରେ କଏ କେବେ ଜୀବନକୁ ବାନ୍ଧି ରଖିପାରିଛି ? ଜୀବନର କ୍ଲାନ୍ତିଦାୟକ ପଥ ତେବେ ତାଙ୍କୁ ଏକାକୀ ଅତିକ୍ରମ କରିବାକୁ ପଡ଼ିବ ?

ଯେଉଁ ଆତ୍ମୀୟତାର ପ୍ରୟୋଜନ ସେ ବନାନୀଙ୍କ ଠାରୁ କରୁଥିଲେ, ବନାନୀ ତାକୁ ମଧ୍ୟ-ଶ୍ରେଣୀୟ ଭାବପ୍ରବଣତା କହି ହସରେ ଉଡ଼ାଇ ଦେଇଛନ୍ତି । ରୁଗ୍ଣ ମାନସିକତା ପରେ ବନାନୀଙ୍କର ଆନ୍ତରିକ ସ୍ପର୍ଶ ନିମନ୍ତେ ଉନ୍ମୁଖ ହୋଇଥିବା ବେଳେ ତାଙ୍କର ଅବହେଳାର ଖର ଦୀପ୍ତିରେ ତାହା ବାଷ୍ପ ହୋଇ ଉଡ଼ିଯାଇଛି । ଦୁଃଖରେ ଭାଗ ନେବାକୁ ଅନେକ ତ ଆଗେଇ ଆସିଛନ୍ତି । ମାତ୍ର ଯାହାର ଉପସ୍ଥିତିରେ ବେଦନା ଆନନ୍ଦର ରୂପ ନେଇଥାଆନ୍ତା, ସେ ଆସି ନାହାନ୍ତି । କାହିଁକି ଏମିତି ହେଲା ? କାହିଁକି ବନାନୀ ତାଙ୍କର ଜୀବନକୁ ବ୍ୟର୍ଥ କରିଦେଲେ ? ଓଃ ବନାନୀ···ବନୁ···

ନିରୁତ୍ତାପ, ଭାବଲେଶହୀନ କଣ୍ଠରେ ବନାନୀ କହିଲେ, "ଆଜି ମୋର ଜନ୍ମଦିନ ।"

ରଞ୍ଜନ ଆଶ୍ଚର୍ଯ୍ୟ ହେଲେ । ଏ ସମ୍ବାଦ ଅବଶ୍ୟ ତାଙ୍କର ପୂର୍ବରୁ ସଂଗ୍ରହ କରିବାର କଥା । ମାତ୍ର ବନାନୀ ତାଙ୍କୁ ସେ ସୁଯୋଗ ଦେଲେ କେଉଁଠି ? ରଞ୍ଜନ କହିଲେ, ସରି, ମୋର ମନେ ନଥିଲା । ଠିକ୍ ଅଛି । ବରଫଶୀତଳ କଣ୍ଠରେ ବନାନୀ କହୁଥିଲେ, ଦାମିକା ଉପହାରର ପ୍ରତ୍ୟାଶାରେ ମୁଁ ତୁମକୁ ଏ ସମ୍ବାଦ ଦେବାକୁ ଆସିଛି ବୋଲି ଯଦି ତୁମେ ଭାବୁଥାଅ, ତେବେ ତମେ ଭୁଲ୍ କରିବ । ମୋର ଉଦ୍ଦେଶ୍ୟ ଭିନ୍ନ······

ରଞ୍ଜନଙ୍କର ମନେ ହେଲା, ସତେ ଯେମିତି ସେ ଉତ୍ତର ମେରୁର ସର୍ବୋଚ୍ଚ ସ୍ଥାନରେ ଖୋଲା ଦେହରେ ଠିଆ ହୋଇଛନ୍ତି । ଭ୍ରୁକୁଟି କରି କହିଲେ, ତେବେ କୁହ । ବନାନୀ କହିଲେ, "ମୋର ଦୁଇଜଣ ପ୍ରାକ୍ତନ ବନ୍ଧୁଙ୍କୁ ମୁଁ ଆଜି ଏଠି ଡିନର୍‌ରେ ଭେଟିବି । ସେଥି ନିମନ୍ତେ କିଛିଟା ନିର୍ଜନତା ମୋର ପ୍ରୟୋଜନ······

ରଞ୍ଜନଙ୍କର ପୁରୁଣା କ୍ଷତରୁ ପୁଣି ନୂତନ ଭାବରେ ରକ୍ତକ୍ଷରଣ ଆରମ୍ଭ ହୋଇ ଯାଇଥିଲା । ସ୍ୱାମୀ ଅପେକ୍ଷା ଏଇ ପ୍ରାକ୍ତନ ବନ୍ଧୁମାନଙ୍କର ଗୁରୁତ୍ୱକୁ ସେ କେମିତି ଉଦାର ଭାବରେ ଗ୍ରହଣ କରିନେବେ ? ଏହାର ନାମ ତେବେ ସଂସାର ! ଏଇଆ ତେବେ ତାଙ୍କୁ ସହିନେବାକୁ ପଡ଼ିବ ?

ବେଦନାସିକ୍ତ ଅନ୍ତରର କୁହୁଳା ଅଗ୍ନିଶିଖାକୁ ପ୍ରଶାନ୍ତିର ଶୀତଳ ଜଳରେ ଲିଭାଇ ଦେଇ ଧୀରେ କୁଣ୍ଠିତ ହସ ହସି ରଞ୍ଜନ କହିଲେ, ଚିନ୍ତା ନାହିଁ, ମୁଁ ଏଗାରଟା ପୂର୍ବରୁ ଫେରି ପାରୁନାହିଁ ।

ବନାନୀଙ୍କର ସୁସଜ୍ଜିତ ଡ୍ରଇଂ ରୁମ୍‌ରେ ପାଦ ରଖି ଅମରେଶ୍ କହୁଥିଲେ, "ମୁଁ କିନ୍ତୁ ଠିକ୍ ନଅଟାରେ ପହଞ୍ଚି ଯାଇଛି । ଆରେ ହୀତେଶ୍, ତମେ ଏଠି କେମିତି ?" ହୀତେଶ୍ କହିଲେ, "ମୁଁ ଯଦି ତୁମକୁ ସେଇ ପ୍ରଶ୍ନ କରେ ।"

—'ମୁଁ ନିମନ୍ତ୍ରିତ ।'

—'ମୁଁ ମଧ୍ୟ ।'

—'କୋଇନ୍‌ସିଡ଼େନ୍‌ସ ।'

—'ଓ୍ୱାନ୍‌ଡ଼ରଫୁଲ ।'

—ରାଗିଣୀ ମଧ୍ୟ ସେଇଆ କହନ୍ତି—କିଛି କାମ ଆପେ ଆପେ ହୋଇଯାଏ ।

—କିନ୍ତୁ ଜାନୁ କହନ୍ତି—ପ୍ରତ୍ୟାଶା ଆଉ ପ୍ରାପ୍ତି ଏକ ଅସମ୍ଭବ ବ୍ୟାପାର । ଆମେ ଯାହା ପାଉ, ତାହା ନଚାହିଁ ମଧ୍ୟ ପାଉ । ଆଉ ଯାହା ଚାହୁଁ, ତାହା କେବେ ପାଉନା ।

—ତେବେ ତମର ଜାନୁ ନିତାନ୍ତ ପେସିମିଷ୍ଟ...

—ନା, ରାଗିଣୀ ବେଶୀ ଅପ୍‌ଟିମିଷ୍ଟ ହୋଇପାରନ୍ତି ।

ପ୍ରବେଶ ଦ୍ୱାରରେ ଠିଆ ହୋଇ ବନାନୀ ମିନିଟ୍ ମିନିଟ୍ ଧରି ଏମାନଙ୍କର ବାଦ ପ୍ରତିବାଦ ଶୁଣିବାକୁ ଲାଗିଲେ । ତାଙ୍କର ମନେ ହେଲା, ଅପରିଚିତା ଜାନୁ ନାମଧେୟା ନାରୀଟି କିନ୍ତୁ ମିଛ କହିନାହିଁ । ଘଣ୍ଟା ଘଣ୍ଟା ଧରି ନିଜ ପରିବେଶକୁ ଝାଡ଼ାପୋଛା କରି ସେ କ'ଣ ଏଇଭଳି ଏକ ଦୃଶ୍ୟର ପ୍ରତ୍ୟାଶା କରୁଥିଲେ ? ସେ ତେବେ ଭୁଲ୍ କରିଛନ୍ତି ?

ହେଲେ ସୀତେଶ, ହେଲେ ଅମରେଶ...

ହେଲେ...

ଉଭୟଙ୍କର ବିସ୍ମିତ ବିମୋହିତ ପୁରୁଷ ଦୃଷ୍ଟି ବନାନୀଙ୍କ ସୌନ୍ଦର୍ଯ୍ୟର ଆରତି କରିବାରେ ଲାଗିଥିଲା । ବନାନୀ ଚମତ୍କୃତ ହେଲେ । ଦୁଇ ଘଣ୍ଟାର ଶରୀର ଚର୍ଚ୍ଚା ତେବେ ବ୍ୟର୍ଥ ହୋଇ ନାହିଁ ।

ଅମରେଶ କହିଲେ, 'ଆଶ୍ଚର୍ଯ୍ୟ ! ସୁନ୍ଦର ।'

—ଜାନୁ କିନ୍ତୁ କହିଥାନ୍ତେ, ଯାହା ସୁନ୍ଦର ତା' ବାରମ୍ବାର ଦେଖିବାକୁ ମନ ହୁଏ ।

—ରାଗିଣୀ କ'ଣ କହିଥାନ୍ତେ ଜାଣ ? କହନ୍ତେ, ସୌନ୍ଦର୍ଯ୍ୟ ତ ଭଗବାନଙ୍କର ଦାନ । ସେଥିପାଇଁ ମଣିଷକୁ ପ୍ରଶଂସା କରି ଲାଭ କ'ଣ ?

—ହୁଏତ ନିଜର ଅଭାବକୁ ନିରସ ଦାର୍ଶନିକତାର ପ୍ରଲେପରେ ଢାଙ୍କି ଦେବାକୁ ଏଭଳି କୁହାଯାଇପାରେ । ଯାହା ଜାଣ ନାହିଁ, ସେ ବିଷୟରେ ମତାମତ ଦେବା ଉଚିତ ନୁହେଁ । ତମେ ରାଗିଣୀଙ୍କୁ ଦେଖିନ—ଏ ଦେଶର ଅଜସ୍ର କ୍ୟାଲେଣ୍ଡରରେ ତାଙ୍କର ବକ୍ଷ ଶୋଭା ପାଉଛି—ରାଗିଣୀ କହନ୍ତି ।

ବନାନୀ ମ୍ଳାନ ହୋଇଗଲେ । ବିଳମ୍ବରେ ବିବାହିତ ଏଇ ପତ୍ନୀଭକ୍ତ ସ୍ୱାମୀମାନଙ୍କୁ

ତାଙ୍କର ଚେତାବନୀ ଶୁଣାଇବାକୁ ମନ ହେଉଥିଲା ଯେ, ସବୁବେଳେ ନିଜର ସ୍ତ୍ରୀକୁ ବିଶ୍ୱାସ କରିବାଟା ହେଉଛି ଚରମ ନିର୍ବୋଧତା ।

ନିଜର ଉପସ୍ଥିତିକୁ ବାଧ୍ୟ କରି ମନେପକାଇ ଦେବାକୁ ଯାଇ ବନାନୀ ଅଗତ୍ୟା କହିଲେ—"ସୀତେଶ ! ସମୟର ପାଣି ପବନ ଜୀବନର ସମସ୍ତ ରଙ୍ଗକୁ ମ୍ଳାନ କରି ଦେଉଛି । ଅମରେଶ ! ୟୁନିଭର୍ସିଟିର ସେଇ ଚପଳ ପ୍ରଜାପତିର ପକ୍ଷ ଭଳି ଲଘୁ ଦିନଗୁଡ଼ିକ ବିଷୟରେ ତମର କ'ଣ କିଛି ମନେ ପଡ଼ୁନାହିଁ ?"

ଉଭୟେ ନୀରବ ହୋଇଗଲେ । ବଡ଼ ବିଚିତ୍ର ଦୃଷ୍ଟିରେ ବନାନୀଙ୍କ ଆଡ଼କୁ ଅନାଇଲେ । ସେଥିରୁ ପ୍ରତିବାଦ ହିଁ ଫୁଟି ଦିଶୁଥିଲା । ପଇଁତି ବୟସରେ ୟୁନିଭର୍ସିଟିର ସେଇ ଦାୟିତ୍ୱହୀନ ଦିନଗୁଡ଼ିକର କଥା ? ବନାନୀ କ'ଣ ଏତେ ନିର୍ବୋଧ ଯେ, ସେ ବହି-ଯାଇଥିବା ଉଜାଣି ସୁଅରେ ଗତି କରି ସ୍ମୃତିର ମଣିମୁକ୍ତାମାନ ଖୋଜିବାକୁ ଉଦ୍ୟମ କରୁଛନ୍ତି । ନା— ସେ ଆଦୌ ସୁବିଧାର ନୁହନ୍ତି । ବିନା ପ୍ରୟୋଜନରେ ସେ ହତ୍ୟା ମଧ୍ୟ କରିପାରନ୍ତି ।

ଉଭୟେ କିଛି ଢ଼ିଲା ପରି ଅଖି ବନ୍ଦକରି ଚିବସିରହିଥିଲେ । ବନାନୀଙ୍କ କଣ୍ଠରୁ ଭାଷା ସରି ଯାଇଥିଲା । ନୀରବତାର ଯନ୍ତ୍ରଣା ସେ ପ୍ରଥମ ଥର ପାଇଁ ଅନୁଭବ କରୁଥିଲେ । ତେଣୁ ପୁଣି ତାଙ୍କୁ କହିବାକୁ ପଡ଼ିଲା, ଅମରେଶ୍ ! ତମେ କ'ଣ ସେଇ ଗୀତଟା ଏବେ ଗାଇପାରିବ, ଯାହା ପାଇଁ ତମେ ସେ ବର୍ଷ College ର Annual Day ରେ Prize ପାଇଥିଲ ?

ବନାନୀଙ୍କର ମନ ଆକାଶରେ ଅନେକ ସ୍ମୃତିର ରେଷଣୀ—ପୁରୁଣା ବନ୍ଧୁ ଦର୍ଶନରେ ସେଗୁଡ଼ିକ ଦପ୍ କରି ଜଳି ଉଠି ବାରମ୍ବାର ଲିଭି ଯାଉଥିଲା । ସ୍ମୃତିର କୋଠରୀରେ ସେଫ୍ ଭଲ୍ଟ୍ ଭିତରେ ଅନେକ ସମୁଦ୍ରର ନୀଳ ଜଳ, ଝାଉଁ ବାଥର ମର୍ମର, ଅରଣ୍ୟର ନିର୍ଜନତା ଆତ୍ମପ୍ରକାଶ କରିବାକୁ ବାଟ ଖୋଜୁଥିଲେ ।

ନିରୁତ୍ସାହ କଣ୍ଠରେ ଅମରେଶ କହୁଥିଲେ ଗୀତ ? My God ! ଓହୋଃ ଗୀତ ! ନା—ସେ ସବୁ ପିଲାଳିଆ ଖିଆଲ ଆଉ ନାହିଁ !

ବନାନୀ କହିଲେ—ତମେ ନିର୍ବୋଧ । କିଛିକ୍ଷଣ ପୂର୍ବରୁ ତମେ ନା କହୁଥିଲ, ସୁନ୍ଦରକୁ ବାରମ୍ବାର ଦେଖିବାକୁ ମନହୁଏ ବୋଲି ? My Friend, ଖାଲି ଦେଖିବାକୁ ନୁହେଁ, ଶୁଣିବାକୁ ବି ମନହୁଏ । ତମର ସେଇ ଗୀତର ଗୋଟିଏ ଗୋଟିଏ ଶବ୍ଦ ଏବେ ମଧ୍ୟ ମୋ କାନରେ ବାଜୁଛି ।

—ଜନୁ କନୁ ଏସବୁ ଲଘୁ ଚଳଚ୍ଚିତ୍ର ସଙ୍ଗୀତକୁ ଆଦୌ ସହ୍ୟ କରିପାରନ୍ତି ନାହିଁ । ତାଙ୍କର Favourite ହେଲା ବଡ଼େ ଗୁଲାମ ଅଲ୍ଲୀ, ହୀରାବାଈ, ସୁନନ୍ଦା ଇତ୍ୟାଦି । ବହୁ ପରିଶ୍ରମରେ ଏମାନଙ୍କର Tape ମୋତେ ଯୋଗାଡ଼ କରିବାକୁ ପଡ଼େ ।

ନିଜେ ଲଗାଇଥିବା ନିଆଁରେ ବନାନୀ ଧୀରେ ଧୀରେ ଜଳୁଥିଲେ ।

ମନୋମତ ପ୍ରସଙ୍ଗରେ ଉତ୍ସାହିତ ହୋଇ ଅମରେଶ କହିଲେ, ଗ୍ରଗିଣୀ କିନ୍ତୁ ଏଇସବୁ ହାହା ହୁତୁ ଶୁଣିଲେ ହିଁ ମୁଣ୍ଡବ୍ୟଥାରେ କାତର ହୋଇପଡ଼ନ୍ତି । ତାଙ୍କର ପ୍ରିୟ ହେଲା ବିଟଲସ୍, ପପ୍‌ମ୍ । ଏସବୁର ଟେପ୍ ଏ ଦେଶରେ ପାଇବା କେଡ଼େ ଡିଫିକଲ୍ଟ ତମେ ଜାଣ । ତଥାପି ମୋତେ ଏ ସବୁ କରିବାକୁ ପଡ଼େ । ଜଲି କହନ୍ତି, ଆମେରିକାନମାନେ ହେଲେ ବ୍ୟବସାୟୀ ଜାତି । ସେମାନେ ସଙ୍ଗୀତର କ'ଣ ବୁଝନ୍ତି ? ଜର୍ମାନ୍‌ମାନେ ହେଲେ ସଙ୍ଗୀତର ଗୁରୁ । ବିଥୋଭେନଙ୍କର ସିମ୍ଫନି···

—ଗ୍ରଗିଣୀ କିନ୍ତୁ ଭାରତୀୟ ସଙ୍ଗୀତକୁ ପ୍ରଶଂସା କରନ୍ତି । ସେ କହନ୍ତି—ଶାସ୍ତ୍ରୀୟ ସଙ୍ଗୀତ କେବଳ ବ୍ୟକ୍ତିଗତ ଭାବରେ ତାଙ୍କୁ ଭଲ ଲାଗି ନପାରେ—ତେବେ ତାର କଳାଗତ ଉତ୍କର୍ଷ···

ବନାନୀ ଭାବିଲେ, ଏଥର ତାଙ୍କର ମୁହଁ ଖୋଲିବା ଉଚିତ । ତେଣୁ ସେ କହିଲେ, ସ୍ମୃତିର ସୁଅରେ ଉଜାଣି ବାହିଗଲେ ଅନେକ ସୁଖଦ ସ୍ମୃତିର ମଣିମୁକ୍ତା ମିଳେ । ସୀତେଶ୍ ! ମୋ ସହିତ ପ୍ରଥମ ସାକ୍ଷାତର ଦିନଟି ତମର ମନେ ଅଛି ?

ସୀତେଶ୍ ଉତ୍ସାହିତ ହେଲେ । କହିଲେ—ସେଇ ଦିନ ! ରଜନୀଗନ୍ଧା ନିର୍ଯ୍ୟାସ ସୁରଭିତ ସେଇ ବିଶେଷ ମୁହୂର୍ତ୍ତିକୁ ଯଦି ଭୁଲିଯାଏ, ତେବେ ମୁଁ ମୋ ନିଜ ଅସ୍ତିତ୍ୱକୁ ମଧ୍ୟ ଭୁଲିଯିବି । ଜାଣ କାହିଁକି ? ବନାନୀ ସୀତେଶଙ୍କୁ କଣେଇ ଚାହିଁଲେ । ଆଖିରେ ତାଙ୍କର ସ୍କୁଲରୁ ପଳାଇଥିବା ପିଲାର ଚଞ୍ଚଳତା । ସେ ରୁଦ୍ଧଶ୍ୱାସରେ ଅପେକ୍ଷା କଲେ । ଅନେକକ୍ଷଣ ଅମଡ଼ା ମାଡ଼ି ଏତେବେଳେ ଯେମିତି ସେ ପ୍ରକୃତ ପଥର ସନ୍ଧାନ ପାଇଛନ୍ତି ।

ସୀତେଶ୍ କହିଲେ, ସେଇଦିନ ଜଲିଙ୍କ ସହ ମୋର ପ୍ରଥମ ଯୋଗାଯୋଗ ହୋଇଥିଲା । ମୋତେ ଦେଖି ସାମାନ୍ୟ ହସିଥିଲେ ଆଉ ପାଖରେ ଠିଆ ହୋଇଥିବା ତାଙ୍କର ବାନ୍ଧବୀଙ୍କୁ କହିଥିଲେ, ଦେଖ, ଓଡ଼ିଶାର ଦେବାନନ୍ଦଙ୍କୁ ଦେଖ ।

ବନାନୀଙ୍କୁ ବୋଧ ହେଉଥିଲା—ଏଥର ତାଙ୍କର ହୃତ୍‌ସ୍ପନ୍ଦନ ବନ୍ଦହୋଇ ଯିବା କଥା । ତାଙ୍କର ଭ୍ରୂକୁଟି କୁଟିଳ ହୋଇ ଯାଉଥିଲା—ବରଫ ଭଳି ସ୍ୱପ୍ନ ତାଙ୍କର ବାସ୍ତବତାର ଉଷ୍ଣତାରେ ତରଳି ତରଳି ଯାଉଛି ।···

ଭୋଜନରୁ ଉତ୍ସାହ ମରି ଯାଇଥିଲା । ତଥାପି ଟେବୁଲରେ ବସିବାକୁ ହେବ । ସେଠି ମଧ୍ୟ ନିସ୍ତାର କାହିଁ ? ଅମରେଶ ଗ୍ରଗିଣୀଙ୍କର ବିଭିନ୍ନ ଅଭ୍ୟାସ ସମ୍ପର୍କରେ ଦଶ ମିନିଟ୍ ଭାଷଣ ଦେଲେ । ସୀତେଶଙ୍କୁ ମଧ୍ୟ ଜଲିଙ୍କ ବିଷୟରେ ବାର ମିନିଟ୍ କହିବାକୁ ପଡ଼ିଲା । କ୍ଲାନ୍ତିକର ଡିନର୍ ପର୍ବ ଶେଷ କରି ଘନିଜଣଯାକ ଯେତେବେଳେ ଡ୍ରଇଂ ରୁମ୍‌ରେ ବସିଲେ, ସେତେ-

ବେଲକୁ ବନାନୀ, ଭଗିଣୀ ଆଉ ଜନନୀଙ୍କର ପୋଷାକ, ଗହଣା, ବନ୍ଧୁବାନ୍ଧବ ଏପରିକି ଭାଇଟାଲ ଷ୍ଟାଟିଷ୍ଟିକସ୍ ସମ୍ପର୍କରେ ଟିକିନିଖି ବିବରଣୀ ପାଇ ଯାଉଥିଲେ । ମୁଣ୍ଡଟା ଜୋର୍‌ରେ ବୁଲିବାକୁ ଆରମ୍ଭ କରି ଦେଇଥିଲା ।

ଅମରେଶ୍ କହିଲେ—ଧନ୍ୟବାଦ । ସେ ଯିବା ଲାଗି ପ୍ରସ୍ତୁତ ହୋଇଗଲେ ।

—ଏଭଳି ଉପାଦେୟ ଡିନର୍ ପାଇଁ ଧନ୍ୟବାଦ । ସୀତେଶ୍ ମଧ୍ୟ ଯିବା ଲାଗି ଉତ୍ସୁକ । ବନାନୀଙ୍କର ମନେ ହେଉଥିଲା, ଯେତେ ଶୀଘ୍ର ଏ ଆପଦ ଦୂର ହେବ, ସେତେ ମଙ୍ଗଳ ।

ରଞ୍ଜନ ଭିତରକୁ ଅସିଲେ । ଶୂନ୍ୟ ଘର ଭିତରେ ଏକାକିନୀ ଠିଆ ହୋଇ ବନାନୀ ସର୍ବସ୍ୱ ହରାଇବାର ବେଦନାରେ କଇଁ କଇଁ ହୋଇ କାନ୍ଦୁଥିଲେ । ରଞ୍ଜନ କହିଲେ—କଥା କ'ଣ ? କାନ୍ଦୁଚ କାହିଁକି ? ଅଶ୍ରୁରୁଦ୍ଧ କଣ୍ଠରେ ବନାନୀ କେବଳ କହିଲେ—ତମେ କ'ଣ ମୋତେ କ୍ଷମା ଦେବନି ?

ରଞ୍ଜନ ନୀରବ ରହିଲେ । ବନାନୀଙ୍କ ମୁଣ୍ଡରେ ହାତ ରଖି ହୁଏତ ଜୀବନର ଉଦାସ ମୁହୂର୍ତ୍ତର ଚମତ୍କାରିତାକୁ ମନେ ମନେ ପ୍ରଶଂସା କରୁଥିଲେ ।

କିଛିକ୍ଷଣ ପରେ କହିଲେ, "ବନାନୀ, ଭୁଲ ଏକ ଛୋଟିଆ ନଦୀ, ଆଉ ତମେ କ'ଣ ଜାଣିନ ଅନୁତାପର ସମୁଦ୍ରରେ ସେ କେଉଁଠି ହଜିଯାଏ ବୋଲି ?"

ତମେ ଶୁଣୁଛ ହିମାଂଶୁ—

---

# ବର୍ଷା ! ବର୍ଷା ! ବର୍ଷା !!!

ପୁଣି ବର୍ଷା ଆସିଗଲା ହିମାଂଶୁ ! ଆକାଶର ଏଇ ମେଘମେଦୁର ସାୟାହ୍ନ ସର୍ବସ୍ୱ ହରାଇଥିବା ମଣିଷ ଭଳି କେତେ ଉଦାସ, କେତେ କରୁଣ ! ଧାର ଧାର ବର୍ଷା ସହ ସିକରସିକ୍ତ ମେଘଲବାୟୁର ଅଶାଳୀନ କ୍ରୀଡ଼ା, ଉଡ଼ି ଉଡ଼ି ଆସୁଥିବା ବୃନ୍ତଚ୍ୟୁତ ପତ୍ରର ଛିନ୍ନାଂଶ, ଧୂଳି ବାଲିର ଯେତେ ଆବର୍ଜନା କେଉଁ ଏକ ଭୟଙ୍କର ଶୂନ୍ୟତା ଆଡ଼କୁ ଠେଲି ନେଇଯାଏ ଆଉ ମନ ଅବସାଦରେ ଭରିଯାଏ ।

ବର୍ଷା ଋତୁ ନିଷ୍ଠୁର ଆଉ ନିର୍ମମ । ଗ୍ରୀଷ୍ମଆଡ଼ର ସନ୍ତସନ୍ତିଆ ଉଷ୍ମମୂଳିଆ ଗନ୍ଧ, ମେଘ କନ୍ୟାର ଏଇ ହସ ଏବଂ କାନ୍ଦର ଉଚ୍ଛୃଙ୍ଖଳତା, ଚ୍ଛାପଟର ଚକଚକ୍ ଫେଣା ଖଣ୍ଡ ଖଣ୍ଡ ଉଡ଼ାଇ ନେଉଥିବା ମଉଆଲି ପବନର ଅଭଦ୍ର ହସ, ମନକୁ ପଛଫେରି ହେବାକୁ ବାଧ୍ୟ କରେ ।

ପଛର ସେଇ ଧୂଆଁଳିଆ ଅତୀତ—ଯେଉଁଠି ଗୋହିରୀ ଦାଣ୍ଡରେ କଳକଳ ନାଦରେ ଗେରୁଆ ରଙ୍ଗର ଜଳସ୍ରୋତ ଉଦ୍ଦାମ ଗତିରେ ବହିଯାଏ କର୍କଶ ଭେକଡାହୁକର ରବକୁ ମ୍ଳାନ କରିଦେଇ, ଯେଉଁଠି ନିର୍ଣ୍ଣିତ ଏକ ବାଳକ ଯାହାର ଊର୍ଦ୍ଧ୍ୱାଙ୍ଗ ଅନାବୃତ, ଗୋଟିଏ ହାତରେ କୌଣସିମତେ ମଳିନ ହାଫ୍ ପ୍ୟାଣ୍ଟକୁ ଅଣ୍ଟା ପାଖକୁ ଟେକି ଧରି ଆର ହାତରେ ଗୋଟିକ ପରେ ଗୋଟିଏ କାଗଜ ଡଙ୍ଗା ଭସାଇ ଦେଉଛି, ଆଉ ଡେଙ୍ଗା ସାରୁ ଫୁଲର ପେଁକାଳି ବଜାଇ ଆନନ୍ଦରେ ହସି ହସି ଗଡ଼ି ଯାଉଛି ।

ତାକୁ କ'ଣ ଅସ୍ୱୀକାର କରି ହୁଏ ? ବର୍ଷାର ସେଇ ତାଣ୍ଡବରେ ଲକ୍ଷ୍ୟହୀନ ଶିଉଳି ଭଳି ଭାସି ଯାଉଥିବା ଆଜିର ଏ ଆବେଗହୀନ ବେଗ ସର୍ବସ୍ୱ ଜୀବନରେ ସେଇ ହସ କାହିଁ ? କାହିଁବା ପାଇବାର କିଛି ରୋମାଞ୍ଚକର ଅଭିଜ୍ଞତା ?

ଆଖି ମେଲିଲେ ତ ପଛରେ ପଡ଼ି ଯାଇଥିବାର ବେଦନା ପ୍ରତ୍ୟେକ ମୁହୂର୍ତ୍ତରେ ମନକୁ ବିଷାଦକ୍ତ କରି ଦେଉଛି !

ଆମେ ସବୁ ଦ୍ରୁତ ଗତିରେ ବଦଳି ଯାଉଛେ ହିମାଂଶୁ ! ଅହମିକାର କଚ୍ଛପୀୟ ଆବରଣ ମଧ୍ୟରେ ଆତ୍ମଗୋପନ କରି ଦୁନିଆକୁ ଠକିବାକୁ ଚେଷ୍ଟା କରୁଛେ । ଏଇ କାମଟିକୁ ଯେ ଯେତେ ଚମତ୍କାର ଭାବରେ କରି ପାରୁଛି, ସେ ସେତେ ସାର୍ଥକ ପୁରୁଷ ବୋଲାଉଛି, ଦୁନିଆର ରାଜଦାଣ୍ଡରେ ଦୁର୍ଲଭ ମୁକୁଟ ପିନ୍ଧି ଗ୍ରୀବା ଫୁଲାଇ ଚାଲି ଯାଉଛି ।

ଅରବିନ୍ଦ ସେଦିନ ପାରିଲା ନାହିଁ ବୋଲି ହାରିଗଲା । ପରାଜିତ ଏକ ନିରମାଖୀ କୁକୁର ଭଳି ତାକୁ ମୁହଁ ଲୁଚାଇ ବୁଲିବାକୁ ପଡ଼ିଲା !

କାହିଁକି ଏମିତି ହେଲା କହିପାରିବ ?

ଜୀବନର ସେଇ ଆଦିମ ଧାରା—ଯେଉଁଠି ପିଲାମାନେ ପାଠପଢ଼ା ସାରି ଚାକିରି ଧରୁଥିଲେ, ଝିଅମାନେ ସୀମନ୍ତରେ ରକ୍ତପତାକା ଉଡ଼ାଇ ଅନ୍ୟର ସଂସାର କରିବାକୁ ଚାଲି ଯାଉଥିଲେ, ଜୀବନର ନିତ୍ୟ ପ୍ରବହମାନ ଧାରାକୁ ଚଳମାନ କରି ରଖିବାକୁ । ତା'ପରେ ଯାହାର ଶକ୍ତି ହେଉଥିଲା, ସେ ସହରରେ ଘର କରୁଥିଲା, ବିବାହ ଶ୍ରାଦ୍ଧରେ ଭୂରିଭୋଜନ ଦେଇ ସାମାଜିକତା ରକ୍ଷା କରୁଥିଲା—ଏଇ ଧରାବନ୍ଧା ଗୁଳା ଭିତର ଦେଇ ଜୀବନ ଗଡ଼ି ଚାଲିଥିଲା । ତାହାରି ଭିତରେ ତ ମଣିଷ ଜାତିର ପ୍ରକୃତ ଇତିହାସ ଲେଖା ହେଉଥିଲା ।

ସେଇ ଇତିହାସର ଗତିପଥ ଯେ ଏତେ ଦିନ ପରେ ଆଜି ଏଇ ବିଂଶ ଶତକର ଶେଷ ପାଦରେ ଆସି ଏମିତି ନୂଆ ମୋଡ଼ ନେବ ଏକଥା କ'ଣ କିଏ ଜାଣିଥିଲା ?

ଅନ୍ତତଃ ଇତିହାସର ଏଇ ସାଧାରଣ ସତ୍ୟ ସହିତ ପରିଚୟ ଥିଲେ, ଅରବିନ୍ଦ ଜୀବନରେ ହୁଏତ ଏପରି ଶୂନ୍ୟତା ଆସି ନଥାନ୍ତା ।

ତମେ ତ ଅରବିନ୍ଦକୁ ଜାଣିନାହଁ । ତାର କଥା ଏବେ କହୁଚି, ଶୁଣ ।

କିଛି ଦିନ ତଳେ ଅରବିନ୍ଦ ସହିତ ଆରତିର ବିବାହ ବିଚ୍ଛେଦ ହୋଇଗଲା । ଉଭୟଙ୍କର ପାରିବାରିକ ପ୍ରତିବାଦ ଭିତରେ ହୋମ ଧୂଆଁ ଏବଂ ବେଦମନ୍ତ୍ରର ଗୁରୁଗମ୍ଭୀର ଧ୍ୱନି ମଧ୍ୟରେ ଯେଉଁ ଦୁଇଟି ହୃଦୟ ପରସ୍ପରର ବେଦନା, ଦୁଃଖ, ଆନନ୍ଦ ଆଉ ରୋମାଞ୍ଚକୁ ଭାଗ କରି ବହନ କରିବେ ବୋଲି ଶପଥ ଗ୍ରହଣ କରିଥିଲେ, କଲମର ଗୋଟାଏ ଗାରରେ ସେସବୁ ବ୍ୟର୍ଥ ହୋଇଗଲା । ଆରତି ଚୌଧୁରୀ ପୁଣି 'ଦାସ' ସଂଜ୍ଞା ବ୍ୟବହାର କରିବେ, ସନ୍ତାନ ଦୁଇଟି ଭାଗ ଭାଗ ହୋଇ ବାପ ଓ ମା'ଙ୍କ ପାଖରେ ରହିବେ । ଆରତି ଭରଣପୋଷଣ ବାବଦରେ ମାସିକ ହଜାରେ ଟଙ୍କା ପାଇବେ, ଯେତେ ଦିନଯାଏ ସେ ନିଜର ସଂଜ୍ଞା ପୁନର୍ବାର ନବଦଳାଇଛନ୍ତି ଇତ୍ୟାଦି ବହୁ କଥା ବିଚାରପତିଙ୍କ ରାୟରେ ଉଲ୍ଲେଖ ଅଛି ।

କେମିତି ଲାଗୁଛି ?

ହୁଏତ ଅସହାୟ ଚୌଧୁରୀ ସନ୍ତାନଦ୍ୱୟଙ୍କର ଅଶ୍ରୁର ବନ୍ୟା, ଦୁଇଟି ଅହଂସର୍ବସ୍ୱ ମଣିଷର ପର୍ବତ ପ୍ରମାଣ ଅହମିକାକୁ ଭସାଇ ନେବା ଭଳି ଶକ୍ତି ପାଇଲା ନାହିଁ । ଗୁମୁରି ଗୁମୁରି ମଥାପିଟି ସେଇ ନିର୍ମମ ପଥରର ଚାରିଆଡ଼େ ଘୂରି ବୁଲିଲା, ସାମାନ୍ୟ ଟିକିଏ ସ୍ନେହର ଆଶାରେ ।

ଆଜିର ଏ ଦୁନିଆରେ ନିଜ ଇଲାକାରୁ କିଏ କାହାକୁ ଛୁଞ୍ଚି ମୁନରେ ମୁନ୍ଦେ ହେଲେ ଜାଗା ଛାଡ଼ିବାକୁ ରାଜି ନୁହେଁ ।

ଅରବିନ୍ଦ ପୁରୁଷ, ସାମନ୍ତବାଦର ଉଷ୍ଣରକ୍ତ ତାର ଶିରା ପ୍ରଶିରାରେ ବହୁଚ । ଭ୍ରୂକୁଟିର ସାମାନ୍ୟ ବିକ୍ଷେପରେ ଯେଉଁଠି ଶହ ଶହ ମଣିଷର ଭାଗ୍ୟ ନିର୍ଣ୍ଣିତ ହୋଇ ଯାଉଥିଲା, ସେ ସହିବ ଗୋଟାଏ ନାରୀର ଉପେକ୍ଷା ?

ଆଉ ଆରତି ? ସେ ଶିକ୍ଷିତା, ବୁଦ୍ଧିମତୀ ଏବଂ ସଙ୍ଗୀତଜ୍ଞା । ପୁରୁଷର ଆଦେଶକୁ ଚୁପଚାପ୍ ମାନିଯିବାର ଯୁଗ କ'ଣ ଏବେ ଅଛି ? ନା ହାତେ ଓଢ଼ଣା ଟାଣି ଭୂମି ନିବଦ୍ଧ ଦୃଷ୍ଟିରେ ସ୍ୱାମୀକୁ ଅନୁସରଣ କରିବାର ପ୍ରୟୋଜନ ଏବେ ଅଛି ? ତା'ର ଦୁନିଆ ସ୍ୱତନ୍ତ୍ର । ଯେଉଁଠି ବନ୍ଧୁବାନ୍ଧବ, ପାର୍ଟି ପିକ୍‌ନିକ୍ ଆଉଟିଂ ଭିତର ଦେଇ ଜୀବନ ପୁରୁଷର ଜୀବନ ସହିତ ସମାନ୍ତରାଳ, କାହିଁକି ସେ ବରଣ କରିନେବ ଦାସତ୍ୱର ଯନ୍ତ୍ରଣା ?

ଦେଖୁଛ ତ ହିମାଂଶୁ ! ବୁଢ଼ା ମନୁ ଦୁଇଟି ଜୀବନକୁ ଗୋଟିଏ ବନ୍ଧନରେ ମିଶାଇ ଦେଇ, ଯେଉଁଠି ମସ୍ତବଡ଼ ସାମାଜିକ ଉପକାର କରିଛନ୍ତି ବୋଲି ନିଶ୍ଚିନ୍ତ ହୋଇଥିଲେ, ସେଇଠି ଜୀବନ ଆଜି କିଭଳି ଜଟିଳ—ପରସ୍ପରର ପ୍ରତିଦ୍ୱନ୍ଦ୍ୱୀ ହୋଇ ପଡ଼ିଚ !

କୋଣାର୍କରୁ ଫେରି ସେଦିନ ମୋତେ ଅରବିନ୍ଦ ଭେଟିବାକୁ ଆସିଥିଲା । କୌଣସି ଗୁରୁତର ଅପମାନର ବେଦନାରେ ତାର ସମସ୍ତ ସରସତା ଯେମିତି ହଜି ଯାଇଥିଲା । ରକ୍ତଶୂନ୍ୟ ମୁଖମଣ୍ଡଳ, ଛଳଛଳ ଚକ୍ଷୁଦ୍ୱୟ, ଘନ ଘନ ଦୀର୍ଘଶ୍ୱାସ—ଏହାରି ଭିତରେ ମୋର ପ୍ରଶ୍ନିଳ ଦୃଷ୍ଟି ସମ୍ମୁଖରେ ନତମୁଖ ହୋଇ ମୋତେ ଓଲଟା ପ୍ରଶ୍ନ କରିଥିଲା, "ଆପଣ କିଛି ଶୁଣିନାହାନ୍ତି ସାର୍ ?

କିଛି ସେ ଶୁଣି ନାହିଁ ସିଧାସଳଖ ଏ ମିଛକଥାଟା ତୁଣ୍ଡରୁ ବାହାର ନକରି ସାମାନ୍ୟ ବୁଲାଇ କହିଲି, "ଶୁଣିବା ନଶୁଣିବାର କଥା ନୁହେଁ ଅରବିନ୍ଦ, ପ୍ରଶ୍ନ ଏଠି ବିଶ୍ୱାସ ଆଉ ଅବିଶ୍ୱାସର ।"

ଅରବିନ୍ଦ ପୂର୍ବଭଳି ନତନେତ୍ର ହୋଇ କହିଲା, "ଆପଣ ତେବେ ବିଶ୍ୱାସ କଲେ ?"

ଦୁଃଖିତ ସ୍ୱରରେ କହିଲି, "ଗଭୀର ମର୍ମାହତ ହୋଇଛି ।"

ଅରବିନ୍ଦ ନୀରବରେ ଫେରିଯିବାର ଉପକ୍ରମ କରିବାର ଦେଖି ମୁଁ ତାକୁ କହିଲି, ଶପଥ କରି କହିପାରିବ, ତମେ ଆରତିକୁ ଜାଣ ନାହିଁ ? ମନେରଖ, ତମର ଅନ୍ତରାତ୍ମା ହିଁ ତମର ସାକ୍ଷୀ ।

ଅରବିନ୍ଦ ମୁହଁ ଟେକି ଅନାଇଲା । କହିଲା, "ଏଥିପାଇଁ ଶପଥର ପ୍ରୟୋଜନ ନାହିଁ । ମୁଁ ଆରତିକୁ ଜାଣି ନଥିଲି । ଏବେ ଜାଣିଛି, ଯଦି ଘଟଣା ସତ୍ୟ ହୋଇଥାଏ ତେବେ ସେଥିରେ ଆପଣ ଅନ୍ୟାୟ କେଉଁଠି ଦେଖିଲେ ?"

ମୁଁ କହିଲି, "ସବୁ କାମରେ ଗୋଟେ ଧାରା ଥାଏ, ସମୟ ଥାଏ । ତମେ ପିଲା ଲୋକ କି ନା !"

ଅସହାୟ ଅରବିନ୍ଦ ଉତ୍ତର ଦେଲା, "ଗଲା ମାସରେ ମୁଁ ବାଇଶ ବର୍ଷ ଅତିକ୍ରମ କରି ଆସିଲି । ନିଜର ଦାୟିତ୍ୱ ମୁଁ ବେଶ୍ ବୁଝେ ।"

ମୁଁ ପ୍ରଶ୍ନ କଲି, "କୋଣାର୍କର ନିର୍ଜନବେଳାରେ ତମେ ଦୁଇଜଣ ଦୁଇଘଣ୍ଟା ଧରି ହଜି ଯିବାର ଯେଉଁ ସମ୍ବାଦ ଏଠାରେ ପ୍ରଚାରିତ ହୋଇଛି, ସେ ସବୁ ତେବେ ନିତାନ୍ତ ମିଥ୍ୟା ?"

ଛଳ ଛଳ ଆଖିରେ ଅରବିନ୍ଦ କହିଲା, "ମୋତେ ବିଶ୍ୱାସ କରନ୍ତୁ ସାର୍ । ପିକ୍‌ନିକ୍ ପାର୍ଟିରେ ଅନ୍ୟୁନ ତିରିଶ ଜଣ ଝିଅ ଥିଲେ । ସେମାନଙ୍କ ଭିତରେ ଯେ ଆରତି ଥିଲା, ସେକଥା ମୁଁ ସହରକୁ ଫେରିବା ପରେ ହିଁ ଜାଣିଲି । ଖୋଜି ଖୋଜି ସକାଳେ ମୁଁ ତା' ଘରକୁ ଯାଇ ତାର ଅଭିଭାବକଙ୍କୁ ତାକୁ କଲେଜ ପଠାଇବାକୁ ଅନୁରୋଧ ଜଣାଇ ଆସିଛି । ମୋର ଦୁଃଖ କିଣ ଜାଣନ୍ତି ସାର୍, ସାମାନ୍ୟ ଗୋଟାଏ ମିଥ୍ୟା ଗୁଜବ୍ ଆଜି ଗୋଟାଏ ନିରୀହା ଝିଅର ଭବିଷ୍ୟତକୁ ଅନ୍ଧାର କରିଦେବାକୁ ବସିଛି ।"

ଅରବିନ୍ଦ ଆଖିରୁ ଧାର ଧାର ଲୁହ ଝରି ପଡ଼ୁଥିଲା ।

ଗତ ପାଞ୍ଚବର୍ଷ ହେଲା ମୁଁ ଅରବିନ୍ଦ ଚୌଧୁରୀକୁ ଜାଣେ । ମଫସଲ ଅଞ୍ଚଳର କୌଣସି ଏକ କ୍ଷୟିଷ୍ଣୁ ଜମିଦାର ପରିବାରର ଶେଷ କର୍ପୂର ସୁରଭିତ ମୂଲ୍ୟବାନ୍ କନାଖଣ୍ଡ ଭଳି ଉଜ୍ଜ୍ୱଳ ଆଉ ଧାରୁଆ ଖଣ୍ଡେ ଇସ୍ପାତ ଛୁରୀ ଭଳି ତାହାର ବ୍ୟକ୍ତିତ୍ୱର ପ୍ରଭାବରେ ମୁଗ୍ଧ ଚକିତ ମଧ ହୋଇଛି । ସେ ଜଳି ଉଠେ—ମାତ୍ର ନାଲିଦିଏ ନାହିଁ । ସେ ଆକର୍ଷଣ କରେ—ମାତ୍ର ସଂଘର୍ଷ ଘଟାଏ ନାହିଁ । ଅନ୍ୟକୁ ତଡ଼ାଇ ଦିଏ—ମାତ୍ର ନିଜେ ରୁହେ ଅବିଚଳିତ ।

ଆଜି ତେଣୁ ତାର ଆଖିର ଲୁହ ମୋତେ ବିଚଳିତ କରି ପକାଉଥିଲା । ହୁଏତ ଶୁଣିବା କଥା ସମ୍ପୂର୍ଣ୍ଣ ମିଥ୍ୟା ହୋଇପାରେ ।

ଯାହକୁ ଝଡ଼ର ଦାଉ ସହିବାକୁ ପଡ଼େ ନାହିଁ । ମାତ୍ର ଦେବଦାରୁ ହେବାରେ ଯେ କେତେ ବିପଦ ତା' ମୋ ଛଡ଼ା ବେଶୀ କିଏ ଜାଣେ ? ଅରବିନ୍ଦ ହୁଏତ ସେଇ ଅନନ୍ୟତାର ଅନ୍ୟ ଏକ ବଳୀ ହୋଇଛି ।

କୌଣସିମତେ ନିଜକୁ ସମ୍ବରଣ କରିନେଇ ମୁଁ ତାକୁ କହୁଥିଲି, "ବର୍ତ୍ତମାନ ଅବସ୍ଥାରେ ତମର ସେଠାକୁ ଯିବା ଆଦୌ ଉଚିତ ହୋଇ ନାହିଁ । ତମେ ଯଦି ନିର୍ଦ୍ଦୋଷ, ତେବେ ଝିଅର ଭଲମନ୍ଦ ତାର ଅଭିଭାବକ ବୁଝିବେ । ସେଥିରେ ତମର କ'ଣ ଥାଏ ବା ମୋର କ'ଣ ଥାଏ ?"

ଅରବିନ୍ଦ ଉଦ୍ଦୀପ୍ତ ହେଲା । କହିଲା, "ନିଜର ଦାୟିତ୍ୱକୁ ଅସ୍ୱୀକାର କରିଯିବା ଭଳି କାପୁରୁଷତା ମୋର ଆଦୌ ନାହିଁ । ସତ ହେଉ ବା ମିଛ ହେଉ, ମୋ ପାଇଁ ଯେତେବେଳେ ଗୋଟିଏ ଝିଅକୁ ନିନ୍ଦିତ ହେବାକୁ ପଡ଼ୁଛି, ସେତେବେଳେ ସେଥିରୁ ତାକୁ ମୁକ୍ତଦେବା ହେଉଛି ମୋର ଦାୟିତ୍ୱ ।"

ଅରବିନ୍ଦ ଏହା ପରେ ଫେରି ଯାଇଥିଲା । ଲଜ୍ୟାଜନକ ଏଇ ଗୁଜବର ପରିଣତି କ'ଣ ହେଲା, ତାହା ଜାଣିବାକୁ ମୋର ଆଗ୍ରହ ତ ଥିଲା—ମାତ୍ର ମୁଁ ନିଜକୁ ସେଥି ସହିତ ଜଡ଼ିତ କରାଇବାକୁ ଚାହୁଁ ନଥିଲି । ଆରତି ଆଉ କଲେଜକୁ ଆସୁ ନଥିଲା ।

ଇତି ମଧ୍ୟରେ ଅରବିନ୍ଦର ଛାତ୍ରଜୀବନ ଶେଷ ହୋଇଗଲା । ଶେଷ ପରୀକ୍ଷାର ଶେଷ ପତ୍ରଟି ଦେଇସାରି ଅରବିନ୍ଦ ମୋ ପାଖକୁ ଆସି ଦ୍ୱିଧାଶୂନ୍ୟ ସ୍ୱରରେ କହିଲା, "ସାର୍, ମୁଁ ଆରତିକୁ ବିବାହ କରୁଛି ।"

ମୁଁ ବିସ୍ମିତ ହେଲି । ଗୁଜବର ଅଗ୍ନିକଣା ଉପରେ ସାମାନ୍ୟ ପାଉଁଶ ଘୋଡ଼ା ହୋଇଛି ମାତ୍ର । ନିଆଁ ଏ ପର୍ଯ୍ୟନ୍ତ ଲିଭି ନାହିଁ । ଏ ଭିତରେ ଯଦି ଏମିତି ଏକ ଘଟଣା ଘଟିଯାଏ, ତେବେ ସେଇ ନିଆଁ ପୁଣି ଦାଉ ଦାଉ ହୋଇ ଜଳିଉଠିବାକୁ ମୁହୂର୍ତ୍ତେ ମାତ୍ର ଲାଗିବ ନାହିଁ । ସେଥିରେ ଅରବିନ୍ଦର ସୁଖ, ଶାନ୍ତି, ନୂତନ ସଂସାର ସବୁ ଜଳିପୋଡ଼ି ପାଉଁଶ ହୋଇଯିବ ।

ଅରବିନ୍ଦ କିନ୍ତୁ ଜିଦ୍‌ଖୋର ଏକ ବାଳକ ଭଳି ବେକ ବଙ୍କାଇ କହିଲା, "ମୁଁ ଭ୍ରୂକ୍ଷେପ କରେନାହିଁ । ଉଭୟ ପରିବାରର ପ୍ରତିକୂଳତା ସତ୍ତ୍ୱେ ମୋତେ ଯେତେବେଳେ ଏ ନିଷ୍ପତ୍ତି ଗ୍ରହଣ କରିବାକୁ ପଡ଼ୁଛି, ସେତେବେଳେ ଯେ କୌଣସି ପରିଣତି ପାଇଁ ମୋତେ ପ୍ରସ୍ତୁତ ରହିବାକୁ ପଡ଼ିବ ।"

ମୁଁ କହିଲି, "ବାଧା, ନିଷେଧ, ସନ୍ଦେହ ଆଉ ଅବିଶ୍ୱାସ ମଧ୍ୟ ଦେଇ କୌଣସି ଶୁଭ କାର୍ଯ୍ୟ ଆରମ୍ଭ କରାଯାଏ ନାହିଁ । ତମେ ବରଂ..."

ଅରବିନ୍ଦ ଉତ୍ତର ଦେଲା, "ଅନୁକୂଳତାର ସୁଯୋଗ ତ ସମସ୍ତଙ୍କ ଭାଗ୍ୟରେ ଘଟେ ନାହିଁ । ପ୍ରତିକୂଳତା ଭିତରେ ନିଜ ପାଇଁ ମୋତେ ବାଟ ତିଆରି କରିବାକୁ ପଡ଼ିବ । ହୁଏତ ଏହାହିଁ ମୋର ଭାଗ୍ୟ—ଭବିତବ୍ୟ । ଆରତିକୁ ତା' ନିଜ ବାଟରେ ଛାଡ଼ିଦେଇ ମୁଁ ଯଦି ଆତ୍ମଗୋପନ କରେ, ତେବେ ଆପଣ କ'ଣ ଖୁସି ହେବେ ସାର୍ ?"

ମୋତେ ଅଗତ୍ୟା ଶେଷ ବାଣ ନିକ୍ଷେପ କରିବାକୁ ହେଲା, "ବିବାହ ପାଇଁ କନ୍ୟାର ସ୍ୱୀକୃତି ଆବଶ୍ୟକ । ଆରତି ତମର ଏଭଳି ଏକ ପ୍ରସ୍ତାବରେ ରାଜି ହେବ ବୋଲି ତମେ ଧରି ନେଇଛ କିପରି ?"

ଏଥର ସାମାନ୍ୟ ଲାଜୁଆ ହସ ହସି ଅରବିନ୍ଦ କହିଲା, "ଆପଣ ମୋତେ ଏତେ ଦାୟିତ୍ୱହୀନ ଭାବୁଛନ୍ତି ସାର୍ ? ଆରତି ତା'ର ସମ୍ମତି ଦେଇ ସାରିଛି ।"

ମୁଁ ଆଶ୍ଚର୍ଯ୍ୟ ହେଲି । ଆରତି ଅତି ରକ୍ଷଣଶୀଳ ପରିବାରର ଝିଅ । ତଥାପି ଅରବିନ୍ଦ ତା' ସହିତ ଯୋଗାଯୋଗ କରି ପାରିଛି । ସେ କାଳର ଦୁଃସାହସିକତା ହିଁ ଆଜିର ବାସ୍ତବତା !

ଅରବିନ୍ଦକୁ ଶେଷଥର ପାଇଁ ସାବଧାନ କରାଇ ଦେଇ କହିଥିଲି, ଘଟଣାଟି କିନ୍ତୁ ଅଧିକ ଜଟିଳ ହୋଇଗଲା । ସବୁକଥା ଭଲରୂପେ ବିଚାର କରି ନିଷ୍ପତ୍ତି ନେଲେ ବୋଧହୁଏ... ”

ଅସହିଷ୍ଣୁ ଅରବିନ୍ଦ କହିଥିଲା, “ଏ ତ ନୂଆ କଥା କିଛି ନୁହେଁ ସାର୍ । ଏଇ ସହରରେ ଏଭଳି ଘଟଣା ସେ ଯୁଗରେ ମଧ୍ୟ ଘଟିଛି, ଆଉ ଏବେ ମଧ୍ୟ ଘଟୁଛି । ଏଥିରେ ବିଚାର କରିବାର କ’ଣ ଅଛି ? ପରିଣତି ଯାହା ହେଉନା କାହିଁକି, ଆପାତତଃ ସ୍ରୋତରେ ଭାସିଯିବାର ଆନନ୍ଦ ତ ମିଳିବ ! ମୁଁ ସିଦ୍ଧାନ୍ତ ଗ୍ରହଣ କରିସାରିଛି ।”

ତାରୁଣ୍ୟର ଏଇ ଦୃଢ଼ତା ସେଦିନ ମୋତେ ମୁଗ୍ଧ କରିଥିଲା ହିମାଂଶୁ । ମୁଁ ମନେ ମନେ ଜୀବନ ବୃକ୍ଷର ଏଇ ସବୁଜ ପତ୍ରଟିର ମଙ୍ଗଳମୟ ଭବିଷ୍ୟତ ନିମନ୍ତେ ଈଶ୍ୱରଙ୍କୁ ପ୍ରାର୍ଥନା କରିଥିଲି ମଧ୍ୟ ।

ଅତିକ୍ରାନ୍ତ ସମୟର ଖରସ୍ରୋତରେ ଭାସି ଚାଲିଥିଲା ବେଳେ ହଠାତ୍ ଦିନେ ବିସ୍ମୃତିର ବହଳ ଆସ୍ତରଣ ଚିରି ଝଡ଼ଗ୍ରସ୍ତ ପକ୍ଷୀଟିଏ ଭଳି ଅରବିନ୍ଦ ଚୌଧୁରୀ ପୁଣି ଆତ୍ମପ୍ରକାଶ କଲା ଏବଂ କହିଲା, “ସାର୍, ଆରତି ସହିତ ମୋର ବିବାହ ବିଚ୍ଛେଦ ହୋଇଯାଇଛି ।”

ଦଶବର୍ଷ ତଳେ ଠିକ୍ ଯେଉଁଠି ଠିଆ ହୋଇ ଦିନେ ସେ ନୀଡ଼ ରଚନାର ନିଷ୍ପତ୍ତି ଘୋଷଣା କରିଥିଲା, ଆଜି ମଧ୍ୟ ସେଇଠି ସେ ଠିଆ ହୋଇଥିଲା । ସେଦିନ ତା’ ମୁହଁରେ ଉଲ୍ଲାସର ଯେଉଁ ସ୍ୱାକ୍ଷର ମୁଁ ଦେଖିବାକୁ ପାଇଥିଲି, ଆଜି କିନ୍ତୁ ତାର କାଣିଚାଏ ହେଲେ ନଥିଲା । ସାରା ଜଗତର କ୍ଲାନ୍ତି ଯେମିତି ତାର ଦେହରେ ଲେସି ହୋଇ ଯାଇଥିଲା । ଏଠି ସେଠି ପୁଣି ଦେଖିବାକୁ ମିଳୁଥିଲା ସମୟର ଆଞ୍ଚୁଡ଼ା ଦାଗମାନ । ମୂର୍ତ୍ତିମାନ ଅଭିଶାପର ଏଇ କଙ୍କାଳ ମଧ୍ୟରୁ ମୁଁ ଅଫୁରନ୍ତ ପ୍ରାଣଶକ୍ତିରେ ଚଞ୍ଚଳ ଉଦାର ହୃଦୟ ଏକ ସୁନ୍ଦର କାଙ୍ଗାଳ ତାରୁଣ୍ୟର ସନ୍ଧାନ କରୁଥିଲି ।

ଆରତି କହିଥିଲା, “ତୁମର ଏଇ ଅହଂକାରୀ ପୌରୁଷ ତଳେ ନୀତିବାଦୀ ଯେଉଁ କୋମଳ ମନଟିଏ ଅଛି, ମୁଁ ତାକୁ ଶ୍ରଦ୍ଧା କରେ ଅରବିନ୍ଦ । କେବଳ ସେଇଥିପାଇଁ ଜୀବନର ଦଶ ଦଶଟା ମୂଲ୍ୟବାନ ବର୍ଷ ମୁଁ ତୁମର ଏଇ ମଖମଲି ଉଆସରେ ବନ୍ଦିନୀ ହୋଇ କଟାଇ ଦେଇଛି ।”

ଅରବିନ୍ଦ ଉତ୍ତର ଦେଇଥିଲା, “ଅହଂକାରୀ ଏକ ଇତର ମନ ନେଇ ତମେ ଆଉ ଏହା ଛଡ଼ା ଅଧିକ କ’ଣ ଦେଖିଥାନ୍ତ ? ବିମୁଗ୍ଧ ଏକ ସ୍ରଷ୍ଟାର ମନ ନେଇ ନିଜକୁ ତିଳ ତିଳ କରି ଜାଳିଦେଇ ମୁଁ ଯେଉଁ ସଂସାର ଗଢ଼ିଛି, ସେଥିପାଇଁ ମୋର ଆନ୍ତରିକତା ତମ ଆଖିରେ ନପଡ଼ିବା ହିଁ ସ୍ୱାଭାବିକ ।”

ବାଧା ଦେଇ ଆରତି କହିଲା, “ସେସବୁ ଶସ୍ତା ସେଣ୍ଟିମେଣ୍ଟ ନେଇ ଆଲୋଚନା କରିବାର ବୟସ ଆମେ ଅନେକ ପଛରେ ଛାଡ଼ି ଆସିଲେ ଅରବିନ୍ଦ । ମୁଁ ତୁମକୁ ଭଲପାଏ,

ତମ ବିନା ମୁହୂର୍ତ୍ତେ ବଞ୍ଚି ପାରିବି ନାହିଁ । ତମ ସ୍ନେହର ଘଞ୍ଚ ଛାୟାରେ ଧ୍ୟାନମଗ୍ନ ଗୋଟିଏ ଦିନ ପାଇଁ ମନ ମୋର ସଦା ଉନ୍ମୁଖ—ମଣିଷ କଥା କହି ଶିଖିବା ଦିନରୁ ଏଇ ଧରଣର ଅନେକ ବସ୍ତାପଚା କଥା କହି ସାରିଛି । ଏସବୁ ପାଇଁ ମୋର କୌଣସି ଆଗ୍ରହ ନାହିଁ ।"

ଅସହାୟ ଅରବିନ୍ଦ ଅବ୍ୟକ୍ତ ଯନ୍ତ୍ରଣାରେ ଚିତ୍କାର କରି ଉଠିଥିଲା, "ହା ଭଗବାନ୍ !"

ବ୍ୟଙ୍ଗ ହସ ହସି ଆରତି କହିଥିଲି, "ବିଂଶ ଶତାବ୍ଦୀରେ ଜନ୍ମି ଏଇ ପୃଥିବୀରେ ତମେ ଏପରି ଏକ ଶବ୍ଦରେ ତଥାପି ବିଶ୍ୱାସ କର ଅରବିନ୍ଦ ? କେଉଁଠି ଥିଲେ ତମର ଭଗବାନ୍, ଯେତେବେଳେ ଏକ ଅସହାୟା ନାରୀର ସବୁଜ ଆଉ ସତେଜ ମନଟିକୁ ଟିକି ଟିକି କରି ଛଡ଼ାଇ ସ୍ୱାର୍ଥପର ଆଉ ଲୋଭୀ ଏଇ ସଂସାରର ଯଜ୍ଞବେଦୀରେ ଅର୍ଘ୍ୟ ରୂପରେ ଅର୍ପଣ କରାଯାଇଥିଲା ?"

ବ୍ୟଥାତୁର କଣ୍ଠରେ ଅରବିନ୍ଦ କହିଲା, "ତମେ କେବଳ ତାହାହିଁ କରିଛ, ଯାହା କାଳକାଳରୁ ସମସ୍ତ ନାରୀ ଜାତି କରି ଆସିଛନ୍ତି ।"

ଉଦ୍ଦୀପ୍ତ କଣ୍ଠରେ ଆରତି କହିଲା, "କରିଛନ୍ତି ? କେଉଁ ନାରୀ ଏକ ଈପ୍ସିତ ପୁରୁଷର ପଦପ୍ରାନ୍ତରେ ନିଜ ପ୍ରତିଭାର ଗଳାଟିପି ଭେଟି ଦେଇଛି ? ତମେ କ'ଣ ଜାଣି ନଥିଲ ସଙ୍ଗୀତ ମୋର ଦ୍ୱିତୀୟ ପ୍ରାଣ ଥିଲା ବୋଲି ? ତମେ କ'ଣ ବୁଝି ନଥିଲ, ତମର ସାମାନ୍ୟ ସହଯୋଗ ଏ ବାଟରେ ମୋର କେତେ ପ୍ରୟୋଜନ ଥିଲା ? ପ୍ରତିଷ୍ଠା ପାଇ ମୁଁ କାଳେ ତମର ଏଇ କାରାଗାର ମଧ୍ୟରୁ ଦୂରକୁ ଗ୍ଲଳିଯିବି···ଏଇ ଆଶଙ୍କାରେ ତମେ ମୋତେ ଈର୍ଷା କରିଛ, ମୋର ପ୍ରତିଭାକୁ ହତ୍ୟା କରିଛ ।"

ଅରବିନ୍ଦ କହିଲା, "ତମେ ଶାଳୀନତା ଲଙ୍ଘନ କରୁଛ ।"

ଉତ୍ତପ୍ତ କଣ୍ଠରେ ଆରତି କହିଲା, "ମୁଁ ତାକୁ ଖାତିର୍ କରେ ନାହିଁ । ଆରତି ତମ ପାଇଁ କେବଳ ଏକ Biological necessity, ମାଂସର ଗୋଟାଏ ଫୁଟନ୍ତା ଫୁଲ, ଯାହାକୁ ଦଳି ଚକଟି ତମେ ମନଭରି ସୁରଭି ଉପଭୋଗ କରିଛ । ଗ୍ଲଣି ଗ୍ଲଣି ଶାଢ଼ି ଗହଣାରେ ପୋତି ପକାଇ status symbol ସଜାଇଛ । ମୁଁ ସେବା କରିଛି । ସାମାଜିକତା ରକ୍ଷା କରିଛି, କଣ୍ଢେଇ ଭଳି ସଜାଇ ହୋଇ ତମର ଆସିବା ବାଟକୁ ଅନାଇ ଅନାଇ ନିଜେ ଜଳି ଯାଇଛି । ଆଜି ତମେ ଯାହାକୁ ଦେଖୁଛ ସେ ତ ଗୋଟାଏ ପାଉଁଶ ଗଦା । ସେଠି ତମେ ସୌଜନ୍ୟଶାଳୀନତା ଏସବୁ ବୁର୍ଜୁଆ ଶବ୍ଦମାନ ଖୋଜିଲେ ପାଇବ କୋଉଠୁ ?"

ଅରବିନ୍ଦର ଧୈର୍ଯ୍ୟ ଛୀଦ୍ରମାଣ ମହମ ଭଳି ତରଳି ତରଳି ବହି ଯାଉଥିଲା । ସେ ଏଥର ମୁହଁ ଖୋଲିଲା । କହିଲା, "ଅଭିଯୋଗ, ଯୁକ୍ତି ତର୍କରେ ସାଂସାରିକ ବିଭେଦ ଦୂର କରି

ହୁଏ ନାହିଁ । ଅଭିଯୋଗ, ଅଭିଯୋଗ ବଢ଼ାଏ ମାତ୍ର । ତମେ ଭୁଲିଯାଉଛ ଯେ ଆମେ ଗୋଟିଏ ବନ୍ଧୁତ୍ୱରୁ ଜୀବନ ଆରମ୍ଭ କରିଥିଲେ । ଏ ଭିତରେ କେଉଁଦିନ ଲକ୍ଷ୍ୟହରା ହୋଇ ପରସ୍ପରଠାରୁ ଏତେ ଦୂରେଇ ଗଲେଣି, ତା' ମୋତେ ଜଣା ନଥିଲା । ଆଜି ଆମେ ଗୋଟିଏ ଗଭୀର ଖାଇର ଦୁଇପଟେ ଠିଆ ହୋଇଛେ, ତାକୁ ଅତିକ୍ରମ କରି ପରସ୍ପରର ନିକଟକୁ ଯିବାର ସମସ୍ତ ଶକ୍ତି ନିଃଶେଷିତ ହୋଇଛି । ତେଣୁ ଆସ, ବନ୍ଧୁ ଭାବରେ ବିଦାୟ ନେବା ।"

ଗୋଟିଏ ସମ୍ଭାବନାମୟ ଜୀବନର ଏହାହିଁ ହେଉଛି ଶେଷ ଅଙ୍କ ହିମାଂଶୁ । ଏହାର ଆରମ୍ଭରେ ହୁଏତ ସ୍ନେହ, ଶୁଭେଚ୍ଛା, ଆତ୍ମୀୟ ସ୍ୱଜନଙ୍କର ଛଳଛଳ ଶୁଭବାଣୀ ଇତ୍ୟାଦି ନଥିଲା । ମାତ୍ର ଥିଲା, ଦୁଇଟି ଉଚ୍ଛଳ ତାରୁଣ୍ୟର ଅଫୁରନ୍ତ ପ୍ରାଣଶକ୍ତି । ପାରସ୍ପରିକ ବିଶ୍ୱାସ—ଆଗରେ ଥିଲା ଅସରନ୍ତି ଅଙ୍କାବଙ୍କା ପଥ, ଯାହାର ଶେଷରେ ବିରାଟ ଏକ ଶୁଭ୍ର ଘେରା ନୀଡ଼ର ଆହ୍ୱାନ ସ୍ପଷ୍ଟଭାବରେ କାନରେ ବାଜୁଥିଲା । ସମାନ ତାଳରେ ପାଦ ମିଳାଇ ଚାଲୁ ଚାଲୁ ଯାତ୍ରୀ ଦୁଇଜଣ ଯେ କେଉଁଦିନ ପରସ୍ପରଠାରୁ ଦୂରେଇ ଯାଇଥିଲେ, ତା' ସେମାନେ ନିଜେ ମଧ୍ୟ ଜାଣିପାରୁ ନଥିଲେ ।

ଅଗତ୍ୟା ମୋତେ କହିବାକୁ ହେଲା, "ଅସୀମ ଧୈର୍ଯ୍ୟ ଆଉ ଅଫୁରନ୍ତ ଶକ୍ତି ନେଇ ସଂସାରର ଏଇ ଦୁରାରୋହ୍ୟ କାଚ ପାହାଡ଼କୁ ଅତିକ୍ରମ କରିବାକୁ ହୁଏ ଅରବିନ୍ଦ । ଏତିକରେ ତମେ ବିଭ୍ରାନ୍ତ ହୋଇ ପଡ଼ିଲ ?

ଅରବିନ୍ଦ ଉତ୍ତର ଦେଲା, "ଏ ପ୍ରଶ୍ନର ଉତ୍ତର ଆପଣଙ୍କୁ ଆରତି ହିଁ ଦେଇ ପାରିବ । ଯେଉଁ ଜୀବନରେ ମୁଁ, ଆପଣ, ସେମାନେ ସମସ୍ତେ ଅଭ୍ୟସ୍ତ, ସେଥିରେ ସେ ଯଦି କୌଣସି ଉତ୍ସାହ ନପାଏ, ତେବେ ସେ ଅପରାଧ ମୋର ନୁହେଁ । ମୁଁ ତ ଆରତିକୁ ସେଇ କଥା କହିଲି । କହିଲି—ସଂସାର ବୃକ୍ଷର ମଧୁ ଆସ୍ୱାଦନ କରିବାକୁ ହେଲେ ବେଦନା ଆଉ ଦୁଃଖର ଦଂଶନ ଅବଶ୍ୟ ସହ୍ୟ କରିବାକୁ ପଡ଼ିବ ।"

ଆରତି କାନ୍ଦି କହିଲା, "ନା, ମୁଁ ସେଇ ଜଗତକୁ ଯିବାକୁ ଚାହେଁ ଯାହା ବେଦନା ଆଉ ଦୁଃଖର ଅଧିକାରରୁ ବାହାରେ ।"

ଆପଣ କୁହନ୍ତୁ ଦାଦ୍, ବେଦନାରୁ ଯେଉଁ ସୃଷ୍ଟିର ସମ୍ଭବ, ସଂବେଦନ ମଧ୍ୟରେ ଯାହାର ବ୍ୟାପ୍ତି ଏବଂ ଶୋକାଶ୍ରୁ ମଧ୍ୟରେ ଯାହାର ପରିସମାପ୍ତି, ସେଠାରେ ମୁଁ ଏଭଳି ଏକ ନନ୍ଦନବନ କେଉଁଠୁ ପାଇବି ? ଆରତି ତ ପିଲା ନୁହେଁ—"

ନା, ମୁଁ କହିଲି—ତା' ଠିକ୍ । ମାତ୍ର ଆରତି ଜଣେ ନାରୀ । ଯୁଗେ ଯୁଗେ ବାଞ୍ଛିତ ପଦାର୍ଥ ପାଇଁ ସେ ତ ନିଜର ପ୍ରିୟ ପୁରୁଷ ପାଖରେ ଅଳି କରି ଆସିଛି ।"

ଅରବିନ୍ଦ କହିଲା, "ମୁଁ ତ ତା' ଅସ୍ୱୀକାର କରୁ ନାହିଁ । ମାତ୍ର ତାହା ଯୁକ୍ତିସମର୍ଥିତ ହେବା ଦରକାର ।"

ପ୍ରସଙ୍ଗ ବଦଳାଇ ମୁଁ ତାକୁ ପଚାରିଲି, "ଅନିଲ ଆଉ ଅନୀଲା ?"

ଅରବିନ୍ଦର ମୁହଁରେ ବେଦନାର ଚିହ୍ନ ଫୁଟି ଉଠିଲା । ମ୍ଳାନ ହସ ହସି ସେ କହିଲା, "କୋର୍ଟ ବ୍ୟବସ୍ଥାରେ ଅନଲର ଦାୟିତ୍ୱ ମୋର, ଆଉ ଅନିଲା ପଡ଼ିଛି ଆରତ ଭାଗରେ । ଅଥଚ ଟ୍ରାଜେଡ଼ି କଣ ଜାଣିଚ୍ଛ ସାର୍ ? ରାତିରେ ମୋ ପାଖରେ ନଶୋଇଲେ ଅନିଲାକୁ ନିଦ ମାଡ଼େନା—ଅନଲ ବି ପିଲାଦିନରୁ ମା'ର କାନିଧରା ।"

ମୁଁ କହିଲି, "ରାଜା ରାଜା ମଧ୍ୟରେ ସଂଘର୍ଷ ହୁଏ ଅଥଚ ଧନରେ, ପ୍ରାଣରେ କ୍ଷତି ହୁଏ ବିଚରା ନିରୀହ ପ୍ରଜାଗୁଡ଼ିକଙ୍କର ।"

ଅରବିନ୍ଦ କ'ଣ ଭାବୁଥିଲା । ଅନ୍ୟମନସ୍କ ଭାବରେ କହିଲା, "କୁଣ୍ଠିଛି ପିଲାଟା ମୋତେ ଭାରି ଖୋଜୁଛି । ସପ୍ତାହରେ ଥରେ ମାତ୍ର ଦୁଇ ଘଣ୍ଟା ପାଇଁ ମୁଁ ତାକୁ ଭେଟୁଛି ମାତ୍ର..."

ମୁଁ ଦୃଢ଼ ଭାବରେ ତାକୁ କହିଲି, "ତମେ ନିଜର ପିଲା ପାଖକୁ ଯିବ, ଏଥିପାଇଁ କାଗଜ ଖଣ୍ଡକର ନିର୍ଦ୍ଦେଶ ମାନିବାର ଦରକାର କ'ଣ ? ରକ୍ତର ନଦୀରେ ଜୁଆର ଆସିଲେ, ସେଠି ଏସବୁର ମୂଲ୍ୟ କେତେ ? ଆରତି ନିଶ୍ଚୟ ତମକୁ ଫେରାଇ ଦେବ ନାହିଁ ।"

ଦୁର୍ବଳ କଣ୍ଠରେ ଅରବିନ୍ଦ କହିଲା, "କିଏ ଜାଣେ ? ମୁଁ ବି ତ ଅନଲକୁ ତା' ପାଖକୁ ଛାଡ଼ିଦେଇ ନାହିଁ ।"

ଦୁଇଟା ସତେଜ ଜୀବନ ଯେଉଁଠି ଝାଉଁଳି ପଡ଼ିବାକୁ ଯାଉଛି, ସେଠି ମଣିଷ ଦେଖୁଛି ମାନ ଅପମାନର ସ୍ୱପ୍ନ । ପିତା ମାତାଙ୍କର ସ୍ନେହର ଉଷ୍ମଶଯ୍ୟାରୁ ଅପସରି ଯାଇଁ ଏମାନେ ଭବିଷ୍ୟତରେ କ'ଣ ହେବେ ? ଯନ୍ତ୍ର ନା ମଣିଷ ?

ମୁଁ ଅରବିନ୍ଦକୁ ତାହାହିଁ ପଚାରିଲେ । ଯୁଦ୍ଧ ହୁଏ ମତ ପାର୍ଥକ୍ୟରୁ—ଆଉ ମତ ପାର୍ଥକ୍ୟ ହୁଏ ଅହମିକାର ସଂଘର୍ଷରୁ । ଜଣେ ଯଦି ଅନ୍ୟ ପାଖରେ ଟିକିଏ ମୁଣ୍ଡ ନୁଆଁଇ ଦିଅନ୍ତା, ତେବେ ଅନ୍ତତଃ ସଂସାରର ନବେ ଭାଗ ସମସ୍ୟାର ସମାଧାନ ହୋଇ ଯାଆନ୍ତା ।

ମାତ୍ର ତା'ତ ହେବାର କଥା ନୁହେଁ । ଆରତି ଜଣାଶୁଣା ସଙ୍ଗୀତ ଶିଳ୍ପୀ । ବିବାହ ପୂର୍ବରୁ ଏଥିପାଇଁ ସେ ବେଶ ନାଁ କରିଥିଲା । ବିବାହ ପରେ ସେ ଏ ପଥରେ ଅରବିନ୍ଦକୁ ସହଯୋଗୀ ରୂପେ କାମନା କରୁଥିଲା । ଅରବିନ୍ଦର ନିସ୍ପୃହତା ଯଦି ତାର ମନ ଭାଙ୍ଗି ଦେଇଥାଏ, ତେବେ ଏଥିପାଇଁ ତ ତାକୁ ଦୋଷ ଦେଇ ହେବ ନାହିଁ ।

ଆଉ ଅରବିନ୍ଦ । ମଫସଲ ଅଞ୍ଚଳର ଏକ ରକ୍ଷଣଶୀଳ ପରିବାରର ଶେଷ ସନ୍ତକ । ସେଠି ଅନ୍ତଃପୁରରେ ଏବେ ମଧ୍ୟ ଅଷ୍ଟାଦଶ ଶତକର ରାଜତ୍ୱ । ଭାରି ଅବଗୁଣ୍ଠନ, ଥିରି ଥିରି ଚାଲି, ଚୁପ୍‌ଚାପ୍ କଥା, ଶବ୍ଦହୀନ ହସ ହିଁ ସେଠାରେ ନାରୀତ୍ୱର ବିଜୟ ନିଶାଣ । ପିଲା ଦିନରୁ ମା' ମାଉସୀଙ୍କର 'ଛାତି ଫାଟିଯିବ, ମୁହଁ ଫିଟିବ ନାହିଁ', ଆଚରଣ ଭିତରେ ସେ ବଢ଼ି ଉଠିଛି ।

ସେ ପୁରୁଷ—ସଂଘର୍ଷ କରିବ । ଅର୍ଥକ ସ୍ୱଚ୍ଛଳତା ଆଣିବ । ସାମାଜିକ ପ୍ରତିଷ୍ଠା ଲୋଡ଼ିବ । ପରିବାର ପାଇଁ ଜୀବନ ଦେଇଦେବ । ଘରକୁ ଫେରି ପ୍ରେମଶୀଳା ପତ୍ନୀ, ସ୍ନେହାତୁର ସନ୍ତାନମାନଙ୍କ ଗହଣରେ ନିଜର ସମସ୍ତ ଅସଫଳତାକୁ ଭୁଲିଯିବ । ଏଥିପାଇଁ କ'ଣ ତାକୁ କାଠଗଡ଼ାରେ ଠିଆ କରିହେବ ?

ସଂଘର୍ଷ ଏଠାରେ ସେଇ ସନ୍ଧ୍ୟା ଦୀପ ଆଉ ବିଜୁଳିବତୀ ମଧ୍ୟରେ । ସମାଧାନ କ'ଣ ?

ଶେଷରେ ଅରବିନ୍ଦକୁ କହିଲି, "ମୋତେ ଭୁଲ୍ ବୁଝିବ ନାହିଁ । ସବୁ ଜାଣି ଶୁଣି ତମେ ଆରତି ପାଇଁ ଯେଉଁ ବ୍ୟବସ୍ଥା କଲ, ତା' ଠିକ୍ ହୋଇ ନାହିଁ । ତମର ଏ କାଳରେ ଜନ୍ମିବା ଉଚିତ ନଥିଲା ।"

ଅରବିନ୍ଦର ମୁହଁରେ ଗୂଢ଼ ଅନ୍ତର୍ବେଦନାର ଆଭାସ ଫୁଟି ଉଠିଲା । ଲଭିଲ ସ୍ୱରରେ ସେ କହିଲା, "ଆପଣ ହୁଏତ ଠିକ୍ କହୁଛନ୍ତି । କିନ୍ତୁ ଜୀବନର ମୂଲ୍ୟବୋଧ ପାଇଁ ମୋର ସଂଗ୍ରାମ···

ବାଧା ଦେଇ କହିଲି, "ଜୀବନ ବେଦ ନିକଟରେ ଜଗତର ସମସ୍ତ ଶାସ୍ତ୍ରପୁରାଣ ଅଚଳ । ଯେଉଁ ଦେଶରେ ହାତରେ ଗଣ୍ଡି ପଡ଼ିବାଟା ମାତ୍ର ଶାସ୍ତ୍ରସମ୍ମତ, ସେଠାରେ ତମେ ମନ ବିନିମୟ କରି ସୃଷ୍ଟି ଏଭଳି ତ୍ରୁଟିକୁ ପ୍ରଶ୍ରୟ ଦେଲ କାହିଁକି ?

ଅରବିନ୍ଦ ନୀରବ ରହିଲା । ତା'ର ନିରୁପାୟତା ମୁଁ ବୁଝୁଥିଲି । ଯେଉଁ ନିଆଁ ସେ ଦିନେ ଜଳାଇଥିଲା ଆଜି ତାହାହିଁ ତାକୁ ଧୀରେ ଧୀରେ ଜାଳି ଦେଉଥିଲା ।

ମଧ୍ୟବିତ୍ତ ପରିବାରରେ ଜନ୍ମ ହୋଇ ଆରତି କାମନା କରିଥିଲା ନିଜ ପାଇଁ ଏକ ସ୍ୱତନ୍ତ୍ର ଦୁନିଆର, ଯେଉଁଠି ଆଲୋକ ଥିବ, ଫୁଲମାଳ ଥିବ, ସ୍ୱାଗତ ଭାଷଣ ଥିବ, ଫଟୋ ଉଠୁଥିବ, ଅଟୋଗ୍ରାଫ୍ ନିଆ ହେଉଥିବ । ଆଉ ସେ ଗର୍ବିତା ଏକ ସାମ୍ରାଜ୍ଞୀ ଭଳି ପାହାଚ ପରେ ପାହାଚ ଅତିକ୍ରମ କରି ସାଫଲ୍ୟର ଶିଖରକୁ ଉଠୁଥିବ !

ଖୋଜିବା ଆଉ ପାଇବା ଭିତରେ ଯେତେବେଳେ ଶୂନ୍ୟତା ବଢ଼ିବାକୁ ଲାଗିଲା, ସେତେବେଳେ ଆରତି ନିଜ ଉପରେ ହିଁ ପ୍ରତିଶୋଧ ନେବାକୁ ଆରମ୍ଭ କରିଦେଲା ରାସ୍ତା ଉପରକୁ ଓହ୍ଲାଇ ଆସି ।

ହଠାତ୍ ଏକ ବର୍ଷକ ଅପରାହ୍ନରେ ମୋର ଆରତି ସହିତ ସାକ୍ଷାତ୍ ହୋଇଗଲା । ପାଖକୁ ଆସି ନିଜର ପରିଚୟ ଦେଇ ନଥିଲେ, ତାକୁ ଚିହ୍ନିବା ମୋ ପକ୍ଷେ ଆଦୌ ସମ୍ଭବପର ହୋଇ ନଥାନ୍ତା ।

ରାସ୍ତା ପାଖର ଗୋଟାଏ ରେଲିଂ ଉପରେ ବସି ସେ ରାସ୍ତା ଧାରରେ ଲାଗିଥିବା କିଛି କୁଲିଙ୍କୁ କ'ଣ ବୁଝାଉଥିଲା । ମୁଁ ବିସ୍ମିତ ଭାବରେ ଥରେ ତା' ଆଡ଼କୁ ଏବଂ ଥରେ ଏଇ ବିଚିତ୍ର ପରିବେଶକୁ ଅନାଉଥିଲି ।

ତା'ର ସେଇ ପ୍ରସାଧନସ୍ନାନ ତୈଳଶୂନ୍ୟ ରୁକ୍ଷ କୁନ୍ତଳ ଭାର, ରଙ୍ଗଛଡ଼ା ଜୀର୍ଣ୍ଣ ଶାଢ଼ିର ଖୋଳ ମଧ୍ୟରେ କୌଣସିମତେ ଆବୃତ ହୋଇ ରହିଥିବା ଜୀର୍ଣ୍ଣ ଶରୀର, ବୁଭୁକ୍ଷୁ ଦେହରେ ଆଡ଼େ ଅନାଇ ନିକଟ ଅତୀତରେ ଦେଖିଥିବା ଲାବଣ୍ୟମୟୀ ଏକ ନାରୀ ମୂର୍ତ୍ତିର ସନ୍ଧାନ କରୁଥିଲି ।

ନମସ୍କାର କରି ମ୍ଳାନ ହସ ହସି ଆରତି ମୋତେ କହିଲା, "ଭଲ ଅଛନ୍ତି ସାର୍ ?"

ନିଜକୁ ସମ୍ବରଣ କରି ନେଇ ତାକୁ କହିଥିଲି, "ଆଉ ତମେ ? ଏଇ ସୁଖ ଆଶାରେ ତେବେ ଖୋଲା ଆକାଶ ତଳକୁ ବାହାରି ଆସିଥିଲ ?"

ଅନ୍ୟମନସ୍କ ଭାବରେ ସେ ଉତ୍ତର ଦେଲା, "ସମୟ କଟାଇବା କଥା ତ ! ଚାଲି ଯାଉଛି କୌଣସିମତେ ।"

ମୁଁ ପଚାରିଲି, "ଅରବିନ୍ଦର ସଂସାରରେ ସମସ୍ତ କ'ଣ ସ୍ଥିର ହୋଇ ରହି ଯାଇଥିଲା ? ପ୍ରତିବାଦ ଜଣାଇ ଆରତି କହିଲା, "ସିମେଣ୍ଟ କଂକ୍ରିଟ୍‌ର ଚୌହଦୀ ଭିତରେ ସମୟର ସେଇ ବିଶ୍ରୀପିଡ଼ାପ୍ରଦ ନିସ୍ତରଙ୍ଗ ସ୍ଥିତି, ମୁଁ ଆପଣଙ୍କୁ ସେକଥା ବୁଝାଇ ପାରିବି ନାହିଁ । ଆପଣ ବରଂ ଅନ୍ୟ କଥା କୁହନ୍ତୁ—"

ମୁଁ କହିଲି, "ଅରବିନ୍ଦ ଆଉ ତମେ—ଉଭୟ ମୋର ପ୍ରିୟ । ଉଭୟଙ୍କର ଏଇ ଝଡ଼ଗ୍ରସ୍ତ ଧୂମିତ ଅବସ୍ଥା ମୋ ମନକୁ ଯେ କେତେ ପୀଡ଼ା ଦେଉଛି, ତା' ଯଦି ତମେ ବୁଝିପାରୁ ନାହଁ; ତେବେ ମୋର ବରଂ ନୀରବ ରହିବା ଭଲ ।"

ଆରତି କିଛିକ୍ଷଣ ଚିନ୍ତା କଲା । ତା'ପରେ କହିଲା, "ମୋତେ ତାଙ୍କର ଆଦେଶ ଥିଲା, ଉତ୍ତପ୍ତ ରୌଦ୍ରରୂପୀ ବିଷାକ୍ତ ସ୍ମୃତି ଯେତେବେଳେ ତାଙ୍କୁ ଅସ୍ଥିର କରି ପକାଇବ, ସେତେବେଳେ ସ୍ନିଗ୍ଧ ଛାୟାରୂପୀ ସହସା ଆତ୍ମପ୍ରକାଶ କରି ମୋର ମୁକ୍ତ କବରୀରେ ମୁଁ ତାଙ୍କର ପାଦ ପୋଛି ଦେବି । କିଛିଦିନ ତା'ବି କଲି । ଭଲ ଲାଗିଲା ନାହିଁ । ତାକୁ ବିଦାୟ ଦେଲି । ଏ ଜୀବନ ବା ମନ୍ଦ କ'ଣ ?"

ଆହତ ସ୍ୱରରେ ମୁଁ ତାକୁ ପ୍ରଶ୍ନ କଲି, "ଏହାକୁ ତମେ ଜୀବନ କହୁଛ ?"

ଉଦ୍ଦୀପ୍ତ କଣ୍ଠରେ ଆରତି କହିଲା, "ନୁହେଁ କାହିଁକି ? ଖୋଲା ଆକାଶ ତଳେ ଶହ ଶହ ନିରକ୍ଷର କୁଲିମୂଲିଆ, ତାଙ୍କର ଅବହେଳିତ ନିଷ୍ପାପ ସନ୍ତାନମାନଙ୍କ ମୁହଁରେ ଯଦି ମୁଁ ହସ ଫୁଟାଇ ପାରିଲି, ତେବେ ଦୁନିଆରେ କେଉଁ ସୁଖକୁ ଆଉ ପ୍ରତ୍ୟାଶା କରିବି ?"

ଜୀବନର ସବୁଠାରୁ ଚମକପ୍ରଦ ଅଭିଜ୍ଞତା ସେଦିନ ମାତ୍ର କେଇଟି ମୁହୂର୍ତ୍ତରେ ମୁଁ ହାସଲ କରି ନେଇଥିଲି । ଆରତି ବୋଧହୁଏ ବୁଝିପାରିଲା । କହିଲା, "ଧରି ନିଅନ୍ତୁ ମୁଁ ତପସ୍ୟା କରୁଛି । ଗୋଟିଏ ପରିବାର ବଦଳରେ ଅଗଣନ ଶିଶୁଙ୍କୁ ମୁଁ ଆଜି ଆପଣାର କରି

ନେଇଛୁ । ଦୁଇ ଯୋଡ଼ା ଛଳଛଳ ଆଖି, ତାହାର ମୂକ ପ୍ରତ୍ୟାଶା ନିକଟରୁ ପଳାଇ ଆସି, ମୁଁ ଯଦି ଏଠାରେ କିଛି ସମୟ ନିଜକୁ ଭୁଲିଇ ରଖି ପାରିଲି, ତେବେ ତାହାହିଁ ତ ମୋ ପାଇଁ ଶ୍ରେୟସ୍କର ।"

ଶେଷ ଆଡ଼କୁ ଆରତିର କଣ୍ଠସ୍ୱର ଭାରି ଭାରି ଶୁଭୁଥିଲା ।

ଆମେ ନାଟକର ଶେଷ ଦୃଶ୍ୟକୁ ଆସିଗଲେ ହିମାଂଶୁ । ଆରତି ଯେ ନିଜ ସହିତ ପ୍ରତାରଣା କରୁଥିଲା, ଏ କଥା ସେ ନିଜେ ମଧ୍ୟ ବୁଝି ପାରୁଥିଲା । ସେଦିନ ଆଉ କିଛି ତାକୁ କହିବା ମୋ ପକ୍ଷେ ସମ୍ଭବ ହେଲା ନାହିଁ । ଭାବୁଥିଲି, ବୁଝିବା ଅବସ୍ଥା ଆସିଲେ ତାକୁ ବୁଝାଇ କହିବି ।

ମାତ୍ର ସେ ସୁଯୋଗ ମୋତେ ଆଉ ମିଳିଲା ନାହିଁ ।

ସେଦିନ ପୁଣି ମେଘବାହାନଙ୍କ ଅକୃପଣ ହସ୍ତର ଦାନରେ ସାରା ପୃଥିବୀ ଭାସି ଯାଉଥିଲା ।

କୌଣସି ଏକ ବିଷଣ୍ଣ ଦୁଃଖଦ ସ୍ମୃତିର ଜ୍ୱାଳାରେ ଅସ୍ଥିର ହୋଇ ମୁଁ ଯେତେବେଳେ ରୁମରେ ଏପଟ ସେପଟ ହେଉଥିଲି, ବାତ୍ୟାତାଡ଼ିତ ଏକ ଅସହାୟ ପକ୍ଷୀ ଭଳି ହଠାତ୍ ଅରବିନ୍ଦ ଭିତରକୁ ପଶି ଆସିଲା ।

ଜୀବନ ଯେ ସମୟ ସମୟରେ କିଭଳି ଯନ୍ତ୍ରଣାଦାୟକ ହୋଇପଡ଼େ, ଏକଥା ତାକୁ ଦେଖିଲେ ହିଁ ଜଣା ଯାଉଥିଲା ।

ପଦଟିଏ ମାତ୍ର ଉଚ୍ଚାରଣ ନକରି ଅରବିନ୍ଦ ଖଣ୍ଡେ କାଗଜ ମୋ ହାତକୁ ବଢ଼ାଇ ଦେଲା । ସମ୍ବୋଧନର ସମସ୍ତ ଔପଚାରିକତାକୁ ବାଦ୍ ଦେଇ ଆରତି ଲେଖିଥିଲା, "ଦୁଇଯୋଡ଼ା ନୀଳ ଆଖିର ଦାହିକା ଶକ୍ତି ଯେ ଏତେ ଅଧିକ, ତା' ପୂର୍ବରୁ ମୋର ଜାଣିବା ଉଚିତ ଥିଲା । ଯନ୍ତ୍ରଣାର ସେହି ନର୍କରୁ ଉଦ୍ଧାର ପାଇବା ପାଇଁ ମୁଁ ଢେର୍ ସଂଗ୍ରାମ କଲି; ଦୂରକୁ ପଳାଇଲି, ମାତ୍ର ସ୍ନେହର ସ୍ନେହ ହାତ ସର୍ବବ୍ୟାପି ଭଳି ସବୁଠି ମୋର ପାଦ ଦୁଇଟାକୁ ଛନ୍ଦି ପକାଉଥିଲା । ସ୍ୱାର୍ଥପର ଆଉ ନିଷ୍ଠୁର ଏଇ ଦୁନିଆରେ ଅନ୍ତରର ବେଦନା ତ କେହି ବୁଝନ୍ତି ନାହିଁ । ଝର ଝର ହୋଇ ଝରି ପଡ଼ୁଥିବା ରକ୍ତଧାରକୁ କେହି ପୋଛି ଦେବାକୁ ଆଗେଇ ଆସନ୍ତି ନାହିଁ । ବେଦନା ରାଜ୍ୟର ବାହାରେ କୌଣସି ଦୁନିଆ ଅଛି କି ନାହିଁ, ତାହାହିଁ ଖୋଜିବାକୁ ମୁଁ ତେଣୁ ଆଜି ଚାଲି ଯାଉଛି ।"

ସବୁ ନଦୀ ସମୁଦ୍ରରେ ମିଶନ୍ତି ନାହିଁ । ସବୁ ନାରୀ ସସାରୀ ହୋଇ ପାରନ୍ତି ନାହିଁ । ସେଥିଲାଗି ମୁଁ କ୍ଷମା ଚାହୁଁଛି । ଅରବିନ୍ଦ, ତମେ ମୋର ସ୍ୱାମୀ, ଇହକାଳ, ପରକାଳର ଆଧାର । ଯଦି ମୋର ବିୟୋଗ ତୁମ ଆଖିରୁ ଦୁଇଧାର ଲୁହ ଝରାଇ ପାରିଲା, ତାହା ହିଁ ହେବ ମୋର ଶ୍ରେଷ୍ଠ ତର୍ପଣ ।

ଅନଳ ଆଉ ଅନିଳା—ଏମାନଙ୍କ ପାଇଁ ତମେ ରହିଲ ।" ଚିଠି ଶେଷ ହୋଇ ଯାଇଥିଲା ।

ଅଶ୍ରୁରୁଦ୍ଧ କଣ୍ଠରେ ଅରବିନ୍ଦ କହୁଥିଲା, "ସ୍ଲିପିଂ ପିଲ୍ ଖାଇ ଆରତି କାଲି ଆତ୍ମହତ୍ୟା କରିଛି ।"

ମେଘ କନ୍ୟାର ଅଶ୍ରୁ ପ୍ରଚଣ୍ଡ ଧାରରେ ଝରି ପଡ଼ୁଥିଲା ।

ନାରୀର ମନ ହେମନ୍ତ ଆକାଶର ଲଘୁମେଘ ହିମାଂଶୁ, ତାକୁ ବୁଝାଇହୁଏ, ମାତ୍ର ବୁଝିହୁଏ ନାହିଁ ।



# ଅନ୍ୟ ଏକ ବୃହନ୍ନଳା

ସଂସାରରେ ସାଧାରଣ ଘଟଣାର କୌଣସି ମୂଲ୍ୟ ନାହିଁ । କୁକୁରଟିଏ ଯେତେବେଳେ ମଣିଷକୁ କାମୁଡ଼ିବାକୁ ଧାଏଁ, ସେତେବେଳେ କେହି ବିଶେଷ ବ୍ୟସ୍ତତା ଦେଖାନ୍ତି ନାହିଁ । ବଡ଼ଜୋର ଆଖପାଖରେ ଥିବା କେତେକ ଲୋକ 'ହୁସ୍' 'ଏଇ ଯାଃ' ଇତ୍ୟାଦି ଧରଣର ଭସା ଭସା ମନ୍ତବ୍ୟ ଦେଇ କର୍ତ୍ତବ୍ୟ ସମାପନ କରନ୍ତି । ମାତ୍ର ମଣିଷ ଯେତେବେଳେ ମୁଖବ୍ୟାଦାନ କରି କୁକୁର ପାଖକୁ ଧାଏଁ, ସେତେବେଳେ ସମସ୍ତଙ୍କର ଆଖି ବଡ଼ ବଡ଼ ହୋଇଯାଏ, କୁଞ୍ଚିତ ଭ୍ରୂଲତା ଊର୍ଦ୍ଧ୍ୱଗାମୀ ହୁଏ । ଘଟଣା ଚାଲିଯାଏ ଅସାମାନ୍ୟ ପର୍ଯ୍ୟାୟକୁ, ଆଉ ଏହି ଅସାମାନ୍ୟ ଘଟଣା ହିଁ ଇତିହାସ ସୃଷ୍ଟି କରେ । ହୋଇପାରେ ତାହା ଗ୍ଲାନିର କିମ୍ବା ଗୌରବର । ବୀଭତ୍ସ କିମ୍ବା ସୌନ୍ଦର୍ଯ୍ୟର ।

ଆଜି ଏ ବିଷୟ ଚନ୍ଦ୍ରାକଳା ବେଳକୁ ବାରମ୍ବାର ଗଡ଼ ନଇଲେ ଗାଁ'ର ଜଣେ ଅସାଧାରଣ ଚରିତ୍ର ଦୁଃଖେଇ ସାହୁଙ୍କର ଶ୍ରେଷ୍ଠ କୋମଳ ମୁହଁଟି ବାରମ୍ବାର ଆଖି ଆଗରେ ଭାସିଯାଉଛି । ଦୁଃଖେଇ ପ୍ରକୃତରେ ଇତିହାସ ସୃଷ୍ଟି କରିଥିଲେ । ମାତୃ ଜଠରରୁ ସୃଷ୍ଟିର ଆଲୋକ ଦେଖିବାର ପୂର୍ବଦିନ ରାତିରେ ଦୁଃଖେଇଙ୍କର ଜନ୍ମଦାତା ଠାକୁରାଣୀ ବରର ସବୁଠାରୁ ଉଚ୍ଚ ଡାଳରେ ବେକରେ ରଶିବାନ୍ଧି ଝୁଲି ପଡ଼ିଥିଲେ । ଶୁଣାଶୁଣିରେ କୌଣସି କାରଣ ନେଇ ସ୍ୱାମୀ ସ୍ତ୍ରୀ ମଧ୍ୟରେ ପ୍ରଚଣ୍ଡ କଳହ ହୋଇଥିଲା । ସ୍ୱାମୀ ଆକ୍ଷେପ କରିଥିଲେ ସ୍ତ୍ରୀର ଚରିତ୍ର ନେଇ । ସ୍ତ୍ରୀ ବ୍ୟଙ୍ଗ କରିଥିଲେ ସ୍ୱାମୀର ପୌରୁଷକୁ । ଫଳରେ ଦୁଃଖେଇ ବେଦନା ଆଉ ବିଷାଦରେ ଘୋର ତମିସ୍ରାଚ୍ଛନ୍ନ ପରିବେଶରେ ଭୂମିଷ୍ଠ ହେବାବେଳେ ନିଜ ମୁଣ୍ଡ ଉପରେ ସେଇ ନିରାପଦ ସ୍ନେହାଚ୍ଛନ୍ନ ଶୀତଳତାର ସ୍ପର୍ଶ ପାଇଲେ ନାହିଁ, ଯାହାର ନାମ ପିତା । ଏହାଦ୍ୱାରା ତାଙ୍କ ଜନ୍ମ ସମ୍ପର୍କିତ କଳଙ୍କଟି ମଧ୍ୟ କାଳକାଳକୁ ରହିଗଲା । ପ୍ରଖର ଜିହ୍ୱାଶାଳିନୀ ପ୍ରଚଣ୍ଡ ସ୍ୱଭାବ ବିଶିଷ୍ଟା ବିଧବା ମାତାଙ୍କ ଛତ୍ରଚ୍ଛାୟା ତଳେ ଦୁଃଖେଇ କେଉଁଭଳି ବାଲ୍ୟ, କୈଶୋର ଅତିକ୍ରମ କରି ଯୌବନରେ ପଦାର୍ପଣ କଲେ, ତାହା ସେଭଳି କୌଣସି ବିଶେଷ କଥା ନୁହେଁ । ତେବେ ଅହରହ ଜନନୀର କଡ଼ା ନଜର ତଳେ ସଙ୍ଗୀସାଥୀ ବିରହିତ ଏକ ନିଃସଙ୍ଗ ଜୀବନ ତାଙ୍କୁ ସ୍ୱାଭାବିକ ଭାବରେ ବଢ଼ିବାକୁ ଦେଇନଥିଲା । ପୁରୁଷ ହୋଇ ମଧ୍ୟ ତାଙ୍କ ଆଚରଣରେ ନାରୀ ଜନୋଚିତ ଏକ କୋମଳତା ଫୁଟିଉଠିଲା । ପାଖ ପଡ଼ୋଶୀର ଦୁଇଗୁଣଟା ଅଜାଡ଼ିଶୁଣ୍ଡ୍ର କିମ୍ବା ଅଦ୍ୟାକାଡ଼ ଶୁଣ୍ଡ୍ର ତେଣା ମେଲୁଥିବା ଯୁବକ ଏଥି ନେଇ ତାଙ୍କୁ ଏଭଳି ଥଟ୍ଟା ତାମସା କରିବାକୁ ଆରମ୍ଭ କରିଦେଲେ ଯେ, ଦୁଃଖେଇ ପୁରୁଷ ଦେଖିବା

ମାନେ ବି ଆତଙ୍କିତ ହୋଇ ପଡ଼ୁଥିଲେ । ନାରୀ ବାହିନୀର ନିଗ୍ରପଦ ବ୍ୟୁହ ମଧ୍ୟରେ ଆତ୍ମଗୋପନ କରି ସେ କ୍ରମଶଃ ଊର୍ଦ୍ଧ୍ୱାଙ୍ଗକୁ ସଦା ଆବୃତ କରି ରଖିବାର, ବକ୍ତବ୍ୟକୁ କ୍ରମଶଃ ଲମ୍ବେଇ କହିବାର ଏବଂ ବାମପାଦ ଗୁଳାଡ ଗତିରେ ବାମା-ସୁଲଭ ଏକ ଲଳିତ ଛନ୍ଦ ଫୁଟାଇବାର ସମସ୍ତ କୌଶଳ ଗୋଟିକ ପରେ ଗୋଟିଏ ଦ୍ରୁତଗତିରେ ଅଯତ୍ତ କରିବାରେ ଲାଗିଲେ । ଗୋଟିଏ ପଟରୁ ଆକର୍ଷଣ ଯେତିକି କଟି କଟି ଯାଉଥିଲା, ଅପର ପଟର ମମତା ତାଙ୍କୁ ଠିକ୍ ସେତିକି ଜୋର୍‌ରେ ଭିଡ଼ି ଧରୁଥିଲା । ଦୁଃଖେଇ ଶେଷ ପଟଟିକୁ ଅଧିକ ପସନ୍ଦ କଲେ ।

ଘର ଲିପା, ଝୋଟିଦିଆ, ମସଲବଟା, ଗାଈ ଦୁହାଁ ପ୍ରଭୃତିକୁ ସମ୍ବଳ କରି ସେ ନିଜର କର୍ମମୟ ଜୀବନ ଆରମ୍ଭ କଲେ । ଦଶହରା, ମାଣବସା ଇତ୍ୟାଦିରେ ତାଙ୍କ ଘରର କାନ୍ଥବାଡ଼ ସବୁ ଅରୁଆ ଚାଉଳ ପିଠୋଉ ପାଣି ଚର୍ଚ୍ଚିତ ଛାଉ ରଙ୍ଗର ପତ୍ରପୁଷ୍ପ ସମନ୍ୱିତ ଶିଳ୍ପ କର୍ମରେ ଚହଟି ଉଠିଲା । କାରଣ ଅକାରଣରେ ତାଙ୍କ କଣ୍ଠରୁ ପଞ୍ଚମ ରାଗ ସମନ୍ୱିତ ଯେଉଁ ହୁଳହୁଳି ଧ୍ୱନି ଉତ୍ଥିତ ହେଉଥିଲା, ତାହା ଗ୍ରାମର ସମସ୍ତ ପଞ୍ଚିସୁସୀ ମହିଳାମାନଙ୍କୁ ଲଜ୍ଜାଦେବା ନିମନ୍ତେ ପର୍ଯ୍ୟାପ୍ତ ଥିଲା ! ଆଉ ଥିଲା ବାହୁନା । ସାମନ୍ତବାଦର ସେଇ ଅବକ୍ଷୟୀ କାଳରେ ଏହି ବିଶେଷ କର୍ମଟି ନାରୀ ଜନୋଚିତ ଉଚ୍ଚ ଶିଳ୍ପକର୍ମର ପର୍ଯ୍ୟାୟବାଚୀ ଥିଲା । ବିବାହ, ମୃତ୍ୟୁ, ମିଳନ, ବିଚ୍ଛେଦ—ପ୍ରତ୍ୟେକ କ୍ଷେତ୍ରରେ ଏହାର ପ୍ରୟୋଗ ଥିଲା ଅବଶ୍ୟମ୍ଭାବୀ । ଦୁଃଖେଇ ପୁଣି ଯେତେବେଳେ ଏଥିରେ ଅଂଶଗ୍ରହଣ କରି ଷଡ଼ଜ ରାଗିଣୀରେ "ମୋତେ ପର ବୋଲି ଭାବିବ ନାହିଁ ଲୋ, ବୋଉ, ଖୁଡ଼ି, ବଡ଼ମା'ମାନେ ପ୍ରଭୃତି କରୁଣ ଲୁହଧୁଆ କଣ୍ଠରେ ଆବୃତ୍ତି କରାଯାଉଥିଲେ, ସେତେବେଳେ ଗଛରୁ ପତ୍ର ଝଡ଼ି ପଡ଼ୁଥିଲା । ତତ୍‌ବିଦ୍‌ମାନେ ହାସ୍ୟ ହାସ୍ୟ କରି ଉଠୁଥିଲେ ।

ଦୁଃଖେଇଙ୍କର ମାଇଚିଆ ଅପବାଦ କିନ୍ତୁ ଏହାଦ୍ୱାରା କଟୁନଥିଲା । ତାଙ୍କ ମୁହଁ ଗୁହିଁ କୌଣସି କାର୍ଯ୍ୟରେ ପ୍ରବୃତ୍ତ ହେବାକୁ ନିତାନ୍ତ ଅମଙ୍ଗଳକର ବୋଲି ମନେ ହେଉଥିଲା । ତେଣୁ ସମସ୍ତ ପ୍ରକାରର ଶୁଭକାମରୁ ତାଙ୍କୁ ଇଚ୍ଛାକୃତ ଭାବରେ ବାଦ୍ ଦିଆ ଯାଉଥିଲା । ଦୁଃଖେଇ ଏ ସମସ୍ତ ଜାଣୁଥିଲେ, ତଥାପି ବଞ୍ଚିଥିବା ବିଧବା ଜନନୀଙ୍କର ଏହି କାରଣରୁ ଅଣ୍ଟାଭିଡ଼ି ପ୍ରତିପକ୍ଷ ସହିତ ଠିଆ ପାଲାରେ ମଚ୍ଛିଯିବା ଦୃଶ୍ୟ ନିସ୍ପୃହ ଭାବରେ ଦେଖୁଥିଲେ । ମାତ୍ର ଏଥିରେ ତାଙ୍କର କହିବାର କିଛି ନଥିଲା ।

ଏମିତି ହୁଏତ ତାଙ୍କର ଜୀବନଟା କଟି ଯାଇଥାନ୍ତା । ମାଇଚିଆ, ମାଇଗୁଲିଆ, ଅମଙ୍ଗୁଳିଆ ଇତ୍ୟାଦି ବିଶେଷଣଗୁଡ଼ିକୁ ସାଙ୍ଗରେ ଧରି ଦୁଃଖେଇ ହୁଏତ ପରପାରିକୁ ଯାତ୍ରା କରି ଥାଆନ୍ତେ । ମାତ୍ର ଜୀବନ ତ ଏତେ ସ୍ରୋତ ନୁହେଁ । ଦୁଃଖେଇଙ୍କୁ ଯେ ଇତିହାସ ସୃଷ୍ଟି କରିବାକୁ ହେବ !

ଅଗ୍ଭନକ ଦୁଃଖେଇଙ୍କ ଜୀବନ ଏକ ନୂଆ ମୋଡ଼ ନେଲା । ଗଡ଼ ନଈଲେର ଗ୍ରାମୁ-କରଣ ରଙ୍ଗାଧର ମହାନ୍ତି ଦୁଃଖେଇ ଜନନୀଙ୍କ ସହିତ ସାକ୍ଷାତ୍ କରିବାକୁ ଆସିଲେ । ଦେଶରେ ତଥାପି ନୀଳ ରକ୍ତ ବିଶିଷ୍ଟ ଯେଉଁ କେତୋଟି କ୍ଷୟିଷ୍ଣୁ ପରିବାର ମୂଲ୍ୟବୋଧକୁ ଜାବୁଡ଼ି ଧରି ପଳାୟମାନ ପରମ୍ପରାର ଅନ୍ଧ ସମର୍ଥକ ଥିଲେ ଗଡ଼ ନଈଲେର ରାଜା ଧୀରେନ୍ଦ୍ର ନାରାୟଣ ସବ୍ଦାମନ ଚୌଧୁରୀ ତନ୍ମଧ୍ୟରୁ ଏକତମ । ଇଂରେଜୀ ଅମଳର ବାପ ପାଇଥିଲେ ନାଇଟ୍ ହୁଡ୍ । ଆଉ ରାଜା ତ କେଇ ପୁରୁଷର । ସାରା ଜିଲ୍ଲା ମଧ୍ୟରେ ବିସ୍ତୃତ ଥିଲା ଜମିଦାରୀ । ପ୍ରଥାଟା ଏବେ ଉଠିଗଲେ ମଧ୍ୟ ଆଇନର ଅନ୍ଧଗଳି ଭିତରେ ପୁଣି କ୍ଷମତାର ଜୋର୍‌ରେ ଏବେସୁଦ୍ଧା ଏଠିସେଠି ଯାହା ପଡ଼ିରହିଛି, ତା'ର ମୂଲ୍ୟ ନିହାତି କମ୍ ନୁହେଁ । ଗଡ଼ ନଈଲେର ଲଖିରାଜ ବାହେଲର ମୂଲ୍ୟ ତ କେବଳ ବର୍ତ୍ତମାନ ଜରସମନ୍‌ରେ ଲକ୍ଷ ଛୁଇଁବ ।

ଯୌବନରେ ଅମିତ କ୍ଷମତାଶାଳୀ ଧୀରେନ୍ଦ୍ର ନାରାୟଣ ଯେଉଁସବୁ ସାମନ୍ତସୁଲଭ ଅନାଚାରରେ ମାତି ରହିଥିଲେ, ତା'ର ମୂଲ୍ୟ ଏଇ ଏବେ ଦେବାକୁ ପଡ଼ୁଛି । କୋଉଠୁ କେଜାଣି କେଉଁଦିନ ହେବ ଯାଇଥିବା ବ୍ୟଥା ଅସି ତାଙ୍କର ନିତ୍ୟକାଳର ସଙ୍ଗୀ ହୋଇ ସେଇ ଯେ ରହିଯାଇଛି, ଛାଡ଼ିବାର ନାମ ନାହିଁ । ଧୀରେନ୍ଦ୍ର ଚୌଧୁରୀ ବଡ଼ଜୋର ତେଲ ଚକଟା ଆର୍ମ ଚେୟାର ଛାଡ଼ି ଦୁଇ ଚାରି ପାହୁଣ୍ଡ ଠୁକ୍ ଠୁକ୍ କରି ବୁଲନ୍ତି ଏବଂ ପୁଣି ଲେଉଟି ଆସି ଧମ୍ କରି ଆର୍ମ ଚେୟାର କୋଳରେ ଢଳି ପଡ଼ନ୍ତି ।

ଯୁବରାଜ ମଣିମା ରମେନ୍ଦ୍ର ନାରାୟଣ ନୀଳ ରକ୍ତକୁ ଲାଲରକ୍ତରେ ରୂପାନ୍ତରିତ କରିବାର ପ୍ରଥମ ପଦକ୍ଷେପ ସ୍ୱରୂପ କେଉଁ ଗୋଟାଏ ପ୍ରାଇଭେଟ୍ କଲେଜରେ ଲେକ୍‌ଚରର୍ ହୋଇ ଯୋଗ ଦେଇଥିଲେ । ଗଡ଼ଜାତ ଅଞ୍ଚଳର ଗଛ ମାଛ ବଣ ପର୍ବତ ଦେଖି ବାରମ୍ବାର ଉଚ୍ଛ୍ୱସିତ ହୋଇପଡ଼ି 'ହାଉ ଲଭଲି' ସୁପର୍ବ, 'ବିଉଟିଫୁଲ' ପ୍ରଭୃତି କେତୋଟା ଶବ୍ଦ ବ୍ୟବହାର କରିବା ତାଙ୍କର ପ୍ରାୟ ଗୋଟାଏ ମୁଦ୍ରା ଦୋଷ ହୋଇ ଯାଇଥିଲା । ଯେଉଁଠି ସେଠି କାନ୍‌ଭାସ୍ ମେଲାଇ ଦେଇ ଲ୍ୟାଣ୍ଡସ୍କେପ ଅଙ୍କିବା ଥିଲା ତାଙ୍କର ଅନ୍ୟ ଏକ ବିଳାସ । ଡାଳ, କୁଲ ଇତ୍ୟାଦିରେ ବାଉଁଶ କଣିର ଗୋଡ଼ ଫିଟ୍ କରାଇ ସେ ସବୁକୁ ସେ ସେଣ୍ଟର ଟେବୁଲରେ ରୂପାନ୍ତରିତ କରୁଥିଲେ ଏବଂ ନିଜର ଶିଳ୍ପୀ ସୁଲଭ ଉଦ୍ଭାବନ ଶକ୍ତିର ଚମତ୍କାରିତାରେ ଆପେ ମୁଗ୍ଧ ହୋଇ ରହୁଥିଲେ । ଏହା ବାହାରେ ଥିଲା ତାଙ୍କର ପାର୍ଟି, ପିକ୍‌ନିକ୍, ଫଟୋ-ଗ୍ରାଫି ଇତ୍ୟାଦିର ଜଗତ । ଏତେସବୁ ଝାମେଲା ତୁଟାଇ ଜନ୍ମଦାତାଙ୍କ ସମ୍ପର୍କରେ କୌଣସି ଖବରାଖବର ରଖିବା ତାଙ୍କ ପକ୍ଷରେ ମୋଟେ ସମ୍ଭବପର ନଥିଲା ।

ରାଣୀମା ରତ୍ନମଞ୍ଜରୀଙ୍କର ସ୍ୱର୍ଗବାସ ହୋଇଯିବା ପରଠାରୁ ରାଜାସାହେବ ସମ୍ପୂର୍ଣ୍ଣ ଏକାକୀ ହୋଇ ପଡ଼ିଥିଲେ । ତାଙ୍କର ପୁଅ ଥିଲା, ପରିବାରରେ ହୁଏତ ଆଉ କେହି କେହି ଥିଲେ, ମାତ୍ର ସଂସାର ନଥିଲା । ଦୀର୍ଘ କାଳର ଚୌର୍ଯ୍ୟ ଆଉ ଅପହରଣ ଦ୍ୱାରା ଯେଉଁ ବିଶାଳ

ସମ୍ପତ୍ତି ଠୂଳ ହୋଇ ଯାଇଥିଲା, ତାହାର ଅନେକ ଅଂଶ ହାତଛଡ଼ା ହୋଇ ଯାଇଥିଲେ ହେଁ ଯାହା ରହି ଯାଇଥିଲା, ତା'ର ପରିମାଣ ସୁଦ୍ଧା ନିତାନ୍ତ କମ୍ ନୁହେଁ । ସମ୍ପତ୍ତି ଥିଲେ ମାଲ୍-ମକଦ୍ଦମା, ଦଙ୍ଗାହେଙ୍ଗାମ୍ । କଥାରେ କହନ୍ତି 'ମାଟି ବାପର ନୁହେଁ, ତା' ପର' । ମୁହଁ ଜୋର୍‌ରେ ଚୌଧୁରୀବଂଶୀୟମାନେ ଯେଉଁ ରାଜ୍ୟ ଚଳାଇ ଆସିଥିଲେ, ଧୀରେନ୍ଦ୍ର ନାରାୟଣଙ୍କର ସେତିକ ମଧ୍ୟ ନଥିଲା । ବିଭିନ୍ନ କୋର୍ଟରେ ତେଣୁ କେଇଟା କେସ୍ ସର୍ବଦା ଝୁଲୁଥିଲା । ତାକୁ ଦେଖାଶୁଣା କରୁଥିଲେ, ତଥାପି ରହି ଯାଇଥିବା ଖୁମୁକରଣ ରଙ୍ଗାଧର ମହାନ୍ତିଏ, ବେଳେ-ବେଳେ ସେ କାଗଜର ଦଲିଲ ଦସ୍ତାବିଜର ବୋଝ ଜାକି ରାଜାସାହେବଙ୍କ ପାଖକୁ ଆସନ୍ତି । କେସର ଅବସ୍ଥା ସମ୍ପର୍କରେ କଣ କଣ ସବୁ ବୁଝାନ୍ତି । ବସ୍ତାନି ମେଲାଇ ଏଠି ସେଠି ରାଜା-ସାହେବଙ୍କର ଦସ୍ତଖତ ନିଅନ୍ତି । ତା'ପରେ ସେ ଚାଲିଗଲା ପରେ ରାଜାସାହେବ ପୁଣି ଏକା ହୋଇଯାଆନ୍ତି । ଶୂନ୍ୟ ଦୃଷ୍ଟିରେ ଛାତର କଡ଼ି ବରଗାର ହିସାବ କଷିବାକୁ ଆରମ୍ଭ କରି ଦିଅନ୍ତି । ବେଳେବେଳେ ତାଙ୍କ ଆଖିରେ ପଡ଼େ, ସେକେଣ୍ଡ ହାଣ୍ଡ ଏକ ସ୍କୁଟର୍ ଉପରେ ସବାର ହୋଇ ହାତିଗୋଡ଼ିଆ ବେଲ୍ ବଟମ୍ ଉପରେ ରଙ୍ଗ ବେରଙ୍ଗର ଛପା ବୁସ୍ ସାର୍ଟ ଚଢ଼ାଇ ଯୁବରାଜ ରମେନ୍ଦ୍ର କୁଆଡ଼େ ପ୍ରମୋଦ ଭ୍ରମଣରେ ବାହାରି ଯାଉଛନ୍ତି । ଧୀରେନ୍ଦ୍ରଙ୍କ ଦାଦେଇ ସା'ନ୍ତ ପ୍ରଖରେନ୍ଦ୍ର ହାତୀ ପିଠିରେ ଚଢ଼ି ହାଓ। ଖାଇବାକୁ ଯାଉଥିଲେ । ଖୋଦ୍ ଧୀରେନ୍ଦ୍ର ଚଢ଼ିଲେ ରୋଲସ୍ ରଏସ୍, ଆଉ ରମେନ୍ଦ୍ର ବେଳକୁ ଗୋଟାଏ ଧଡ଼୍‌ଧଡ଼ି ସେକେଣ୍ଡ ହାଣ୍ଡ ଲମ୍ବ୍ରେଟା ! କାଳର କୁଟିଳ ଗତି ।

'ରମେନ୍ଦ୍ର ତିରିଶ ପାରିହୋଇ ଗଲେଣି । ଏ ପର୍ଯ୍ୟନ୍ତ ତାଙ୍କର ମଙ୍ଗଳକୃତ୍ୟ ବଢ଼ିଲା ନାହିଁ । ଧୀରେନ୍ଦ୍ରଙ୍କର ବର୍ତ୍ତମାନ କେବଳ ସେଇ ଗୋଟିଏ ଚିନ୍ତା ।

ରଙ୍ଗାଧର ସୋଦସ୍ୱୀ ଦେଈଙ୍କୁ ବୁଝାଉଥିଲେ, "କାମ ଭିତରେ ତ ବୁଢ଼ାର ଏଣୁ ତେଣୁ ଦି' ଚାରିଟା ଫରମାଏସି ଜଗିବା, ଭାତଟା, ପାଣିଟା ହାତ ପାଖକୁ ଆଗେଇ ଦବା, ତା' ବା କେତେ ସମୟ ପାଇଁ ? ତା'ପରେ ଦୁଃଖୀ ତାର ମନ ଖୁସିରେ ଖେଳୁଥାଉ, ବୁଲୁଥାଉ, କିଏ ପଚାରୁଛି ? କିଏ ଦେଖୁଛି ?"

ଯୋଦସ୍ୱୀ ତଥାପି ମନ ସ୍ଥିର କରିପାରୁ ନଥିଲେ । ରାଜକର ସମ୍ବନ୍ଧୀୟ ଯେଉଁ ଲୋଭନୀୟ ଚିତ୍ର ରଙ୍ଗାଧର ତାଙ୍କ ଆଖି ଆଗରେ ଆଙ୍କିଥିଲେ, ସେଥିରେ ସତ କେତେ ମିଛ କେତେ, ଏହା ସେ ମୋଟେ ଧାରଣା କରିପାରୁ ନଥିଲେ ।

କେଉଁ ଏକ ଗ୍ରାମ୍ୟ ବ୍ୟାଙ୍କରେ ପିଅନ ଚାକିରିରେ ମୁକରର୍ ହୋଇ ଧୀରେନ୍ଦ୍ରଙ୍କର ଖାସ୍ ବେହେରା ନରୋତ୍ତମ ଆପଣାର ବାଟ କାଟିବା ଦିନୁ ଧୀରେନ୍ଦ୍ର ବଡ଼ ଅସହାୟ ହୋଇ ପଡ଼ିଥିଲେ । ତାଙ୍କର ଲୁହା ସେଫ୍‌ରୁ ଯେଉଁ ହଜାରେ ଟଙ୍କା ମାରିନେଇ ନରୋତ୍ତମ ଠିକଣା ଜାଗାରେ ସେତିକ ଭେଟି ଦେଇ ନିଜ ପାଇଁ ଏ ଚାକିରି ଖଣ୍ଡିକ ଯୋଗାଡ଼ କରିଥିଲେ, ସେଥିପାଇଁ ଧୀରେନ୍ଦ୍ରଙ୍କର କୌଣସି ଖେଦ ନଥିଲା । ସେଇ ଶୂନ୍ୟ ମହଲରେ ନିସ୍ତରଙ୍ଗ

ସମସ୍ତର ତୀକ୍ଷ୍ଣ ଦନ୍ତ, ତାଙ୍କ ଗୃହଅଡ଼ୁ ଯେପରି ଗ୍ରାସ କରିବାକୁ ଆସୁଥିଲା, ସେଥିରେ ସେ ରୁଦ୍ଧଶ୍ୱାସ ହୋଇଯାଉଥିଲେ । କାହା ସାଙ୍ଗରେ ପଦେ କଥା କହିବାକୁ ତାଙ୍କର ପ୍ରାଣ ବ୍ୟାକୁଳ ହୋଇ ଉଠୁଥିଲା । ମାତ୍ର ସେ କରିବେ କ'ଣ ?

ରଙ୍ଗାଧର ଏହି ସମୟରେ ହିଁ ଦୁଃଖେଇଙ୍କ ବିଷୟରେ ଭାବିବାକୁ ଆରମ୍ଭ କରିଥିଲେ । ଖାଇପିଇ ବଢ଼ିଥିବା ଅନନ୍ତା ବେଶ୍ ଟେହେଲ ଦେଖେଇ ବୁଲୁଚି ! ଗୁଡ ଉପରେ ସଦାବେଳେ ଖଣ୍ଡିଏ ଚଉଳଆ—ଦହି ଖୋଲି ରଖିଲେ କୁଆଡ଼େ ତାକୁ ଘାରି ଲଜମାଡ଼େ ! ହୁଃ—ହ୍ୟାପ ମାଇଚିଆ—

ରଙ୍ଗାଧର ବୁଝାଉଥିଲେ, ହେଇଟି ଦେଖ୍ ଝିଅ ! ପୁଅ ବଡ଼ହେଲେ ହନେ ନା ହନେ ତ ପୁଣି ଗୁଜରି କରିବାକୁ ଯାଇଥାନ୍ତା—ନା ତୋର ବଳବଅସ ଅସୁଚି, ଦହି ମିହିନ୍ତ କରି କାଳ କାଳକୁ ତାକୁ ପୋଷିବୁ ? ଓ ହୋ—ନାହିଁ ନାହିଁ କାଲିପରି ପୁଅକୁ ବାହା ଦବୁ (କାହାର ଝିଅ ପଚାସଢ଼ି ଯାଉଚି, ଏ ମାଇଚିଆ ହାତରେ ଦବାକୁ ?) ନାତି ନାତୁଣୀ ହେବେ—ତାଙ୍କୁ ଖୁଆଇବୁ କଣ ? କଥାରେ କହନ୍ତିପରା, "ବସି ଖାଇଲେ ନଇ ବାଲି ସରେ ।"

ଗୋପନ ଇଚ୍ଛାର ଏକ ପ୍ରତୀକ୍ଷାଭୂତ ବର୍ଣ୍ଣନା ସୋଦଗ୍ଧଙ୍କ ଆଖିକୁ ଲୋତକପୂର୍ଣ୍ଣ କରିଦେଲା । ରଙ୍ଗାଧର ସୁଯୋଗ ବୁଝି ପୁଣି କମାଣ ଦାଗିଲେ, "ତୋ ହାତରେ ମହାପ୍ରସାଦ ଦେଇ ମୁଁ ତତେ ଝିଅ କରିଚି । ମୋ କଥା ମାନ, ଦୁଃଖୀକୁ ମୋ ସାଙ୍ଗରେ ବଣେଇ ଦେ । କପାଳରେ ଥିଲେ ସେ ମଣିଷ ହେଇଯିବ ଲୋ—ହାତୀ ମଲେ ଲକ୍ଷେ ଟଙ୍କା । ଦୁଃଖେଇ ଅଗତ୍ୟା ଅସିଲେ ।

ସିନ୍ଦୁର ଚର୍ଚ୍ଚିତ, ପୀତ ନଳବସ୍ତ୍ର ସମନ୍ୱିତ, ଆସ୍କନ୍ଧ ଲମ୍ବିତ କେଶଦାମ ମଣ୍ଡିତ ତାଙ୍କର ସେଇ ଅପୂର୍ବ ମୂର୍ତ୍ତିଆଡ଼େ କିଛିକ୍ଷଣ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ ରହିବା ପରେ ଧୀରେନ୍ଦ୍ର କହିଥିଲେ, 'କାହା ହୁକୁମ୍‌ରେ ଏ ଯାତ୍ରା ଟୋକାକୁ ତମେ ଏଠିକି ଆଣିଚ ?'

ହୁକୁମ୍ ଅଉ କିଏ ଦିଅନ୍ତା ? ଧୀରେନ୍ଦ୍ର କଣ ଭୁଲି ଯାଉଛନ୍ତି ଯେ, ହୁକୁମ୍ ଅଉ ହାକମୀର ଯୁଗ ସେ ଅନେକ ପଛରେ ଛାଡ଼ି ଆସିଛନ୍ତି ବୋଲି ? ବାଁ ହାତରେ ମୁଣ୍ଡ କୁଣ୍ଡାଉ କୁଣ୍ଡାଉ ରଙ୍ଗାଧର ମହାନ୍ତି କିଛି ଅତି ବିନୀତ ଭାବରେ କହିଥିଲେ, "ଟୋକାଟାର ବିଧବା ମା' ଯେତେବେଳେ ବାରମ୍ବାର ତା' ପାଇଁ ଗୋଟାଏ କିଛି କରିଦେବାକୁ ମୋତେ ଧରି ପଡ଼ିଲା, ସେତେବେଳେ ମୁଁ ଭାବିଲି,

"ରଖେ କିଏ ନା ଧୀରେନ୍ଦ୍ର ରିଏ
ମାରେ କିଏ ନା ଧୀରେନ୍ଦ୍ର ରିଏ"—

ଟୋକାଟାକୁ ଆଣି ଗୁମୁଙ୍କ ଚରଣ ତଳେ ଫୋପାଡ଼ି ଦେଲି ହଜୁର । ତାରିଲେ ତାରନ୍ତୁ—ମାରିଲେ ମାରନ୍ତୁ ।"

ପରିସ୍ଥିତିର ବିସଦୃଶତା ଭିତରେ ଭିତରେ ଦୁଃଖେଇଙ୍କୁ ଉତ୍ତେଜିତ କରୁଥିଲା । ସରସ୍ୱତୀଙ୍କ କୃପାରୁ ତାଙ୍କ ଜିହ୍ୱାଗ୍ରରେ ସର୍ବଦା ଏଭଳି ଦୁଇ/ଚାରିଟି ଗ୍ରାମ୍ୟ ଶବ୍ଦ ବିରାଜମାନ କରୁଥିଲା, ଯାହାର ପ୍ରୟୋଗ ନିମନ୍ତେ ପ୍ରଚଣ୍ଡ ଜିହ୍ୱାଧାରିଣୀ ଗ୍ରାମ୍ୟ ଲଳନାମାନେ ମଧ୍ୟ ମୁହୂର୍ତ୍ତେ ଇତସ୍ତତଃ କରିବେ । ସେଥିରୁ ଗୋଟିଏ ଦୁଇଟା ଝାଡ଼ିଦେବା ନିମନ୍ତେ ପ୍ରସ୍ତୁତ ହୋଇ ସେ ଫଣା ଟେକୁଥିଲେ । ତାଙ୍କର ମନେ ପଡ଼ିଗଲା, ସୋଦରୀଙ୍କ ବିଦାୟକାଳୀନ ଉପଦେଶ, "ତ୍ରମୁଙ୍କ ଆଗରେ କିଛି ବେହେଡ଼ ପଣ କରିବୁ ନାହିଁ ।"

ଦୁଃଖେଇ ଆତ୍ମସମ୍ବରଣ କରିନେଲେ । ଏକ ପିତୃହରା ତରୁଣଟିର ମମତାଭରା ମୁଖ-ମଣ୍ଡଳ ଆଡ଼େ ଚାହିଁ ରାଜାସାହେବଙ୍କ ମନ ଏକ ଅଜ୍ଞାତ କୋମଳତାରେ ଭରି ଯାଉଥିଲା । ବିପଦ ଆପଦରେ କାଳେ କାଳେ ତ ଲୋକେ ଆସି ଏହି ଦୁଆରେ ଠିଆ ହୋଇଛନ୍ତି । କେମିତି ସେ ଆଜି ଖାଲି ହାତରେ ଫେରାଇ ଦେବେ ? ଗୋଟାଏ ଲୋକ ରହିଲେ କେତେ ବା ଖର୍ଚ୍ଚ ବଢ଼ିଯିବ ?

ଦୁଃଖେଇ ରାଜଘରରେ ମୁଜରେର୍ ହୋଇ ପକ୍କାପକ୍କି ଭାବରେ ଉଆସରେ ରହିଗଲେ ।

ଯକ୍ଷପୁରୀ ଭଳି ସେଇ ପଟଣୋଦ୍ୟାନ ସ୍ତବ୍ଧ ଅର୍ଦ୍ଧଭଗ୍ନ ଉଆସ, ଜନମାନବଶୂନ୍ୟ ନିର୍ଜନ ପରିବେଶ ଆଉ ସଦାଗମ୍ଭୀର ଏକ ପଙ୍ଗୁବୃଦ୍ଧର ନିତ୍ୟ ସାନ୍ନିଧ୍ୟ, ପ୍ରଥମେ ପ୍ରଥମେ ଦୁଃଖେଇଙ୍କୁ ଅସ୍ୱସ୍ତିକର ମନେ ହେଉଥିଲା । ବିଶେଷକରି ପୂର୍ବ ଆଶ୍ରମରେ ସେ ଯେଉଁ କଳା କୌଶଳ ନିମନ୍ତେ ଉଚ୍ଛ୍ୱସିତ ଭାବରେ ପ୍ରଶଂସିତ ହେଉଥିଲେ. ଏଠାରେ ତାହାର ସମଝଦାର କେହି ନଥିଲେ । ଉଆସ ଭିତରପ୍ରସ୍ଥରେ ଲୋକ ବୋଲି କହିଲେ, ସଦା ବିରକ୍ତ ପୌଢ଼ ପୂଜାରୀ ଆନନ୍ଦ ପଣ୍ଡା । ସେ ପୁଣି ଥେଣ୍ଟ କାଲା । ଆଖିକି ଗୁଳଣା ଧରିଲାଣି । ଦୁଇହାତର ଜିନିଷ ମଧ୍ୟ ସ୍ପଷ୍ଟ ଦେଖିପାରେନା । ଦୁଃଖେଇଙ୍କର ନିତ୍ୟ ନବ ନବ ଛଇଛଟକର ମୂଲ୍ୟ ଦେବାର ଅବସର ତା'ର ନାହିଁ ?

ଫାଟକ ପାଖକୁ ଆସିଲେ ସୁଦ୍ଧା ଦୁଃଖେଇଙ୍କର ସ୍ୱସ୍ତି ନଥିଲା । କେତେଟା ଲମ୍ବା-କଲିଆ, ଅଧାପାଠୁଆ ଟୋକା ସଦାବେଳେ ସମ୍ମୁଖସ୍ଥ ପୋଲ ଉପରେ ବସି ସିଗାରେଟ୍ ଫୁଙ୍କୁଥାନ୍ତି । ଦୁଃଖେଇଙ୍କୁ ଦେଖିବା ମାତ୍ରେ ସେମାନେ ଅତ୍ୟନ୍ତ ଉଲ୍ଲସିତ ହୋଇଉଠନ୍ତି । ଧୀରେନ୍ଦ୍ରଙ୍କ ସହିତ ଦୁଃଖେଇଙ୍କର ସମ୍ପର୍କକୁ 'ଘ'କାର ଆଦ୍ୟ ଗୋଟିଏ ବିଶେଷ ଗ୍ରାମ୍ୟ ଶବ୍ଦ ଦ୍ୱାରା ଚିହ୍ନିତ କରିଦେଇ, ସେମାନେ ତାଙ୍କର କୁଶଳ ଜିଜ୍ଞାସା କରନ୍ତି । ଦୁଃଖେଇଙ୍କର କାନମୂଳ ଲାଲ୍ ହୋଇଯାଏ । ସେ ଠୋ ଠୋ ହସର ବାତ୍ୟାରେ ସତେ ଯେମିତି ପୁଣି ଅନ୍ଦର ମହଲକୁ ଉଡ଼ିଯାଆନ୍ତି ।

ଦୁଃଖେଇ ବୁଝିଲେ, ଏଠାରେ ରହିବାକୁ ହେଲେ ବାହାରର ମାୟା ତାଙ୍କୁ କଟାଇବାକୁ ପଡ଼ିବ । ଘରେ ରହିଲେ ପୁଣି ରାଜାସାହେବଙ୍କ ପାଖରୁ ଦୂରେଇ ଯିବା ଅସମ୍ଭବ । ତେଣୁ ସେ ଧୀରେନ୍ଦ୍ରଙ୍କ ନିକଟବର୍ତ୍ତୀ ହେବାକୁ ଲାଗିଲେ । ଅହରହ ପାଖରେ

ରହିଲେ ଭସ୍ମଭ୍ରାନ୍ତ ଅନେକଟା ଦୂର ହୋଇଯାଏ । ଦୁଃଖେଇ ମଧ୍ୟ ଦେବେନ୍ଦ୍ରଙ୍କ ନିକଟରେ କ୍ରମଶଃ ସହଜ ହେବାକୁ ଆରମ୍ଭ କଲେ ।

ଲମ୍ବା ଚେଲଚକଟା ଆର୍ମଚେୟାର୍ ଖଣ୍ଡକରେ ପଡ଼ି ଅର୍ଦ୍ଧନିମୀଳିତ ନେତ୍ରରେ ଦେବେନ୍ଦ୍ର ଯେତେବେଳେ ସିଗାରେଟ୍‌ଟାଏ କାମୁଡ଼ି ଆକାଶ ପାତାଳ ଭାବୁଥାଆନ୍ତି ଏବଂ କଳା କଳା ଧୂଆଁର କୁଣ୍ଡଳୀ ମଧ୍ୟରେ କେଉଁ ଏକ ଭୟଙ୍କର ଭବିଷ୍ୟତ ଦର୍ଶନର ଶଙ୍କାରେ ଶିହରିତ ହୋଇଯାଉଥାଆନ୍ତି । ପାଦ ପାଖରେ ନଇଁପଡ଼ି ଦୁଃଖେଇ ଯେତେବେଳେ ରାଜବୈଦ୍ୟ ଧନ୍ୱନ୍ତରୀ ଷଡ଼ଙ୍ଗୀଙ୍କ ପ୍ରଦତ୍ତ ଗୋଟାଏ କଟୁ ଗନ୍ଧଯୁକ୍ତ ତେଲ ଦେବେନ୍ଦ୍ରଙ୍କ ପାଦରେ ମାଲିସ୍ କରୁଥାଆନ୍ତି କିମ୍ବା ବାନ୍ଧବସ୍ଥାନ ସୁଖରେ ଦେବେନ୍ଦ୍ର ଯେତେବେଳେ ଡାଇନିଂ ଟେବୁଲର ଗୋଟିଏ ଅଂଶରେ ବସି ବ୍ରେକ୍ ଫାଷ୍ଟ, ଲଞ୍ଚ କିମ୍ବା ଡ଼ିନର୍ ସାରୁଥାଆନ୍ତି, ଯେତେବେଳେ ବଗିଚାରୁ ଅଣାଯାଇଥିବା ପାଚିଲା ସବୁ କଦଳୀରୁ ଚୋପା ଛଡ଼ାଇ ଦୁଧରେ ଦିଲ ପ୍ଲେଟ୍‌ଟା ହିକାସାହେବଙ୍କ ଆଡ଼କୁ ଅଗେଇଦେବା କିମ୍ବା ଦହି ପ୍ଲେଟ୍‌ରେ ଚିନି ପକାଇ ଷ୍ଟମଚରେ ତାକୁ ଗୋଳାଇଦେବା ପ୍ରଭୃତି କେତେଟା କାର୍ଯ୍ୟରେ ଦୁଃଖେଇ ପ୍ରାୟ ବ୍ୟସ୍ତ ଥାଆନ୍ତି । ବାକ୍‌ରନୋପଟୁ ଦୁଃଖେଇ ଏହି ସମୟ ମାନଙ୍କରେ ପୁଣି ସଂସାରର ଯାବତୀୟ ଖବର ହିକାସାହେବଙ୍କର କର୍ଣ୍ଣଗୋଚର କରାଇ ଥାଆନ୍ତି । ଏଥିରେ ଉଆସ ଗୋ-ଶାଳାରେ ସଦ୍ୟପ୍ରସୂତ ହୋଇଥିବା କପିଁ ଗାଈଠାରୁ ଆରମ୍ଭକରି ସଦର—ଭୂମିକରଣ ରଙ୍ଗାଧର ମହାନ୍ତିଙ୍କର ସ୍ୱାର୍ଥପର କୁଞ୍ଚକତା ପ୍ରଭୃତି ବହୁ ବିଚିତ୍ର ଭିନ୍ନଧର୍ମୀ ସମ୍ବାଦ ସବୁ ଥାଏ । ଦେବେନ୍ଦ୍ର ଶୁଣନ୍ତି, କେତେବେଳେ ଏକାଧିକ ବିଶିଷ୍ଟ ଉତ୍ତରଟିଏ ଦିଅନ୍ତି, ଅଧିକାଂଶ ସମୟରେ ନୀରବ ରହି ଥାଆନ୍ତି ।

ତଥାପି ଦୁଃଖେଇ ହତୋତ୍ସାହିତ ହୁଅନ୍ତି ନାହିଁ । ଦେବେନ୍ଦ୍ରଙ୍କର ଘଟଣାସ୍ଥଳ ଜୀବନରେ ଦୁଃଖେଇ ଯେ ନିଶ୍ଚିତ ଭାବରେ କାଏମୀ ହୋଇ ଜମିଗଲେ, ଏ କଥା ସାରା ଦିନରେ ଦେବେନ୍ଦ୍ରଙ୍କ କଣ୍ଠର 'ଦୁଃଖୀ ! ଦୁଃଖେଇ, ଆବେ ଦୁଃଖୀ ହାରାମ୍‌ଜାଦା' ପ୍ରଭୃତିର ବାରମ୍ବାର ଉଚ୍ଚାରଣରୁ ଜଣାପଡ଼ି ଯାଉଥିଲା ।

ଯେଉଁମାନେ ନିଜର ବକ୍ତବ୍ୟକୁ ସ୍ପଷ୍ଟ ଭାବରେ ବୁଝିପାରନ୍ତି, ନିଜର ଲକ୍ଷ୍ୟ ସମ୍ପର୍କରେ ପ୍ରାୟ ନିଶ୍ଚିତ ଥାଆନ୍ତି କିମ୍ବା ପୃଥିବୀ ସମ୍ପର୍କରେ ଏକ ଚରମ ମତପୋଷଣ କରି ବସିଥାଆନ୍ତି । ସେମାନେ ପ୍ରାୟ ଅନର୍ଗଳ କଥା କହିଯାଆନ୍ତି । ଦେବେନ୍ଦ୍ରଙ୍କର ବକ୍ତବ୍ୟ ଅସ୍ପଷ୍ଟ, ଲକ୍ଷ୍ୟ ଅନିଶ୍ଚିତ ଏବଂ ପୃଥିବୀର ପରିବର୍ତ୍ତିତ ରୂପ ସମ୍ପର୍କରେ ପ୍ରାୟ ନିସ୍ପୃହ । ସଂସାର କୂପରେ ପ୍ରତିଫଳିତ ହୋଇଥିବା ଅତୀତ ସର୍ବସ୍ୱ ଜୀବନର ଏକ ଖଣ୍ଡିତ ଛାୟାକୁମାନ ହାତରେ ଧରିବା ଚିନ୍ତାରେ ଗ୍ରସ୍ତହୋଇ ବସିଥାଆନ୍ତି । କୌଣସି କିଛୁ ଧରି ରଖିବାକୁ ଗଲେ ଯେ କେବଳ ବେଦନା ବଢ଼େ, କାଞ୍ଚନ କୌଳିନ୍ୟ ସମ୍ଭୃତର ଏଇ ଅଭିନବ ଅନୁଭୂତ ତାଙ୍କର ନଥିଲା ।

ଅତୀତର ଅନେକ ଝିଲିମିଲି ଚିତ୍ର ପ୍ରାୟ ତାଙ୍କ ଆଖି ଆଗରେ ନାଚିଯାଏ । ସାତ ଆଠ ଏକର ବ୍ୟାପୀ ଚୌଧୁରୀ ଇଷ୍ଟେଟର ବିରାଟ ପ୍ରାସାଦ କମ୍ପାଉଣ୍ଡ ଭିତରେ ଇଷ୍ଟ ଦେବତା

ଅନନ୍ତ ବାସୁଦେବଙ୍କର ବିଜେମଣ୍ଡପ—ନାଟ ମନ୍ଦିର ଆଗରେ ଶ୍ୱେତହଂସ କାରଣ୍ଡକ ଶୋଭିତ କାଳ ଚକ୍ଷୁଜଳ ପୁଷ୍କରିଣୀ । ଦେଉଳରେ ପୁଣି ନହବତ୍ ଖାନା—ଚାରିଆଡ଼େ ଘେରି ବିରାଟ ବଗିଚା । ଦେଖାଶୁଣା ଅଭାବରୁ ସେଇ ବଗିଚା କ୍ରମଶଃ ପରିଣତ ହେଲା ଜଙ୍ଗଲରେ । ଅଟାନ୍ ଲଣ୍ଡ ସିଲ୍‌ ଆଇନରେ ପଡ଼ି ବାଦଭୂମିର ଅଧିକାଂଶ ପୁଣି ହାତଛଡ଼ା ହୋଇଗଲା । ତା'ପରେ ଦେଖୁ ଦେଖୁ ଚୌଧୁରୀ ପ୍ରାସାଦର ଚାରିଆଡ଼େ ଦେଖି ନେତେ ରକମର ପରବାଡ଼ି ମୁଣ୍ଡ ଟେକି ଉଠିଲା ।

ଗୋଟିଏ ପୁରୁଷରେ ରାଜା—ଅନ୍ୟ ପୁରୁଷ ଭିକାରି । ତିନି ପୁରୁଷ ଧରି ଚୌଧୁରୀ କର୍ତ୍ତାମାନେ କରିଗଲେ ସଞ୍ଚୟ । ଚତୁର୍ଥ ପୁରୁଷରେ ଅବକ୍ଷୟର ଜୀବାଣୁ ପ୍ରବେଶ କଲା ଛଦ୍ମବେଶରେ । ପ୍ରଥମ ପୁରୁଷ ରାଜାରାମ ଥିଲେ ଦେଖିବା ଭଳି ମଣିଷ । ଯୌବନରେ ମରହଟ୍ଟା ସୁବାଦାରଙ୍କ ଅଧୀନରେ ଖଜଣା ଆଦାୟ କରି ବୁଲୁଥିଲେ । ବୁଦ୍ଧି, କାର୍ଯ୍ୟଦକ୍ଷତା ଆଉ ପରିଶ୍ରମ—କୌଣସି ଦିଗରେ କମତି ନଥିଲା । ସୁବାଦାର ରାଜାରାମଙ୍କୁ ବେଶ୍ ଭଲ ପାଉଥିଲେ । ତାଙ୍କ ଉପରେ ନିର୍ଭର କରୁଥିଲେ । ସେଇ ରାଜାରାମ ଯେତେବେଳେ ତରତର କରି ଉନ୍ନତିର ସିଡ଼ିରେ ଉଠି ଯାଉଥିଲେ, ଘଟଣାଟା ସେତିକିବେଳେ ଘଟିଗଲା । ହାତୀ ପିଠିରୁ ଖସିପଡ଼ି ରାଜାରାମ ଘଞ୍ଚ ଜଙ୍ଗଲର ସେଇ ପ୍ରାନ୍ତରେ ପଡ଼ିଲେ ଯେଉଁଠି ସଦ୍ୟ ପ୍ରସୂତା ଏକ ଭଲ୍ଲୁକ ଜନନୀ ମାଧନ୍ଦନ ବିଶ୍ରାମରେ ରତଥିଲା । ଭାଲୁ ହାତରେ ପଡ଼ିଲେ କାହାରି ଜୀବନ ଯାଏ ନାହିଁ । ମାତ୍ର ଶରୀର ବୁଇଗୁଡ଼ ସ୍ଥାନରେ ବିଶେଷ କରି ମୁହଁରେ କ୍ରୁଦ୍ଧ ଭଲ୍ଲୁକ ଯେଉଁ ଥାବା ଚିହ୍ନ ପ୍ରତିବାଦର ମୋହର ରୂପେ ମାରିଦେଇଥିଲା, ତାହାର ଗୁରୁତ୍ୱ କିଛି କମ୍ ନଥିଲା ।

ଲୋକେ ଭାବିଲେ, ରାଜାରାମଙ୍କ କାଳ ଏଥର ଶେଷ ହୋଇଗଲା । କିନ୍ତୁ ନା, ସେ ତଥାପି ହାରିଗଲେ ନାହିଁ । ଜୀବନ ମରଣର ଲଢ଼େଇ ଜିତି ବର୍ଷେ ଦିନ୍ତେ ଭିତରେ ବିଛଣା ଛାଡ଼ି ଠିଆହେଲେ । ଗୋଟାଏ ଗୋଡ଼ ଜଖମ, ହାତ ମଧ୍ୟ ଦୁର୍ବଳ, ବାଁ' ଆଖିଟାରେ ଭଲ ଦେଖିପାରନ୍ତି ନାହିଁ । ଚାକିରି ଛାଡ଼ି ନଦେବାର ଉପାୟ ନଥିଲା ।

ରାଜାରାମ ଜାଣି ନଥିଲେ, ତାଙ୍କର ଭାଗ୍ୟ ସେତେବେଳକୁ ଅନୁଶୋଚନା କରୁଛି । ଯାହା ନେଇଯାଇଛି, ତାର କ୍ଷତି ପୂରଣ କରିବାକୁ ଉଦ୍ୟମ କରୁଛି ସାଧ୍ୟମତେ । ଅନ୍ଧାରକୁ ଢେଲା ମାରିବା ଭଳି, ରାଜାରାମଙ୍କ ପାଖରେ ବାକି ଯାହା ରହିଯାଇଥିଲା, ସେସବୁ ଗୋଟା ଗୋଟି କରି ବ୍ୟବସାୟରେ ଲଗାଇ କରିଦେଲେ । ଭାବିଥିଲେ ବାକି ଜୀବନଟା କୌଣସିମତେ କଟିଯିବ ।

ମାତ୍ର ଦୁଇଟା ବର୍ଷ ଭିତରେ ରାଜାରାମ ବୁଝିଗଲେ, ସେ ନଜାଣି ଟଙ୍କାର ଗଛ ପୋତିଥିଲେ । ଗଛ ଏବେ ପତ୍ର ମେଲିଲାଣି—ରାଜାରାମ ବୁଦ୍ଧିମାନ୍, ଉଦ୍ୟୋଗୀ, କର୍ମୀ ପୁରୁଷ । ଶାରୀରିକ ଅକ୍ଷମତାକୁ ସେ ଉଦ୍ୟମର ପ୍ରାଚୁର୍ଯ୍ୟ ଦେଇ ଢାଙ୍କି ଦେଉଥିଲେ । ବର୍ଷ ଚାରି ପାଞ୍ଚଟାରେ ସେ ପ୍ରଥମେ ଛୋଟ ଜମିଦାରୀଟିଏ କିଣିଲେ । ଏଣେ ଟଙ୍କାଗଛ ଦ୍ରୁତ

ଗଡ଼ରେ ବନ୍ଧ ତାଳପତ୍ର ମେଲୁଥାଏ । ରାଜାରାମ ହେଇ ଗଛତଳେ ସ୍ତ୍ରୀ-ପରିବାର ନେଇ ମହାଆନନ୍ଦରେ ଦିନ କଟାଇବାକୁ ଲାଗିଲେ ।

ପରିବାରର ସମସ୍ତେ ବୁଝିଥିଲେ, 'ସେମାନେ ଯେଉଁ ଗଛତଳେ ବସିଛନ୍ତି, ତାର ଡାଳ ହଲାଇଲେ ହିଁ ଟଙ୍କା ଗଦା ହୋଇଯାଏ । ସେମାନେ ଡାଳ ହଲାଇବା କାର୍ଯ୍ୟଟିକୁ ହିଁ ଭଲକରି ଶିଖିଲେ । ଯଦିଓ ରାଜାରାମଙ୍କର ବୁଦ୍ଧି, ଉଦ୍ୟମ କିମ୍ବା କର୍ମଦକ୍ଷତା ଦ୍ୱିତୀୟ ପୁରୁଷ ସୀତାରାମଙ୍କର ନଥିଲା, ତଥାପି ସେ ପିତୃ ଅର୍ଜିତ ଜମିଦାରୀ ଉପରେ ହାତ ଦେଇନଥିଲେ । ବରଂ ଗଡ଼ ନଗରେ ଜମିଦାରୀ କିଣି ସେଠାରେ ବିରାଟ ଉଆସ ତୋଳାଇ ରାଜୋଚିତ ଆଡ଼ମ୍ବରରେ ରହିବାକୁ ଆରମ୍ଭ କରିଥିଲେ । ସୀତାରାମ ବିଦାୟ ନେଲାବେଳକୁ ତାଙ୍କର ପୁତ୍ରମାନେ ଟଙ୍କା ଉପରେ ଗଳୁଛନ୍ତି । ଦେଖୁ ଦେଖୁ ଟଙ୍କାଗଛଟି ଶୁଖିଯିବାକୁ ଲାଗିଲା । ତାହାରେ ନାନା ମାଲିମକଦ୍ଦମା, ଲୋଅର କୋର୍ଟରୁ ହାଇକୋର୍ଟ, ସେଠୁ ପୁଣି ସୁପ୍ରିମ କୋର୍ଟ । ଘରେ ପୁଣି ଭାଇରେ ଭାଇରେ ମନୋମାଳିନ୍ୟ—ଯୁଆଡ଼କୁ ଚାହିଁଲେ ଅନ୍ତର ଶୂନ୍ୟତା—ଘଟଣା ଚରମକୁ ଉଠିଲା । ଯେଉଁଦିନ ବଡ଼ଭାଇ ସୂର୍ଯ୍ୟ ନାରାୟଣ ସାନଭାଇ ଛାତିରେ ବନ୍ଧୁକ ଚୋଷି ଗୁଳି କରିବାକୁ ଚାହାଁଲେ, ଚନ୍ଦ୍ରଧର ଦୂର ପଡ଼ିଗଲା ।

ରାଜାରାମ ଟଙ୍କାଗଛ ପୋତିଥିଲେ, ପାଞ୍ଚ ପୁରୁଷର ମୁହଁ କଳ୍ପନା କରି । ଅବକ୍ଷୟ ଆରମ୍ଭ ହୋଇଗଲା ତୃତୀୟ ପୁରୁଷରୁ । ପଞ୍ଚମ ପୁରୁଷ ଦେଖିଲେ କେବଳ 'ନେତି ନେତି'ର ବୀଭତ୍ସ ରୂପ । ଦେବେନ୍ଦ୍ର ନାରାୟଣଙ୍କ ଭାଗ୍ୟ ଦଉଡ଼ରେ ଭରି ଅଦ୍ଭୁତ, ନାଟକୀୟ କିନ୍ତୁ ସତ୍ୟ । ଦୁଃଖେଇଙ୍କର ଗୋଟାଏ ଚିତ୍କାରରେ ଦୀପେନ୍ଦ୍ର ପୁଣି ବର୍ତ୍ତମାନକୁ ଫେରିଆସନ୍ତି ।

ଆଃ—ବଡ଼ ବେଆଦବ୍ ଏଇ ଟୋକାଟା । ରାଜ ପରିବାରର ଆଦବ୍‌କାଇଦା ଏ ପର୍ଯ୍ୟନ୍ତ ଟିକେ ଶିଖିପାରିଲା ନାହିଁ । ମୁଣ୍ଡ ଭିତରେ ସତେ ଯେମିତି ଦୁଇଟା କୁସ୍ତୀଗିର ପହିଲ୍‌ମାନ ଦୁଇଟା ମୁଗୁର ନେଇ ପିଟିବାକୁ ଆରମ୍ଭ କରିଦେଇଥିଲେ । ଏବେ ପ୍ରାୟ ମହିମହିରେ ଏହିଭଳି ହେଉଛି । ହୁଏତ ପ୍ରେସର ବଢ଼ୁଛି । ହଃ—କଣ ଆଉ କରାଯିବ ?

ଦୁଃଖେଇ ଏହି ସମୟରେ ହିଁ ଖବରଟା ଆଣିଲେ । ଯୁବରାଜ ସାହେବ—ତାଙ୍କ ସାଙ୍ଗରେ ସାକ୍ଷାତ କରିବାକୁ ଆସୁଛନ୍ତି । ସାଙ୍ଗରେ ତାଙ୍କର ଗୋଟିଏ ସ୍ତ୍ରୀଲୋକ ମଧ୍ୟ ଅଛି । ମୁଣ୍ଡରେ ଚଢ଼େଇ ବସା ଭଳି ବୋଝେ ବାଳ, ଦେହରେ ରଙ୍ଗ ବେରଙ୍ଗର ଚିପା ସାର୍ଟ ପୁଣି ଆଖିରେ ଶଗଡ଼ ଚକଭଳି ଏଡ଼େ ବିରାଟ ଗୋଟାଏ ଚଷମାରୁ, ସେ ପ୍ରକୃତରେ ସ୍ତ୍ରୀ କି ପୁରୁଷ ଦୁଃଖେଇ ବୁଝିପାରୁନାହାନ୍ତି । ତେବେ ଘଟଣା ଯାହା ସେ ଶୁଣୁଛନ୍ତି, ସେଥିରେ ତାଙ୍କର ସାହାପକ୍ଷ ଉଡ଼ିଯାଉଛି ।

ଦୀପେନ୍ଦ୍ର ଦୁଃଖେଇଙ୍କ ଆଡ଼କୁ ଅନାଇଲେ । କଥାର ଏତେ ଗୌରଚନ୍ଦ୍ରିକା ତାକୁ ମୋଟେ ଭଲ ଲାଗୁନଥିଲା । ମୁଣ୍ଡର ସେଇ ପୁରୁଣା ବ୍ୟଥାଟା ପୁଣି ବାହାରି ପଡ଼ିଥିଲା । ତାଙ୍କର ଉତ୍କଣ୍ଠିତ ହୋଇଉଠିଥିଲା ।

ଦୁଃଖେଇ ତଥାପି କହିଚାଲିଥିଲେ, ଲୋକ ପରମ୍ପରାରେ ସେ ଶୁଣିବାକୁ ପାଉଛନ୍ତି, ସେଇ ପୁରୁଷବେଶୀ ନାରୀ ସାଙ୍ଗରେ ପୁଣି କୁଆଡ଼େ ଯୁବରାଜ ସାହେବଙ୍କର ମହଲକୁଡ଼ା ବଢ଼ିଯାଇଚ ।

ଦୁଃଖେଇ ସ୍ୱଗତୋକ୍ତି କରୁଥିଲେ, କି କାଳ ହେଲାଲେ ମା ! ବାଣ ନାହିଁ କି ଇଶାଣ ନାହିଁ, ବାହାଘର ବଢ଼ିଗଲା ? ଖୋଦ୍ ସିଁ ଜର୍ଦ୍ଦି ବୃତାନ୍ତ ଏବେ ମଧ୍ୟ ବଞ୍ଚିଚ, ପରଚର ଉଚ୍ଚରୁ ବ ଟିକିଏ ନାହିଁ ଆଉ କନିଆଁ ? ଛ୍ୟା-ଛ୍ୟା—ଦାହାରେ ମୁଣ୍ଡରେ ଷିଏ ସୁତା ନାହିଁ—ଘୋଡ଼ା ପଟ ଚାଲୁଚ, ମାନ ନା ଥାନ ? ବଞ୍ଚିଥିଲେ କେତେ ବିଚିତ୍ର କଥା ଯେ ଦେଖିବାକୁ ପଡ଼ିବ ।

ଧୀରେନ୍ଦ୍ର ତଥାପି ସେଇଭଳି ନିସ୍ତବ୍ଧ ଭାବରେ ବସି ରହିଥିଲେ । ତାଙ୍କର ସମ୍ବିତ୍ ଫେରଆସିଲା ଯେତେବେଳେ ସେ ଦେଖିଲେ, ଦୁଃଖେଇଙ୍କ ବର୍ଣ୍ଣିତ ସେଇ 'ଅଣ୍ଡିରାଚଣ୍ଡୀ' ତାଙ୍କ ପାଦମୂଳରେ ସାମାନ୍ୟ ନତହୋଇ ସତେ ଯେପରି ଭାଙ୍ଗିପଡ଼ୁଚି ।

ପ୍ରଣାମ ଯାହାକୁ କୁହନ୍ତି, ଆଉ କଣ ? ଯନ୍ତ୍ରଚାଳିତ ଭଳି ଧୀରେନ୍ଦ୍ର ତାକୁ ଡାକି ଉଠାଇ ଶୂନ୍ୟଦୃଷ୍ଟିରେ ଥରେ ମାତ୍ର ତା ଉପରେ ଆଖି ପହଁରେଇ ନେଲେ ।

ପିତା-ପୁତ୍ର ମୁହାଁମୁହିଁ ହୋଇ ଠିଆହୋଇଥିଲେ । ଧୀରେନ୍ଦ୍ର ତଥାପି ବୁଝିପାରୁ ନଥିଲେ, ପାଞ୍ଚ ପୁରୁଷଧର ଶରୀରରେ ପ୍ରବାହିତ ହୋଇଆସୁଥିବା ନୀଳରକ୍ତ ହଠାତ୍ କେମିତି ଷଷ୍ଠ ପୁରୁଷରେ ଲାଲ ହେବାକୁ ଯାଉଚ ?

ଧୀରେନ୍ଦ୍ର ଦ୍ରୁତ ଗତିରେ ଚିନ୍ତା କରିଯାଉଥିଲେ । ଗୋଟାଏ କିଛି ନିଷ୍ପତ୍ତି ତାଙ୍କୁ ଶୀଘ୍ର ନେବାକୁ ପଡ଼ିବ । ଏବେ ମଧ୍ୟ ଯେ ସେ ପରିବାରର କର୍ତ୍ତା, ଏକଥା ରମେନ୍ଦ୍ରଙ୍କୁ ବୁଝାଇ ଦେବାକୁ ପଡ଼ିବ ।

ହାଲ୍‌ସ ସେ ଜୀବନରେ କେଉଁଠି କରିନାହାନ୍ତି । ଏବେ ମଧ୍ୟ କରିବେ ନାହିଁ । ସେ ମୁହଁ ଖୋଲିଲେ । "ସୁନ୍ଦର ! ବେଶ୍ ସୁନ୍ଦର ତମର ସିଲେକସନ୍ ଯୁବରାଜ । ଯାକୁ ତମେ ମୋ ପାଖକୁ କାହିଁକି ଆଣିଚ, ମୁଁ ଜାଣିନାହିଁ । ତେବେ ତମକୁ ଅନୁମତି ଦେଉଛି, ସାରାଜୀବନ ପାଇଁ ତମେ ତାକୁ ରଖିପାର । ଆଉ ପୁଣି ତାର ସାରାଜୀବନ ପାଇଁ ପ୍ରୟୋଜନୀୟ କିଛି କରିପାର । ଜୀବନସାରା ଯେମିତି ତାର କିଛି ଅସୁବିଧା ନହୁଏ, ତାର ଗୋଟାଏ ସ୍ଥାୟୀ ବ୍ୟବସ୍ଥା ମଧ୍ୟ କରିଦେଇପାର ।"

ରମେନ୍ଦ୍ର ଧୀରେନ୍ଦ୍ରଙ୍କର ଇଙ୍ଗିତ ବୁଝିଲେ । ଦାୟିତ୍ୱ ନନେଇ ଭୋଗ କରିବାର, ଯେଉଁ ପରମ୍ପରା ଚୌଧୁରୀ ବର୍ତ୍ତମାନେ ଇତପୂର୍ବରୁ ସୃଷ୍ଟି କରିଯାଇଛନ୍ତି, ରମେନ୍ଦ୍ରଙ୍କୁ ସେଇ ବାଟରେ ଯିବାକୁ ଧୀରେନ୍ଦ୍ର ସ୍ପଷ୍ଟ ନିର୍ଦ୍ଦେଶ ଦେଉଛନ୍ତି । ମନୋନୀତ ସାଥୀଟି ଘରଦ୍ୱାର, ଭୋଗ-ବିଳାସ ସବୁର ସୁବିଧା ପାଇବ, ପାଇବ ନାହିଁ କେବଳ ଚୌଧୁରୀ ପରିବାରର ଅନ୍ତଃପୁରରେ ପ୍ରବେଶ କରିବାର ଛାଡ଼ପତ୍ର......

ନାଃ, ରମେନ୍ଦ୍ର କଦାପି ଏଭଳି ଅସମ୍ମାନଜନକ ପ୍ରସ୍ତାବରେ ରାଜିହେବେ ନାହିଁ ।

ତଥାପି କାହିଁକି କୁଣ୍ଠା ଆଉ ଦ୍ୱିଧାର ସହିତ ସେ କହିଲେ, "ମୁଁ ଆଉ ଟିକେ ବେଶୀଦୂର ପର୍ଯ୍ୟନ୍ତ ଭାବିଚି ।"

"ତମେ ଭାବପାର, ସେଇଟା ହିଁ ତ ପୃଥିବୀର ଅଷ୍ଟମଆଶ୍ଚର୍ଯ୍ୟ ଯୁବରାଜ" ଧୀରେନ୍ଦ୍ର ସ୍ବରହୀନ ସ୍ୱରରେ କହିଥିଲେ । "ବରଂ ନ ଭାବିବାକୁ ଚେଷ୍ଟାକର ଏତେଦିନ ଯାହା କରିଆସିଛ । ଭାବିବାର ଦାୟିତ୍ୱଟା ଏତେଦିନ ଧରି ଯେଉଁମାନଙ୍କର ଥିଲା, ସେମାନଙ୍କର ଥାଉ । ତମେ ତମଭଳି ବୁଦ୍ଧୁ, go and enjoy your life."

ରମେନ୍ଦ୍ରଙ୍କ ଠାରୁ ଏଥର ପ୍ରତିବାଦ ଫୁଟିଉଠିଲା । ସେ ଗର୍ଜନ କରିଉଠିଲେ, "ସଂଯତଭାବରେ କଥା କୁହନ୍ତୁ" ମିତା is my wife. ଦିନକାଳ ବଦଳି ଯାଉଛି ରାଜାସାହେବ । ପର୍ଯ୍ୟୁଷିତ ଏକ ପରମ୍ପରାକୁ ତଥାପି ଜାବୁଡ଼ିଧରି ଆପଣ କେତେଦିନ କୁହୁଡ଼ି ପହଁରୁଥିବେ ?"

'ରାଜାସାହେବ' ସମ୍ବୋଧନ ଧୀରେନ୍ଦ୍ରଙ୍କ କାନରେ ସୀସାର ଏକ ଖର ଗୁଳିଭଳି ଆଘାତକଲା ପରି ! ବାଟ ଚାଲୁ ଚାଲୁ ସ୍ୱାଁ' ଭିତରେ କୋଉଦିନ ରମେନ୍ଦ୍ର ଯେ ତାଙ୍କଠାରୁ ଏତେ ଦୂରରେଇ ଗଲେଣି, ଏକଥା ତାଙ୍କୁ ଜଣାନଥିଲା । ସେ ହୁଙ୍କାର କରିଉଠିଲେ । ଶରୀରର ସମସ୍ତ ରକ୍ତ ସତେଯେମିତି ମୁହଁକୁ ଆସି ଠୁଳହୋଇଥିଲା, ବାଳଗୁଡ଼ାକ ଝିଙ୍କକାଠି ଭଳି ଠିଆହୋଇଗଲା । ଉତ୍ତେଜନାରେ ହଠାତ୍ ଉଠିପଡ଼ି କଣ କରିବାକୁ ଚେଷ୍ଟା କରୁ କରୁ ସେ ଧୂମ୍ କରି ତଳେ ପଡ଼ିଗଲେ । ଶ୍ରାବଣ ଆକାଶର ଅକୃପଣ ବାରିବର୍ଷଣ ଭଳି ଜଳଧାରା ତାଙ୍କର ପାଦରୁ ମୁହଁ ପର୍ଯ୍ୟନ୍ତ ଦର ଦର ଧାରାରେ ବହିଚାଲିଥିଲା । ନାକତଳ ଦେଇ ବହିଯାଉଥିଲା କୃଷ୍ଣାଭ ନୀଳରକ୍ତର ଚିକଣ ଦୁଇଧାର ।

ଦୁଃଖେଇ ଅଦୂରରେ ଥାଇ ପିତାପୁତ୍ରଙ୍କର ଉଚ୍ଚବାଚକୁ ଗଭୀର ମନଯୋଗରେ ଲକ୍ଷ୍ୟକରୁଥିଲେ । ଧୀରେନ୍ଦ୍ରଙ୍କର ପତନରେ ଆତଙ୍କିତ ହୋଇ ଧାଇଁ ଆସୁ ଆସୁ ହଠାତ୍ ମେହୁଗାନିକାଠର ଗୋଟିଏ ଭାରି ଡ୍ରୟରରେ ତାଙ୍କର ମୁଣ୍ଡ ପିଟିହୋଇଗଲା । କଟା କଦଳୀ ଗଛ ପରି ସେ ସେଇଠି ଓଲଟି ପଡ଼ିଲେ । ଉଜ୍ଜ୍ୱଳଲାଲ ବର୍ଣ୍ଣର ରକ୍ତରେ ତାଙ୍କ ମୁହଁସାରା ଅବିର ବୋଳାହେଲା ପରି ଦିଶୁଥିଲା ।

"ଅଲୋ ମୋର ସଂସାର ସରିଗଲାଲୋ" ବୋଲି କହି ଦୁଃଖେଇ ଘୁଷୁରି-ଘୁଷୁରି ଧୀରେନ୍ଦ୍ରଙ୍କ ପଦପ୍ରାନ୍ତରେ ଲୋଟିପଡ଼ିଲେ । ନବଦମ୍ପତି କିମ୍ଭୂତଭାବରେ ସେଠାରେ ତଥାପି ଠିଆହୋଇ ରହିଥିଲେ ।

ଧୀରେନ୍ଦ୍ରଙ୍କ ନାକତଳୁ ବହିଆସୁଥିବା ନୀଳରକ୍ତର କ୍ଷୀଣଧାରଟିଏ ସହିତ ଦୁଃଖେଇଙ୍କର ଲାଲରକ୍ତର ପ୍ରବଳ ଧାରା ମିଳିମିଶି ଏକାକାରହୋଇ ଚଟାଣ ଉପରେ ବହିଯାଉଥିଲା ।

---

# ପାପ ପୁଣ୍ୟ

ଜାଣ ହିମାଂଶୁ । ସୀମାହୀନ ଆକାଶରେ ଅନନ୍ତନୀଳିମା ଆମକୁ ମୁଗ୍ଧ କରେ । ତା'ର ଉଦାସ ଗ୍ରୀଷ୍ମଦଗ୍ଧ ମାଟି ଉପରେ ଠିଆହୋଇ କଳ୍ପନା ଆମର ଡେଣା ମେଲେ । ରୂପକଥାର ପକ୍ଷୀରାଜ ଚଢ଼ି କାହିଁ କୁଆଡ଼େ ହଜିଯିବାକୁ ମନହୁଏ । ଆକାଶ ଅଛି, ତେଣୁ ସ୍ୱପ୍ନ ଅଛି, ଭରସା ଅଛି । ତା' ସହିତ ଜଡ଼ିତ ହୋଇରହିଛି ଆମର ସ୍ଥିତି ।

ସେଇ ଆକାଶ ଯେତେବେଳେ ମୁଣ୍ଡ ଉପରେ ଛିଡ଼ିପଡ଼େ, ଯନ୍ତ୍ରଣାର ବିଷବାଷ୍ପରେ ତରଳି ଖଣ୍ଡ ଖଣ୍ଡ ହୋଇ ଅସହାୟତାର ନୀଳ ଧୂଆଁରେ ଯେତେବେଳେ ଚତୁର୍ଦ୍ଦିଗ ଅଚ୍ଛନ୍ନ ହୋଇଯାଏ, ଧୂମ୍ରାଭ ସେଇ ଶ୍ମଶାନଭୂମି ଉପରେ ଠିଆହୋଇ ସେତେବେଳେ ତାର କବି ମନଭୁଲା ସୌନ୍ଦର୍ଯ୍ୟ କଥା କିଏ ଆଉ ଭାବିବ, କହ ।

ମେଣ୍ଟାଲ ହସ୍ପିଟାଲରେ ଚୌତିରିଶ୍ ନମ୍ବର ବେଡ୍ ପାଖରେ ଠିଆହୋଇ ଯନ୍ତ୍ରଣାସିକ୍ତ ଧୂଆଁର କୁଣ୍ଡଳୀ ଆରପଟେ ବିଭୀଷିକାମୟୀ ପ୍ରେତିନୀମାନଙ୍କର ବିକଟ ଦଂଶନ ଲୋଲିତଜିହ୍ୱା ଶୀତ୍କାର ସୃଷ୍ଟିକାରୀ ହୁଙ୍କାରଠାରୁ ଦୂରକୁ ପଳାଇଯିବା ନିମନ୍ତେ ଅସହାୟ ଉଦ୍ୟମ କରୁ କରୁ ମୁଁ ଧୂମ୍ରାଭ ଦିଗନ୍ତ ଆଡ଼େ ଅନାଉଥିଲି । ବିଗଳିତ ମହମ ଭଳି ବିଭିନ୍ନ ଆକାରର ଆକାଶ ସବୁ ମୋ ଆଗରେ ଖଣ୍ଡ ଖଣ୍ଡ ହୋଇ ଛିଡ଼ି ପଡ଼ୁଥିଲା ।

ମୋର ଖୁବ୍ ନିକଟରେ ସୁପ୍ରିୟା ନାଚ ଆରମ୍ଭ କରିଦେଇଥିଲେ । ସର୍ବହରାର ସେଇ ପ୍ରଳୟକାଳୀନ ତାଣ୍ଡବ । ତାଙ୍କର ବିରଳ କେଶବାସ ଇତସ୍ତତଃ ହୋଇ ବକ୍ଷ, ଗ୍ରୀବା ଓ ପୃଷ୍ଠ ଦେଶରେ ଫୁତ୍କାର ଗର୍ଜନକରି ନାଚୁଥିଲେ । ଦିନେ ହୁଏତ ଦୀର୍ଘକେଶର ଗହଳି ଅରଣ୍ୟ ମଧ୍ୟରୁ ଉଙ୍କି ମାରୁଥିବା ତାଙ୍କର ସେଇ ବିକଚଶତଦଳନିଭ ମୁଖମଣ୍ଡଳକୁ ଦେଖି କବି ଭସାବାଦଲ ଆଢ଼ୁଆଳରେ ଚନ୍ଦ୍ରମାର ଅଭିସାରର କଳ୍ପନା କରୁଥିଲେ, ଆଜି କିନ୍ତୁ ସୀମାହୀନ ବ୍ୟର୍ଥତା ପୁଞ୍ଜିଭୂତ ସେଇ କାରୁଣ୍ୟ ଜର୍ଜରିତ ବେଦନାଦଗ୍ଧ ଉତ୍ତମାଂଶ କବିଗୁରୁଙ୍କ ଲେଖନୀକୁ ସ୍ତବ୍ଧ କରିଦେବା ନିମନ୍ତେ ଯଥେଷ୍ଟ ଥିଲା ।

ସୁପ୍ରିୟାଙ୍କ ପଦପାତରେ ଦିନେ ଅସ୍ଫୁଟ ଗୋଲାପ ଝରିଯାଉଥିଲା, ଲୀଳାୟିତ ତାଙ୍କର ଚପଳ ଛନ୍ଦ ବିଦେଶୀର ରଜନୀଗନ୍ଧାକୁ ହାରମନାଇ ଦର୍ଶକ ମନରେ ସୃଷ୍ଟି କରୁଥିଲା ଶତ କଦମ୍ବର ରୋମାଞ୍ଚ—ଆଉ ଆଜି ? ବିସ୍ରସ୍ତ ବେଶବାସ, ଶିଥିଳବକ୍ଷା, ଉଦ୍‌ଭ୍ରାନ୍ତ ଏଇ ବର୍ଷୀୟସୀଙ୍କର ଉଦ୍ଦାମଲାସ୍ୟ ମଧ୍ୟରେ ଗୋଟାଏ ବିରାଟ ସମ୍ଭାବନାମୟ ଜୀବନର ନିରୁପାୟ ବ୍ୟର୍ଥତାର କାହାଣୀ

ଝଲକା ଝଲକା ହୋଇ ବାହାରି ଆସୁଥିଲି । ତାଙ୍କର ଗୋଟାଏ ଗୋଟାଏ ଦୀର୍ଘଶ୍ୱାସ ମୋର ମନର ଉପକୂଳରେ ଧକ୍କାମାରି ଚଉକ ଚଉକ ଅଡ଼ାମାନ ଖସାଇ ପକାଉଥିଲା, ଆଉ ମୁଁ ଆତଙ୍କିତ ହୋଇପଡ଼ି ଏକ ଅବଲମ୍ବନର ନିରୂପାୟ ସନ୍ଧାନ କରୁଥିଲି ।

ରୋଷକଷାୟିତ ନେତ୍ରରେ ଅଗ୍ନି ଉଦ୍‌ଗୀରଣ କରୁ କରୁ ମୋ ଆଡ଼କୁ ତର୍ଜନୀ ନିର୍ଦ୍ଦେଶ କରି ସୁପ୍ରିୟା କହୁଥିଲେ, "ତମେ, ତମେହିଁ ମୋର ଜୀବନକୁ ବ୍ୟର୍ଥ କରିଦେଲ । ଧରାବନ୍ଧା ଛକରେ ଜୀବନକୁ ସଫଳତାର ମାର୍ଗରେ ଚଲାଇନେବା ପାଇଁ କ'ଣ ଅଭାବ ଥିଲା ମୋର ? ରୂପ, ଗୁଣ, ଶିକ୍ଷା ? ସୀମନ୍ତରେ ଅଳକ୍ତକର ରକ୍ତିମରାଗ ଉଡ଼ାଇ ତୁଳସୀ ଚଉରା ପାଖରେ ଲିଭିଯାଇଥିବା ସନ୍ଧ୍ୟା ଦୀପର ମହୁଆ ବାସ୍ନା ମଧ୍ୟରେ ଜୀବନର ନିଶ୍ଚିତ ପରିଧି ଟାଣିଆଣିବାର ସ୍ୱପ୍ନକୁ ଧୂମକେତୁ ଭଳି ତମେ ହିଁ ନଷ୍ଟ କରିଦେଲ । ତମେ ପାପୀ······

ସ୍ୱପ୍ନ ଭାଙ୍ଗିଗଲା । ମୁଁ ପାପୀ । ଆଜୀବନ ପୁଣ୍ୟକୁ ଲକ୍ଷ୍ମଣଗାର ଭଳି ଜଗି ଜଗି କେଉଁ ଅସତର୍କ ମୁହୂର୍ତ୍ତରେ ମୁଁ ସେଇ ନିଷିଦ୍ଧ ସୀମାରେଖା ଅତିକ୍ରମ କରିଗଲି ? ପାପ ପୁଣ୍ୟର ଅଭିଜ୍ଞତା ସଂଗ୍ରହ କରିବା ନିମନ୍ତେ ମୋତେ ତେବେ ପୁଣିଥରେ ଶ୍ୱେତାଙ୍କ ଆଉ ବିଶାଳ ଦେବଙ୍କ ଭଳି ପ୍ରବଜ୍ୟା ଗ୍ରହଣ କରିବାକୁ ପଡ଼ିବ ?

ମହାପ୍ରଭୁ ରତ୍ନାମ୍ବର କହିଥିଲେ, "ସଂସାରରେ ପାପ ବୋଲି କୌଣସି ନିର୍ଦ୍ଦିଷ୍ଟ ବସ୍ତୁ ନାହିଁ । ଦୃଷ୍ଟିକୋଣରେ ପାର୍ଥକ୍ୟ ହିଁ ପାପ ପୁଣ୍ୟର ନିୟାମକ । ଅସହାୟ ମଣିଷ ଆପଣାର ପ୍ରଭୁ ନୁହେଁ, କେବଳ ପରିସ୍ଥିତିର ଦାସମାତ୍ର । ସେ କେବଳ ତାହାହିଁ କରେ, ଯାହା ତାକୁ କରିବାକୁ ପଡ଼େ । ହୋଇପାରେ ଏହା ପାପ ଅବା ପୁଣ୍ୟ—"

ମୁଁ ତ ସେଦିନ କେବଳ ତାହାହିଁ କରିଥିଲି । ପ୍ରତ୍ୟେକ କ୍ଷେତ୍ରରେ ମଧ୍ୟ ସେଇଆ କରିଛି, ଯାହା ମୋତେ କରିବାକୁ ପଡ଼ିଛି ।

ପ୍ରେତାତ୍ମା ସୁପ୍ରିୟା ଗର୍ଜନକରି କହୁଥିଲେ, "ପୁଣ୍ୟବାନ୍ ବୋଲି ତମର ଭାରି ଅହଂକାର ନା ? ମନେପଡ଼ୁନାହିଁ, ଆସନ୍ନ ସନ୍ଧ୍ୟାର ପ୍ରାୟାନ୍ଧକାର ପରିବେଶରେ ତମେ ସେଦିନ ଗୋଟାଏ ନିରୀହା ବାଳିକାର ଜୀବନକୁ ନେଇ······"

ମୁଁ ଚମକି ପଡ଼ିଲି । ଧୂଆଁଳିଆ ସୁଦୂର ଅତୀତରେ ସଦ୍ୟ କେଦାରଗୌରୀ ଗୀତାଭିନୟ ଦେଖି ଫେରିଥିବା ଚିଅଟିଏ ଗୁହାଳଘରେ ମୋର ହାତଧରି ସେଦିନ କହିଥିଲା, "ଚାଲ ଆମେ ବଣକୁ ପଳାଇଯିବା ।"

ଦୌର୍ଭାଗ୍ୟକୁ ଆମ ଘରର ଦଶକୋଶ ଭିତରେ ସେଭଳି କୌଣସି ବଣ ନଥିଲା, ଯେଉଁଠି ମୋ ପାଇଁ ସିଏ ବା ତା' ପାଇଁ ମୁଁ ଛୁରୀ ଭୁସିହୋଇ ଆତ୍ମହତ୍ୟା କରିଥାଆନ୍ତୁ ।

ମୁଁ ତେଣୁ ସେଦିନ କେବଳ ତା'ର ହାତଧରି କହିଥିଲି, 'ଚାଲ' ଏବଂ ଆମେ ହାତ ଧରାଧରି ହୋଇ ନଈକୂଳଆଡ଼େ ବୁଲିବାକୁ ଯାଉଥିଲାବେଳେ ହଠାତ୍ ତା'ର ଅଭିଭାବକ

ତାକୁ ମୋ ହାତରୁ ଛଡ଼ାଇନେଇ ସନ୍ଧ୍ୟବେଳେ ନଈଆଡ଼କୁ ଯିବା ଉଚିତ ନୁହେଁ ବୋଲି ମୋତେ ଡରାଇ ଦେଇଥିଲେ ।

ମୁଁ ପୁଣି ସୁପ୍ରିୟାଙ୍କ ଆଡ଼େ ଅନାଇଲି । ତାଙ୍କ ଅଗ୍ନିବର୍ଷୀ ଦୃଷ୍ଟିରୁ ସତେ ଯେମିତ ଫୁଟି ବାହାରୁଥିଲା, "ଏତିକି ?"

ମୁଁ ଆତଙ୍କରେ କହିପକାଇଲି, ନା ନା, ସେତିକି ନୁହେଁ । ସେଇ ବୟସରେ ଜୀବନ ସମ୍ପର୍କୀୟ ପ୍ରଥମ ପାଠ ତ ମୁଁ କୁନ୍ତୀଠାରୁ ଗ୍ରହଣ କରିଥିଲି ଗୁହାଳ କଣରେ—ଯେଉଁଠି ଆମର ଖେଳଘର ଥିଲା, ଯେଉଁ ଘରର ଅପ୍ରତିହତ ସାମ୍ରାଜ୍ଞୀ ଥିଲା କୁନ୍ତୀ, ଆଉ ମୁଁ ତା'ର ଆଜ୍ଞାବହ କିଙ୍କର ମାତ୍ର । ମୋତେ ସେ ବ୍ୟବହାର କରୁଥିଲା ନିଜ ଇଚ୍ଛାମତେ ।

ଘର କ'ଣରେ ତା'ର ଅତି ଆଦରର ପୁଷି ବନ୍ଧାହୋଇ ମିଉଁ ମିଉଁ କରୁଥିଲା, ଆଉ କୁନ୍ତୀ ଏକ ପରିଣତ ବୟସ୍କା ଗୃହିଣୀ ଭଳି ମୋତେ ଧମକାଇ କହୁଥିଲା, "ଆଁ କରି ଅନେଇ ଦେଖୁଛୁ କ'ଣ ? ସକାଳ ପହରୁ ଗୋରୁଟା ବୋବେଇ ବୋବେଇ ତା' ତଣ୍ଟି ଶୁଖିଗଲାଣି, ତା' ମୁହଁରେ କେରାଏ ନଡ଼ା ପକେଇଦେଇ ପାରୁନୁ ?" କିମ୍ବା କେତେବେଳେ ତା' ହାତ ଦୁଇଟିକୁ ମୋ ବେକରେ ଗୁଡ଼ାଇଦେଇ ମୋ ହାତକୁ ତା' ପଛରେ ଛନ୍ଦି ରଖିବାକୁ ଆଦେଶ ଦେଉଥିଲା ।

ସେକାଳର ନିୟମ ଅନୁସାରେ ଏଗାରବର୍ଷ ବୟସରେ କୁନ୍ତୀର ବିବାହ ସ୍ଥିର ହୋଇଯିବା ପରେ ସେ ମୋତେ ପୁଣି ପ୍ରସ୍ତାବ ଦେଇଥିଲା, "ଚାଲ, ପଳେଇବା ।"

ମୁଁ ତାକୁ କହିଥିଲି, "ହାତ୍, କାଲି ପରା ତୋ ବାହାଘର । ପଳେଇବୁ କ'ଣ ?"

ସେ କହିଲା—ନା, ଏଠି ବାହାହେବି କ'ଣ ? ଆଉ କରିଟରୁ ଅଫିମ ଆଣି ରଖିଥିବି । ଦୁ'ଜଣଯାକ ଖାଇଦେବା ।" ମୁଁ ସେଥିରେ ବି ରାଜି ।

ବିବାହ ଉତ୍ସବର ହଟ୍ଟଗୋଳ ଭିତରେ ନିଦ୍ରିତା କୁନ୍ତୀକୁ ଯେତେବେଳେ କର୍ମି ନିମନ୍ତେ କୋଳକରି ବେଦୀ ପାଖକୁ ଅଣାଯାଉଥିଲା, ମୁଁ ଦୂରରୁ ଲକ୍ଷ୍ୟକରି ଦେଖିଥିଲି, ତା' ଶାଢ଼ୀ କାନିରେ କ'ଣ ମେଞ୍ଚାଏ ବନ୍ଧା ହୋଇ ଗଣ୍ଠିଟାଏ ପଡ଼ିଛି ।

ମୁଁ ଆତଙ୍କିତ ହୋଇପଡ଼ିଥିଲି । ସତରେ ଅଫିମ ଖାଇବାକୁ ପଡ଼ିବନା କ'ଣ ? ତେବେ ଏତେ ଯେ ଭୋଜଭାତ ସ୍ୱାକୁ ସବୁ ଖାଇବ କିଏ ?

ସୁଯୋଗ ଦେଖି ସେଇ ରାତିରେ ମୁଁ ତା'ର କାନି ଗଣ୍ଠିକୁ ଖୋଲି ଦେଖିଥିଲି । ସେଥିରେ ଅଫିମ ବଦଳରେ ଥିଲା ମେଞ୍ଚାଏ ଚେଚ୍ଛୁଲା । । ।

କୁନ୍ତୀ ପର୍ବର ଏଇଠି ଇତି ।

ସୁପ୍ରିୟାଙ୍କ ଅଡ଼କୁ ଅନାଇ ମୁଁ କହୁଥିଲି, "ପାପ ପୁଣ୍ୟର ଅବବୋଧ ସୃଷ୍ଟି ହେବା ପୂର୍ବରୁ ମଣିଷ ଯାହା କରେ, ସେଥିପାଇଁ ତାକୁ ଅଭିଯୁକ୍ତ କରାଯାଇ ନପାରେ ।"

ପ୍ରଜାପତିର ଲଘୁ ପକ୍ଷଭଳି ଚପଳ କଲେଜ ଜୀବନର ସେଇ ପଳାୟନପର ଦିନଗୁଡ଼ିକୁ ମୁଁ କିଛିଟା ନିର୍ଦ୍ଦୋଷ ଆନନ୍ଦ ମଧ୍ୟରେ ସ୍ମରଣୀୟ କରିବାକୁ ଚାହିଁଥିଲି, ସୁପ୍ରିୟା ! ଯେଉଁ ଅଧ୍ୟାୟରେ ତମ ସହିତ ମୋର ଯୋଗାଯୋଗ । ଲଘୁତା ଥିଲା ମୋର ସ୍ୱଭାବରେ ଏବଂ ସେଇ ସ୍ୱଭାବ ପୁଣି ପ୍ରାକୃତିକ । ଏହା ଭିତରେ ପାପ କେଉଁଠି ଥିଲା ?

ତରୁଣ ବୟସରେ ରକ୍ତ କୋକନଦ ଭଳି ମେଞ୍ଚାଏ ଲାବଣ୍ୟଭରା ଗୋଟିଏ ଅପରିଚିତା ତରୁଣୀର ନରମ ହାତ ସ୍ପର୍ଶ କରିବାକୁ ସେଥିରେ ପ୍ରକଟିତ ହୋଇଥିବା ନୀଳ ନୀଳ ଶିରା ପ୍ରଶିରା ମଧ୍ୟରେ ରକ୍ତ ଚଳାଚଳର ଗତିବିଧି ଲକ୍ଷ୍ୟ କରିବାକୁ ତେବେ କ'ଣ ପାପ ବୋଲି କୁହାଯିବ ?

ବିଶ୍ୱାସ କର ହିମାଂଶୁ, ସେଦିନର ସେଇ ଘଟଣାରେ ଦାୟିତ୍ୱହୀନତା ଥିଲା, ଥିଲା ହୁଏତ କିଛିଟା ଫ୍ଲାର୍ଟ୍, ମାତ୍ର ତା'ଠୁ ଅଧିକ କିଛି ନୁହେଁ, ଯାହାକୁ ପ୍ରଚଳିତ ଅର୍ଥରେ ପାପ ବୋଲି କୁହାଯାଇ ପାରିବ ।

ପାଟଳିପୁତ୍ରର ପ୍ରମତ୍ତ ସାମନ୍ତ ଚାରୁଗୁପ୍ତ ମାଦକତା ଏବଂ ଉନ୍ମାଦନା ମଧ୍ୟରେ ଜୀବନର ଚରମ ସୁଖର ସନ୍ଧାନ କରୁଥିଲା—ନର୍ତ୍ତକୀ ଚନ୍ଦ୍ରଲେଖା ସହିତ ତା'ର ମିଳନକୁ ନେଇ ତାର ସ୍ୱପ୍ନ, ଧନସମ୍ପତ୍ତି, ପଦମର୍ଯ୍ୟାଦା, ମାନ-ସମ୍ମାନ ଯାହା ନିକଟରେ ନିତାନ୍ତ ତୁଚ୍ଛ ମନେ ହୋଇଥିଲା । ମାତ୍ର ମୁଁ ?

ଶୁଣ ହିମାଂଶୁ । ମେଣ୍ଟାଲ ଓ୍ୱାର୍ଡରେ ସେଇଭଳି ଏକ ଦୟନୀୟ ପରିସ୍ଥିତିରେ ସୁପ୍ରିୟାଙ୍କୁ ଦେଖିଲାବେଳୁ, ତାଙ୍କର କେସ୍ ହିଷ୍ଟ୍ରି ପଢ଼ିବା ପରେ ମୋର ଦିନର ଶାନ୍ତି ଆଉ ରାତିର ନିଦ ସମ୍ପୂର୍ଣ୍ଣ ଭାବରେ ବିଘ୍ନିତ ହୋଇଛି । ଏହି ଘଟଣା ପାଇଁ ମୁଁ ନିଜକୁ ଦାୟୀ କରିବି କିମ୍ବା ନାହିଁ, ଠିକ୍ ବୁଝିପାରୁ ନାହିଁ । ଆଖି ବୁଜିଲେ ମୁଁ ଦେଖୁଛି ସୁପ୍ରିୟାଙ୍କର ଅଗ୍ନି-ବର୍ଷୀ ଦୃଷ୍ଟି, ତାଙ୍କର ସେହି ଉଦ୍ଦ୍ୟତ ତର୍ଜନୀ ଆଉ ଗର୍ଜନ, "ତମେ ମୋତେ ନଷ୍ଟ କରିଦେଲ !"

ବିଶ୍ୱାସ କର, ସମସ୍ତେ ଭଲରେ ରୁହନ୍ତୁ, ଆନନ୍ଦରେ ରୁହନ୍ତୁ, ଏହା ମୁଁ ସବୁ ସମୟରେ କାମନା କରିଆସିଛି । ସୁପ୍ରିୟାଙ୍କ ଭଳି ଗୋଟିଏ ତାଜା ଆଉ ସୁନ୍ଦର ଫୁଲ ଅକାଳରେ ମଉଳିଯାଉ, ଏକଥା ମୁଁ କେବେ ଚାହିଁନାହିଁ । ତଥାପି ଘଟଣାଟା ଘଟିଛି ।

ସେଇ କଥା ତେବେ ଏଥର କହେଁ ।

ପଛକୁ ଫେରି ଅନେଇଲେ ଅତୀତର ସେଇ ଅଂଶ ବାରମ୍ବାର ଆଖିରେ ପଡ଼େ, ଯେଉଁଠି ଦିନେ ଆନନ୍ଦ ଆଉ ଉଲ୍ଲାସର, ସମଗ୍ର ପୃଥିବୀକୁ କରତଳଗତ କରି ରଖିବାର

ସାମର୍ଥ୍ୟର ଆଲୋକ ଆଉ ଶ୍ରେଷ୍ଠୀର ଜୁଆର ଲହଡ଼ି ସୃଷ୍ଟି ଥିଲା, ଯାହାର ମଧ୍ୟବିନ୍ଦୁ ରୂପେ ଦଣ୍ଡାୟମାନା ଥିଲେ ସ୍ୱୟଂ ସୁପ୍ରିୟା ।

ପାଠପଢ଼ି ଭଲ ଛାତ୍ରୀ ହେବା ମଧ୍ୟରେ ଯେଉଁ ଶୂନ୍ୟତା ଥିଲା, ତେଣିକି ସେ ରୂପର ଆଡ଼ମ୍ବର ମଧ୍ୟରେ ଢାଙ୍କି ଦେଇଥିଲେ । ବିରାଟ ଏକ ଇମ୍ପୋର୍ଟେଡ୍ ଗାଡ଼ି ଚଢ଼ି ଆଉ ଆଖି ଝଲସା ପୋଷାକ ପିନ୍ଧି ସେ କଲେଜ ଆସୁଥିଲେ । ତାଙ୍କର ଉନ୍ନାସିକତା, ଉଦ୍ଧତ ବ୍ୟବହାର, ବେପରୱା ଭାବ ଆମକୁ ଆହତ କରୁଥିଲା, ଆଉ ଆମେ ନିଷ୍ଫଳ କ୍ରୋଧରେ ଗୁମୁରି ଗୁମୁରି ଉଠୁଥିଲୁ ।

ଘଟଣାଟା ସେଇ ସମୟର । ଡ଼ିକ୍ଟର ସ୍ୱୈନ୍‌ ଦାସ କୌଣସି ଏକ ବ୍ୟକ୍ତିଗତ କାରଣରୁ ଅନୁପସ୍ଥିତ ଥିବା ହେତୁରୁ ଆମକୁ ଅପ୍ରତ୍ୟାଶିତ ଭାବେ ଦୁଇଘଣ୍ଟାର ଲିଜର୍ ମିଳି ଯାଇଥିଲା ଏବଂ ଅମରର ପରାମର୍ଶରେ ମୁଁ ଏକ ଜ୍ୟୋତିଷ ସାଜିବସି ମୋତେ ଘେରି ଉଚ୍ଚ କଳରୋଳ କରୁଥିବା ବନ୍ଧୁମାନଙ୍କ ଭବିଷ୍ୟତ୍‌ ସମ୍ପର୍କରେ ରୋମାଞ୍ଚକର ମନ୍ତବ୍ୟମାନ କରି ହସ ଏବଂ କାନ୍ଦର ଏକ ଚଳଚଞ୍ଚଳିତ ପରିବେଶ ସୃଷ୍ଟି କରିଥିଲି ।

ସହପାଠିନୀ ଅଜିତାଙ୍କ ହାତଦେଖି ମୁଁ ତାଙ୍କୁ କହୁଥିଲି, "ତୁମ୍ଭର ଶୀଘ୍ର ତମର ବିବାହର ଯୋଗ ପିଟୁଛି । ତମର ଶରୀରରେ ମାଂସର ଯେଉଁ ପ୍ରାଚୁର୍ଯ୍ୟ ରହିଛି, ତମ ସ୍ୱାମୀଙ୍କ ଶରୀରରେ ତାହାର ଘୋର ଅଭାବ । ମୋତେ ଜଳଜଳ ଦିଶୁଛି, ତାଙ୍କର ସ୍ରୁପ୍ତେଟି ଦାନ୍ତ ବାହାରକୁ ଆତ୍ମପ୍ରକାଶ କରିବା ନିମନ୍ତେ ସତତ ବ୍ୟାକୁଳ ଆଉ ତାଙ୍କର ବର୍ଣ୍ଣ ହେବ ଯମୁନାତଟ ବିପିନ-ଗ୍ୱାରୀ କଶ୍ଚିତ୍ ଗୋପ ବାଳକ ତୁଲ୍ୟ ଘୋର ନୀଳ ।"

ସ୍ଥୂଳାଙ୍ଗିନୀ ଅଜିତାଙ୍କ ମୁଖମଣ୍ଡଳର ଆନନ୍ଦ ଆଉ ଉଲ୍ଲାସର ସୁଇଚ୍ ଗୋଟିଏ ପରେ ଗୋଟିଏ ଭବିଷ୍ୟତ୍ ବାଣୀର ଆଘାତରେ ମୁଁ ଯେତେବେଳେ ଲିଭାଇଦେଇ ଚାଲିଥିଲି ସେଇ ମୁହୂର୍ତ୍ତରେ ମୋ ସମ୍ମୁଖରେ ପଡ଼ିଲା ଗୋଟିଏ ହାତ, ମେଞ୍ଚାଏ ପିଞ୍ଜା ତୁଳା ଭଳି, ଗୋଟିଏ ଫୁଟିଲା ଶୁଭ୍ର ଗୋଲାପ ଭଳି । ସେଇ ହାତ ଆଡ଼କୁ ଅନାଇ ପ୍ରଥମେ ମୁଁ ଚକିତ ହୋଇ ଯାଇଥିଲି ।

ନାସିକା କୁଞ୍ଚନର ଆଘାତରେ ଅନ୍ୟକୁ ଏଡ଼ାଇ ଚାଲିଥିବା ସୁପ୍ରିୟା ଯେ ସହସା ଏଭଳି ଗୋଟାଏ କାଣ୍ଡ ଘଟାଇ ବସିବେ, ଏହା ମୁଁ ଯେମିତି ହଠାତ୍ ବିଶ୍ୱାସକରି ପାରୁନ-ଥିଲି ।

ଉଦ୍ଧତ ଭଙ୍ଗୀରେ ସୁପ୍ରିୟା କହୁଥିଲେ, "ଜ୍ୟୋତିଷ ମହାଶୟ ! ବୋକାଙ୍କ ଭଳି ମୋ ମୁହଁକୁ ନଅନାଇ ହାତର ରେଖାକୁ ଦେଖ, ତମର ଜ୍ୟୋତିଷ ଜୀବନ ଭିତରେ ଏଭଳି ଆଶ୍ଚର୍ଯ୍ୟ ଆଉ ଅନନ୍ୟ ହାତ କେବେ ଦେଖିନଥିବ, ଆଉ ଭବିଷ୍ୟତରେ ମଧ୍ୟ ଦେଖିବାକୁ ପାଇବ ନାହିଁ ।"

ଖେଳଘରର ଗାଈକୁ ଚରାଇ ଆଣିବା ନିମନ୍ତେ କୃତ୍ତୀ ମଧ୍ୟ ମୋ ଉପରେ ଏହି ଧରଣର ଆଦେଶ ଜାରିକରୁଥିଲ ।

ମୋ ମନରେ ପ୍ରତିଶୋଧ ନାଚ ଉଠିଲା । ମୁଁ ମନ ସ୍ଥିର କରିପାରିଥିଲି । ଅଧୈର୍ଯ୍ୟ ସୁପ୍ରିୟା ପୁନର୍ବାର କମାଣ ଦାଗୁଥିଲେ, "ଅଯଥା ଉପରେ ମାନସିକ ଗୁପ ସୃଷ୍ଟି ନକରି, ଶୀଘ୍ର କହ, କ'ଣ ତମର ଭାଗ୍ୟଦେବତା ହାତରେ ଲେଖି ଦେଇଛନ୍ତି ।"

ମୁଁ ଗଳା ସଫା କରି ପ୍ରସ୍ତୁତ ହୋଇଗଲି । କହିଲି, "ଏଇ ହାତ···

ଉଦ୍‌ବ୍ୟଗ୍ର ସୁପ୍ରିୟାଙ୍କର ପ୍ରଶ୍ନ—"ହିଁ କଣ କହୁଚ ଯେଇ ହାତ ? ଆସନ୍ତା ମାସରେ ଜଣେ I. A. S. Officer ସାଙ୍ଗରେ ମୋର ବିବାହ ହୋଇଯିବ, ଏଇଆ ତ ?"

ମୁଁ ନିଷ୍ଠୁର କଣ୍ଠରେ ଘୋଷଣା କଲି, "ହାତରେ ରେଖା କହୁଚି, ଜାତକର ଜନ୍ମ ଲଗ୍ନରେ ଗ୍ରହରାଜ ଶନିଙ୍କର କୁଟିଳଦୃଷ୍ଟି—ବିବାହ ରେଖା ଅତ୍ୟନ୍ତ ଅସ୍ପଷ୍ଟ—ବିବାହ ହେବନାହିଁ– "

ସୁଖ ଆଉ ଶାନ୍ତିର ନିଶ୍ଚିତ କଳ୍ପନା ମଧ୍ୟରେ ଆଜନ୍ମ ଲାଳିତ ସୁପ୍ରିୟାଙ୍କ ମୁଖମଣ୍ଡଳ ଅଗ୍ନିଗର୍ଭ ଧୂମ ଭଳି ଜ୍ୟୋତି ବିକିରଣ କରୁଥିଲା । ସେ ହୁଏତ ଜାଣି ନଥିଲେ ପ୍ରକୃତ ସୁଖ ହେଉଛି ଏକ ମାନସିକ ବ୍ୟାପାର । ବିଷପାନ ଆଉ ଶ୍ମଶାନବାସରେ ନୀଳକଣ୍ଠଙ୍କର ସୁଖ । ବିଷସ୍ଥା-ବିଷରେ ଜର୍ଜରିତ ହୋଇ ସଂସାରର ଆନନ୍ଦ । ଆଧିବ୍ୟାଧିର ନିତ୍ୟ ପୀଡ଼ନ ଜନିତ ସହାନୁଭୂତି ଲଭିରେ କେହି ସୁଖୀ ତ, ନିଜର ଦୈନ୍ୟକୁ ଅନ୍ୟ ନିକଟରେ ବର୍ଣ୍ଣନା କରି କାହାର ଆନନ୍ଦ । ଲଭ ହିସାବ କରି ସଂସାରି ମଣିଷ ସୁଖ ପାଉଥିଲାବେଳେ ଅନ୍ୟର କ୍ଷତିକରି ମଧ୍ୟ କେହି ସୁଖୀ ହୁଏ ।

ସୁଖର ତେଣୁ ନାନା ରୂପ । ପାଇବାରେ ଯେଉଁ ସୁଖ, ନପାଇବାରେ ସୁଖର ସମ୍ଭାବନାରେ ମଧ୍ୟ ସେମିତି ଅନେକ ରୋମାଞ୍ଚ ।

ଏତେ କଥା ହୁଏତ ଆନନ୍ଦବିଳାସୀ ସୁପ୍ରିୟାଙ୍କ ମନରେ ଧରାପଡ଼ୁନାହିଁ । ତାଙ୍କ ଚିନ୍ତାରେ ସୁଖର ରୂପ ମାପଚୁପା ଗ୍ରୀତରେ ସ୍ପଷ୍ଟ ହେଲେ ହେଉ ପଛେ ମଣିଚକା···

କ୍ରୋଧରେ ସୁପ୍ରିୟା ଫାଟି ପଡ଼ିଲେ, "You brute—"

ନିର୍ବିକାର ଚିତ୍ତରେ ମୁଁ ତାଙ୍କୁ କହିଲି "ମୁଁ Brute ହେଲେ ଯଦି ତମର ଭାଗ୍ୟର ରେଖା ବଦଳି ଯାଆନ୍ତା, ତେବେ ମୁଁ ସେଥିପାଇଁ ପ୍ରସ୍ତୁତ । ମାତ୍ର ରେଖା କହୁଚି, ତମେ··· ତମେ ପାଗଳ ହୋଇଯିବ—ହାଃ···"

ବିଶ୍ୱାସକର ହିମାଂଶୁ, ଗୋଟିଏ ନିଷ୍ପାପ କୋରକର ସବୁଜ ସ୍ୱପ୍ନକୁ ଏଇଭଳି ଚୂରମାର୍ କରିଦେବାର କଳ୍ପନା ମୋର ଆଦୌ ନଥିଲା । ସୁପ୍ରିୟାଙ୍କର ଆଚରଣ ହିଁ ଏଥିପାଇଁ ଦାୟୀ ।

ହୁଏତ ଏହାହିଁ ଥିଲା ତାଙ୍କର ନିୟତି । ସୁପ୍ରିୟାଙ୍କର ମୁହଁ ରକ୍ତଶୂନ୍ୟ ଦେଖା ଯାଉଥିଲା । ପାଟିରୁ କୌଣସି ଶବ୍ଦ ବାହାରୁ ନଥିଲା—ସେ ଥରୁଥିଲେ ।

ତାଙ୍କ ଆଡ଼କୁ ଅନାଇ ଆତୁର କିଛି କଥା କହି ଏଇ ମୁହୂର୍ତ୍ତିରେ ତାଙ୍କ ମନର ସରସତାକୁ ଫେରାଇ ଅଣାଯାଇ ପାରିବ କି ନାହିଁ ମୁଁ ଚିନ୍ତା କରୁଥିଲି । ସମସ୍ତେ ନୀରବରେ ବସି ରହିଥିଲେ ।

ଅଗତ୍ୟା ଆରମ୍ଭ କଲି, "ମାଡ଼ାମ୍ ! ତମର ହାତ କହୁଛି···"

ଗୋଟାଏ ଶକ୍ତ ଝିଙ୍କାରେ ତାଙ୍କର ହାତକୁ ମୋଠୁଁ ଛଡ଼ାଇନେଇ ସୁପ୍ରିୟା କହୁଥିଲେ, "ଆଜି ତମେ ମୋତେ ଯାହା କହିଲ, ଏଥିପାଇଁ ତମକୁ ଅନୁତାପ କରିବାକୁ ପଡ଼ିବ ।"

ସୁପ୍ରିୟା ରାଜେନ୍ଦ୍ରାଣୀ ଭଙ୍ଗୀରେ ମଥା ଉନ୍ନତ କରି ଫେରିଗଲେ ।

ମୁଁ ମନେ ମନେ ଶଙ୍କିତ ହୋଇଉଠୁଥିଲି । ଏହିଭଳି ଏକ ରସିକତାର ପରିଣାମ ଯେ ମୋ ପାଇଁ ନିତାନ୍ତ ସୁଖକର ହୋଇନପାରେ, ଏହା ସେହି ମୁହୂର୍ତ୍ତିରେ ମୋର ମନେ ହୋଇଥିଲି । ସୁପ୍ରିୟାଙ୍କ ଭବିଷ୍ୟତ ବାଣୀ ଯେ 'କିଭଳି ଅକ୍ଷରେ ଅକ୍ଷରେ ସତ୍ୟ, ତା' ମୁଁ ଏବେ ବୁଝିଛି ଆଉ ବାରମ୍ବାର ନିଜକୁ ଅଭିଶାପ ଦେଉଛି ।

ମାତ୍ର ସେତ ଅନେକ ପରର କଥା ।

ସୁପ୍ରିୟା ଫେରିଯିବା ପରେ ଅମିତା କହିଲେ, "ତାର ନିର୍ବନ୍ଧ ଯେ ସରିଯାଇଛି, ଏକଥା କ'ଣ ତମେ ଜାଣନାହିଁ ? ଆସନ୍ତା ମାସରେ ବିବାହ···"

"ନିର୍ବୋଧଭଳି ସାମାନ୍ୟ ହସିବା ବ୍ୟତୀତ ଆଉ କ'ଣ ଉପାୟ ଥିଲା କୁହ ।"

ସୁପ୍ରିୟା ହଜିଗଲେ । ଅଗଣିତ ମଣିଷର ମେଳାରେ—ସୃଷ୍ଟି ରହସ୍ୟର ନିତ୍ୟ ନୂତନ ଅନୁଦ୍‌ଘାଟିତ ରୋମାଞ୍ଚକର ବିପଣୀରେ କଲେଜ ଜୀବନର ଏକ ପିଲାଳିଆ ଖିଆଲ କଥା କେତେଦିନ ଆଉ ମନେରୁହନ୍ତା ?

ସୁପ୍ରିୟା ବିସ୍ମୃତିର ଅତଳରେ ତଳାଇଗଲେ ।

ଆଉ ଆଜି ଏତେଦିନ ପରେ ପୁଣି ମୁଁ ଦେଖୁଛି ସେଇ ସୁପ୍ରିୟାଙ୍କର କଙ୍କାଳକୁ । ତାଙ୍କର କେସ୍ ହିଷ୍ଟ୍ରି କହୁଚି, ନିର୍ବ୍ବାଚିତ ପାତ୍ର ସଙ୍ଗରେ ସୁପ୍ରିୟାଙ୍କର ବିବାହ ହୋଇ ନପାରିବାର ଲଜ୍ୟା ଆଉ ଅପମାନ ତାଙ୍କ ବାପାଙ୍କର ଜୀବନଦୀପକୁ ଅକାଳରେ ଲିଭାଇ ଦେଇଥିଲି । ବିମାତାଙ୍କ ଯୋଗାଯୋଗରେ ଲୋକଦେଖାଣିଆ ବିବାହ ଗୋଟାଏ ଅବଶ୍ୟ ହୋଇଥିଲି—ପରିଣତିରେ ସୁପ୍ରିୟାଙ୍କର ଜୀବନ ଶୂନ୍ୟ ହୋଇଯାଇଥିଲି ଏବଂ ବିମାତାଙ୍କର ବ୍ୟାଙ୍କ୍ ବାଲାନ୍‌ସ ବେଶ୍ ସ୍ଫୀତ ହୋଇ ଉଠିଥିଲି······

ସୁପ୍ରିୟାଙ୍କର ଜୀବନର ଅଙ୍କ ମିଳିଲା ନାହିଁ । ନାରୀ ଜୀବନର ପାରମ୍ପରିକ ସାର୍ଥକତା ତାଙ୍କ ପାଇଁ ଦୁର୍ମିଳ ହୋଇଗଲା ।

ପିତାଙ୍କ ଆକସ୍ମିକ ମୃତ୍ୟୁ ପରେ ନିଜସ୍ୱ ସମ୍ବଳ ବୋଇଲେ ସୁପ୍ରିୟାଙ୍କର ଥିଲା ଗୋଟିଏ ମାତ୍ର ଜୀବନ । ତାହାରି ପାଇଁ ତାଙ୍କର ଦୃଢ଼ ପ୍ରତ୍ୟାଶା ଥିଲା । କିଛି ସୁଖର ବଦଳରେ ସେ ଯାହା ପାଇଲେ, ତା' ସହିତ ନିଜକୁ ଖାପଖୁଆଇ ନେବା ସମ୍ଭବପର ହୋଇନଥିଲା ।

ପରିଣାମ ତ ଆଖି ଆଗରେ ଦେଖୁଚ ।

ସାମାନ୍ୟ ଗୋଟିଏ ବାଲସୁଲଭ ଖିଆଲ, ଗୋଟାଏ ସମ୍ଭାବନାମୟ ଜୀବନକୁ ଯେଉଁ ଭଳି ଧ୍ୱଂସ ସ୍ତୂପରେ ପରିଣତ କରିଥିଲା, ତାହାରି ଉପରେ ଠିଆହୋଇ ମୁଁ ଧୀରେ ଧୀରେ ସ୍ମୃତିବାଲି ଭିତରକୁ ଖସି ପଡ଼ୁଥିଲି ।

ସୁପ୍ରିୟା ମୋତେ ଚହ୍ନିବା ଅବସ୍ଥାରେ ନଥିଲେ । ମୋ ସ୍ମୃତିକୁ ତ ମୁଁ ଆଉ ଫାଙ୍କି ଦେଇପାରିବ ନାହିଁ । ବାରମ୍ବାର ସେଇ ହାତ ଦେଖିବାର ଦୃଶ୍ୟ, ଆଉ ନିଷ୍ଫଳ ଆକ୍ରୋଶରେ ଉଚ୍ଚାରିତ ହୋଇଥିବା ପ୍ରତ୍ୟେକଟି ଶବ୍ଦ ସୀସକର ଗୁଳୀ ଭଳି ମୋ ଦେହରେ ବାଜି ରକ୍ତ ଝରାଉଥିଲା ।

ସୁପ୍ରିୟା ମୋ ଶେଯ ପାଖରେ ଠିଆ ହୋଇଥିଲେ । କଣ୍ଠରେ ତାଙ୍କର ପ୍ରଳୟଙ୍କର ହୁଙ୍କାର, "ପାପୀ ।" ବିଶ୍ୱସଂସାରର ସମସ୍ତ ଘୃଣା ଏଇ ଶବ୍ଦ ମାଧ୍ୟମରେ ବାୟୁର ତରଙ୍ଗରେ ସର୍ବତ୍ର ପ୍ରସାରିତ ହୋଇ ଯାଉଥିଲା ।

ସୁପ୍ରିୟା ହାତରେ ଗୋଟାଏ ଦୀର୍ଘ ଦଣ୍ଡ ଧରି ମୋ ପାଖକୁ ଧାଇଁ ଆସୁଥିଲେ । ଅଗ୍ନି ବର୍ଷୀ ଦୃଷ୍ଟିରେ ଦେଇଟିକୁ ମୋ ହାତକୁ ବଢ଼ାଇଦେଇ ସେ କହୁଥିଲେ, "ଲେଖ ।"

ମୁଁ ହାଉଳି ଖାଇ ଉଠୁଥିଲି ।

ସୁପ୍ରିୟା ଥରେ ଯଦି ପ୍ରକୃତିସ୍ଥା ହୁଅନ୍ତେ ତେବେ ମୁଁ ତାଙ୍କୁ ପଚାରନ୍ତି, ପାପର ଅବରୋଧ ଯେଉଁଠି ନାହିଁ, ସେଠି ତାକୁ ପାପ ବୋଲି ସେ କହୁଛନ୍ତି କାହିଁକି ?

ଅନେକ ନିରୁପାୟ ବ୍ୟଥା ଆଉ ଦୀର୍ଘଶ୍ୱାସର ମୂଲ୍ୟ ଦେଇ ମୁଁ ମୋର ଅନୁତାପର ଅଶ୍ରୁସିକ୍ତ ସ୍ୱାକ୍ଷର ଲିପିବଦ୍ଧ କରୁଛି ।

ସୁପ୍ରିୟା ମୋତେ ଅନୁତାପ କରିବାକୁ କହିଥିଲେ । ମୋର ତାଙ୍କୁ କ୍ଷମା ମାଗିବାର କଥା । ସେ ଏବେ ଏ ସବୁର ବହୁ ଊର୍ଦ୍ଧ୍ୱକୁ ଚୁଲିଯାଇଛନ୍ତି । ମୋର କେବଳ ତାଙ୍କୁ କହିବାକୁ ମନ ହେଉଥିଲା, "ଜୀବନ ଏକ ଚଳୋଉର୍ମି ସୁପ୍ରିୟା ! ଆଉ ତମେ କ'ଣ ଜାଣନାହିଁ, ଅନ୍ୟର ଅନୁକମ୍ପା ଆଉ ଦୟା ଚଳଚଳ କରି ସଂଗୃହୀତ ହୋଇ ତାହା ପୂର୍ଣ୍ଣ ହୁଏ ବୋଲି ?

—o—

# ଡନପୁରୁଷ

ଗଡ଼ ନରସପୁର ଗାଁ ଦାଣ୍ଡରେ ସେଦିନ ଢନପୁରୁଷ ମୁହାଁମୁହିଁ ହୋଇ ଠିଆ ହୋଇଥିଲେ । ଅଠାଅଶୀ ବର୍ଷର ନବ ରଣସିଂ, ତାଙ୍କର ବାଉଣବର୍ଷର ପୁଅ କାଳନ୍ଦୀ ରଣସିଂ ଆଉ ତୃତୀୟ ପୁରୁଷ ଦଶବର୍ଷ ବୟସ୍କ ଅମର ରଣସିଂ । ଢୋଲ, ମହୁରୀର ତାଳେ ତାଳେ ଢନକଙ୍କ ପାଦ ଉଠୁଥିଲା ଆଉ ପଡ଼ୁଥିଲା ।

ଉପରେ ନିର୍ମଳ ଆକାଶରେ ଭାଦୁଅ ମାସର ସୂର୍ଯ୍ୟ ହସୁଥିଲେ । ଗ୍ଲେଁ ଗ୍ଲେଁ ପାଣିଖରା ମାରୁଥିଲା ଆଉ ଦେହର ଚମଡ଼ା ଭେଦ ଭିତରକୁ ଗଳିଯାଉଥିଲା । ମଝିରେ ମଝିରେ ଦମକାଏ ଲେଖାଁ ପବନ ବହିଆସି ଲୋକଙ୍କ ଦେହରେ ଚନ୍ଦନର ଛୁଆଁ ବୁଲେଇଦେଇ ଯାଉଥିଲା ।

ଆକାଶରେ ଉଡ଼ିଯାଉଥିଲେ ନାନାଜାତିର ପକ୍ଷୀ । ଘୋର ନୀଳ କାଳିମାହୀନ ପୃଷ୍ଠ-ଭୂମିରେ ସେମାନେ ଦେଖାଯାଉଥିଲେ ନୀଳାମ୍ବରରେ ଶ୍ଵେତ ଶ୍ଵେତ ବୁଟାଭଳି । ନାକରେ ବାଜୁଥିଲା ଝରଶେଫାଳୀ ଆଉ ଚମ୍ପାଫୁଲର ଫେଣ୍ଟାଫେଣ୍ଟି ସୁବାସ ।

ଗାଁଗହଳରେ ତେବେ ଏବେବି ଶେଫାଳୀ ଫୁଟେ । ଶଙ୍ଖପ୍ରବାଳ ମିଶା ତା'ର ତଳୁରେ ମୁକ୍ତାଭଳି ଝଲସି ଉଠୁଥିବା ଶିଶିର ବିନ୍ଦୁର ଦୁର୍ଲଭ ସୌନ୍ଦର୍ଯ୍ୟ ଏବେ ମଧ୍ୟ ଦେଖିବାକୁ ପାଆନ୍ତି ଗାଁର ଯୁବକମାନେ । କାକର ପଖଳା ବଣବୁଦାର ଘଞ୍ଚ କୋଳରେ କପୋତ କଣ୍ଠର ସାଥୀହରା କରୁଣ କ୍ରନ୍ଦନ ଏବେବି ଯୁବପ୍ରାଣକୁ ଉଦାସ କରିଦିଏ । ମା' ଆନନ୍ଦମୟୀର ଆଗମନୀ ନଈପଠାରେ କାଶର ଦୋହଲା ଚଅଁର ଭିତରଦେଇ ବାଜିଉଠେ ।

କୋଉଠି କାଶ ଆଉ କାପତାର ବାହୁନା ? ନବ ରଣସିଂ ବିଷାଦିତ କଣ୍ଠରେ କହୁଥିଲେ—କି ହତ୍ୟାନାଶିଆ ଔଷଧ ଦବୁ ବିଲବାଡ଼ିରେ ପକେଉଛନ୍ତି ଯେ ଦେଖିରେ କୁଣ୍ଡାଏ ବି ମୁଣ୍ଡ ଟେକି ପାରୁନାହିଁ । ବର୍ଷା ଋତୁମାସ ମୂଳିଆ ପାଳିଅଁ ଲୋକ ଖାସ୍ ବିଲରୁ ମାଛଟାଏ, କଙ୍କଡ଼ାଟାଏ ଧରି ଗୁଜୁରାଣ ମେଣ୍ଟାଉଥିଲେ । ଏବେ ବଡ଼ ଗାଁ—ଶ'ବଡ଼ା ମୂଳିଆ । ଆଜି ଏଇ ଭାଦୁଅମାସିଆ ଦିନରେ କାହାର ଘରେ ଭଲ ଅଁଷ କାଉଁଟାଏ ଦେଖିବାକୁ ପାଇବ ? ଅଥଚ ଆଗେ, ହେସିଁ ହେସିଁ ଚୁନାମାଛ ଶୁଖୁଆ ଗନ୍ଧରେ ଏଇ ସମୟରେ ଗାଁଦାଣ୍ଡ ଫାଟିପଡ଼ୁଥିଲା ।

ନବ ରଣସିଂ ସେଦିନର ସେଇ ପ୍ରାର୍ଥନାର କଥା ସ୍ମରଣ କରି ଉଦାସ ହୋଇଗଲେ । ନିର୍ମେଘ ଆକାଶ କୋଣରେ ନଜର ଅତୀତକୁ ଖୋଜି ବୁଲୁଥିଲେ ପରି ।

ନିଜର କଥା, କାହାକୁ କହିବ ? ନାତିଟା ସେଦିନ ପଢ଼ି ପଢ଼ି ପଚାରିଦେଲା— ଜେଜେ ! ସାଧବବୋହୂ କାହାକୁ କହନ୍ତି ? ତା' ବହିରେ ଲେଖା ହୋଇଛି—

ନାଲି ଗୁଲୁଗୁଲୁ ସାଧବ ବୋହୂଲୋ ସାଧବ ବୋହୂ,
କିଟିମିଟିଆ ଏ ବରଷା ରାତିରେ କେଉଁଠି ରହୁ ?

ପଡ଼ିଆରେ ଘଣ୍ଟାଏକାଳ ବୁଲି ବୁଲି ମୁଁ ତାକୁ ସାଧବବୋହୂଟାଏ ଦେଖେଇ ପାରିଲିନାହିଁ । ନବ ରଣସିଂ କପାଳରେ ହାତ ବୁଲେଇ ଆଣିଲେ ।

ବୟସ ତାଙ୍କୁ କିଛିଟା କାବୁକରି ପକାଇଛି ସତ୍ୟ, ତେବେ ହାତରେ ବାଡ଼ିଖଣ୍ଡେ ଧରି ଏଇ ଅଠାଅଶୀ ବର୍ଷ ବୟସରେ ସୁଦ୍ଧା ସେ ସିଧା ଚାଲନ୍ତି । ଅଲସ-ଅପରାହ୍ଣରେ ମାଧ୍ୟାହ୍ନ ନିଦ୍ରାରୁ ଉଠି ଠଣାରୁ ଭାରତ ପୋଥି ବାହାରକରି ବିନା ଚଷମାରେ ସ୍ୱରଧରି ପଢ଼ିଯାଆନ୍ତି ।

"ଅହୋ —ଅପାର କୁଟୁମ୍ବ ତୁ ଯେ ଅରଜିଲୁ ଧୃତରାଷ୍ଟ୍ର, ମୋର ବିଚାରେ ତୋତେ ହୋଇବାକ ଅନେକ କଷ୍ଟ—" । ହେଁକିଟିକି ଧାରୁଆ ଦାନ୍ତରେ ଗୋଟା ଗୋଟା କାକୁଡ଼ି, ଖଣ୍ଡ ଖଣ୍ଡ ନଡ଼ିଆ ପେଷି ହୋଇଯାଏ ।

ରଣସିଂ ଭୁଇଁ ଦୁଲୁକାଇ ବାଟ ଚାଲନ୍ତି । କପାଳରେ ହରିମନ୍ଦିର ଚିତା ନାକ ଅଗଯାଏ ଲମ୍ବି ଯାଇଛି । ବେକରେ ତିନିସରି ତୁଳସୀମାଳି । ରଣସିଂ ଏବେ କୋଉ ଜଣେ ଗୁରୁଙ୍କଠାରୁ ଦୀକ୍ଷା ନେଇଛନ୍ତି ।

ଗୁରୁଙ୍କୁ ସିଂହେ ସଫା କହିଦେଇଥିଲେ, ଅଣ୍ଡା ସେ ମୂଳରୁ ଛୁଅଁନ୍ତି ନାହିଁ । ସାରୁଅଳି ସେଇ କାଳେ ଛାଡ଼ିଦେଲା, ଦଶହରେ କି କେବେ କେମିତି ଛେଳିପଡ଼ିଲେ ପାଟିରେ ଟିକିଏ ବାଜେ । ତେବେ ମାଛ ଟିକିଏ ନହେଲେ ସେଠାରେ ବସିପାରନ୍ତିନାହିଁ । ଆଇଁଷ ଛାଡ଼ିବାକୁ ତାଙ୍କୁ ସେମିତି ଲୁହା ନଯାଏ ।

ଗୁରୁଦେବ ଆପତ୍ତି ଉଠାଇଥିଲେ । ଏ ବୟସରେ ଜିହ୍ୱାଲାଳସାର ବଶବର୍ତ୍ତୀ ହୋଇ ଗୁଡ଼ାଏ ଜୀବ ବଧର କାରଣ ହେଲେ ତାଙ୍କୁ ଯେ ନିର୍ଘାତ ନର୍କବାସ କରିବାକୁ ପଡ଼ିବ, ଏ ଭୟ ମଧ୍ୟ ଦେଖାଇଥିଲେ ।

ସିଂହେ ଗୁରୁଦେବଙ୍କୁ ପାଲଟା ଶାସ୍ତ୍ର ଶୁଣାଇ ଦେଇଥିଲେ । ଭାଗବତର ପଦ ଉଦ୍ଧାର କରି କହିଥିଲେ—

ଅନ୍ନ ବିହୁନେ ହଂସ ହାନି,
ଯୋଗ ସାଧିବ କାହା ପେନି ?

ପେଟକୁ ଧୋବା ଘରେ ପକାଇ ତାଙ୍କୁ ଅର୍ଦ୍ଧ ଉପବାସରେ ହିଁ ବାକି ଜୀବନ କଟାଇବାକୁ ପଡ଼ିଲା, ତେବେ କି ମିଳିବ ସେ ଯୋଗ ସାଧନାରୁ ? ଗୁରୁଦେବ କି ଭାଗବତ ପଢ଼ି ନାହାନ୍ତି ? ତହିଁରେ ତ ସଫା ଲେଖାଅଛି—

ଜୀବ ମାରଣ ଜୀବ ଖାଇ,
ସେ ଜୀବ ବୈକୁଣ୍ଠେ ବସଇ ।

ଆ ହା ହା—କି ଅମୃତମୟ ପଦ ! ଦାସଙ୍କ ଭଳି ଏଡ଼େ ବଡ଼ ଧର୍ମାତ୍ମା ତ ଆଇଁଷ ମନା କରିନାହାନ୍ତି । ଆଇଁଷ ଛଡ଼ା ଜୀବନରୁ ତାଙ୍କୁ କି ମିଳିବ ?

ଭାଗବତରେ କୋଉଠି ଏକଥା ଲେଖାଅଛି, ଗୁରୁଦେବ ଜାଣିନାହାନ୍ତି । ଏଣେ ରଣସିଂଙ୍କୁ ଟାଣି ନପାରିଲେ ତାଙ୍କର ଧନ୍ଦା ଚଳୁନାହିଁ । ତେଣୁ ସେ ଗୋଟାଏ ରଫା କରିଛନ୍ତି । ବଙ୍ଗ ଦେଶର ଗୁରୁମାନେ ମାଛଟାକୁ ଏତେ ବାରଣ କରନ୍ତିନାହିଁ । ସେ ବି ମାଛ ପାଇଁ ମନା କରୁନାହାନ୍ତି ଯେ, ଅଣ୍ଡା ଆଉ ମାଂସ କିନ୍ତୁ ଦୀକ୍ଷାପରେ ଚଳିବନାହିଁ ।

ରଣସିଂହେ ସେଦିନ ଭାକୁରିଆ ନଣନ୍ଦଲକୁ ସାଉଁଳି ସାଉଁଳି ସଗର୍ବରେ ଫେରି ଆସିଥିଲେ । ଶାହାସ୍ତ୍ରର ନମ୍ବର ଦେଇ ଗୁରୁଦେବଙ୍କ ଭଳି ଜଣେ ପଣ୍ଡିତଙ୍କୁ ପରାସ୍ତ କରିଦେବା କିଛି ସହଜ କଥା ନୁହେଁ । ଅଣ୍ଡା ଆଉ ସାଗୁଅଣ୍ଡ କୋଉଦିନ ସେ ଖାଉଥିଲେ ? ମାଛ ଟିକିଏ ହେଲେ ତାଙ୍କର ହେଲା ।

ବାପା ସାଆନ୍ତ କହୁଥିଲେ—ଉତ୍କଳ ହେଲା ମତ୍ସ୍ୟ ଦେଶ । କେତେ ଜାତିର ମାଛ ଭଗବାନ ଏ ଦେଶର ନଈ, ପୋଖରୀ, ଟୁବ ଚଢ଼ିଆ, ବିଲବାଡ଼ିରେ ଠୁଳକରି ରଖିଛନ୍ତି । ହାତ ବୁଲେଇଆଣିଲେ ଅଞ୍ଜଳି ପୂର୍ଣ୍ଣ । କଂସାଏ ସଜପଖାଳ ସାଙ୍ଗକୁ ଥାଳିଆଏ ସଜ ମାଛଭଜା କି ମେଞ୍ଚାଏ ବିଲ ମାଛର ଗରମ ଗରମ ପତରପୋଡ଼ାର ସୁଆଦ ଯିଏ ନଜାଣିଲା, ମଣିଷ ଜନମରେ ତା'ର କି ସୁଆର୍ଥ ? ରଣସିଂହେ ସେଦିନ ଗୁରୁଦେବଙ୍କୁ ପଚାରିଥିଲେ ।

ଗଡ଼ ନରସୁର ଦାଣ୍ଡରେ ପଟାକାଟିର ଝମଝମ ଶବ୍ଦ ଭିତରେ ପାଇକ ଖୁହାଟର କଳକଳା ରଡ଼ିରେ, ଢୋଲର ତାଳେ ତାଳେ ପାଦ ଚଳାଇ ଚାଲିଥିଲେ ଏ ଯୁଗର ପାଇକ ଯୁବକମାନେ । ଶୀର୍ଣ୍ଣ ଗ୍ରୀବକୁ ଫୁଲାଇ, ଶରୀରର ଉର୍ଦ୍ଧାଙ୍ଗକୁ ଧନୁଭଳି ବଙ୍କାଇ, ସ୍ଫୀତ ହଙ୍କ୍ରଚାଇ ସମ୍ମୁଖ ଅତୀତର ଏକ କଙ୍କାଳର ପ୍ରତିରୂପ ସୃଷ୍ଟିକରି ସେମାନେ ତଥାପି ସମର ବାଦ୍ୟର ତାଳେ ତାଳେ ଦୋହଲି ଦୋହଲି ପାହୁଲ ପକାଉଥିଲେ ସେହି ଗାଁ ଦାଣ୍ଡରେ, ଯେଉଁଠି ଦିନେ ସେମାନଙ୍କର ପିତୃପୁରୁଷମାନେ ମୋଗଲ, ପଠାଣ, ମରହଟ୍ଟା ଆଉ ଇଂରେଜମାନଙ୍କ ବିରୁଦ୍ଧରେ ଗଜପତିଙ୍କ ପତାକାତଳେ ଧୂଳି ଉଡ଼ାଇ ଚାଲିଯାଉଥିଲେ ।

ପାଞ୍ଚଶହ ବର୍ଷ ପୂର୍ବେ ଗଜପତି କପିଳେନ୍ଦ୍ରଙ୍କ ସୈନ୍ୟବାହିନୀ ହୁଏତ ଏଇବାଟେ ଦାକ୍ଷିଣାତ୍ୟର ଯବନ ଶାସକମାନଙ୍କୁ ଶାସ୍ତିଦେବା ନିମନ୍ତେ ଚିଲିକା ବକ୍ଷରେ ନଉକା ଚଲାଇ

ଯୁଦ୍ଧଯାତ୍ରା କରିଥିଲେ । ଅପମାନିତ ପୁରୁଷୋତ୍ତମ ଦେବ ପୁନେ ଏଇବାଟେ କାଞ୍ଚିଯାତ୍ରା କରି ବାହୁଡ଼ି ଆସିଥିଲେ, ସଙ୍ଗରେ ରାଜକନ୍ୟା ପଦ୍ମାବତୀ, କାଞ୍ଚି ଗଣେଶ ଆଉ ଗୋପାଳଙ୍କୁ ଧରି ।

ସେମାନେ ଯାଇଥିଲେ ଦେଶ ଆଉ ଜାତିର ଗୌରବ ବଢ଼ାଇବା ଲାଗି, ଅପମାନର ପ୍ରତିଶୋଧ ନେବା ଲାଗି । ଏମାନେ ଶୁକ୍ଳଛନ୍ଦ୍ର ପରମ୍ପରାର ଏକ ମ୍ଳାନ ଛାଇଭଳି, ହାତରେ ଜଙ୍କଧରା ଖଣ୍ଡା ତଲ୍‌ୱାର ଧରି, ଜର୍ଜର ବାଉଁଶ ଖଣ୍ଡେ ଟେକି, ଶରୀରର ସମସ୍ତ ଶକ୍ତିକୁ ପାଟିବାଟେ ବାହାର କରିବାକୁ ଅପ୍ରାଣ ଉଦ୍ୟମ କରି ଜଣେ ଜଣେ ପ୍ରେତମୂର୍ତ୍ତି ଭଳି । ସେମାନଙ୍କର ଥିଲା ଜୀବନ ପଣ—ଏମାନଙ୍କର ଅଛି କେବଳ ପରମ୍ପରା ପ୍ରତି ଶ୍ରଦ୍ଧା । ପାର୍ଥକ୍ୟ ଏତିକି ଯାହା ।

ନବ ରଣସିଂ ମଝିରେ ମଝିରେ କେଉଁ ଏକ ପାଇକ ଠିକେ ସାମାନ୍ୟ ତ୍ରୁଟି ଦେଖିଲେ ଅଖଡ଼ା ଭିତରକୁ ଚମକି ଯାଉଥିଲେ । ବାଡ଼ିକୁ କେମିତି ବୁଲାଇବାକୁ ପଡ଼ିବ, ପ୍ରତିପକ୍ଷର ସାମାନ୍ୟ ଅସତର୍କତାର ସୁଯୋଗ କେମିତି କ୍ଷିପ୍ରଗତିରେ ନେବାକୁ ହେବ, ବାଜାର ତାଳେ ତାଳେ ପାଦ୍ଭୁଲ କେମିତି ପଡ଼ିବ, ଦୁଇଟି ଅର୍ଦ୍ଧବୃତ୍ତ ଆକାରରେ ଶରୀରକୁ କେମିତି ସଜାଡ଼ି ନେବାକୁ ପଡ଼ିବ, ଏଇ ସବୁ ସେମାନଙ୍କୁ ବୁଝାଉଥିଲେ ।

ହାତରେ ଧରିଥିବା ବାଡ଼ିରେ ଭୂଇଁ ଉପରେ ଗାରଟାଣି ଦେହର ପ୍ରକୃତ ସ୍ଥିତି କେମିତି ହେବ, ତାହା ଜଣାଇ ଦେଉଥିଲେ ।

ହେଉଦେଇ ଝିପିରି ଝିପିରି ମାଡ଼ରେ ଦେହରୁ ବହିଯାଉଥିଲା ବର୍ଷାପାଣି ପରି ଧାର ଧାର ଝାଳ । ସେଥିପ୍ରତି ରଣସିଂହଙ୍କର ତିଳେମାତ୍ର ଭ୍ରୂକ୍ଷେପ ନଥିଲା ।

ଦ୍ୱିତୀୟ ପୁରୁଷ କାଳନ୍ଦୀ ରଣସିଂ ବୟସରେ ଯୁବକ ହେଲେହେଁ ଅଠାଅଶୀ ବର୍ଷର ବଳୀରେଖାଙ୍କିତ ମୁହଁରେ ଯେଉଁ ସ୍ଫୁର୍ତ୍ତି ଆଉ ଔଜଲ୍ୟ ପ୍ରକଟିତ ହେଉଥିଲା, ତାହାର କାଣିଚାଏ ବି ତାଙ୍କଠାରେ ଦେଖାଯାଉନଥିଲା । ଜୀବିକା ତାଙ୍କର ଥିଲା କେଉଁ ଗୋଟାଏ ସରକାରୀ ସ୍କୁଲର ମାଷ୍ଟରୀ । ଖଣ୍ଡା ତଲ୍‌ୱାର ଧରା ତାଙ୍କର ପାରମ୍ପରିକ ହାତରେ ହାରମୋନିୟମ୍‌ର ରିଡ଼ ଚାପିହୋଇ ଯାଉଥିଲେ, ଆଉ ତବଲାର ପୃଷ୍ଠରେ ଚାପୁଡ଼ା ମାରି ସେ ନିଜର ଏକ ସ୍ୱତନ୍ତ୍ର ଭାବମୂର୍ତ୍ତି ତିଆରିକରି ନେଇଥିଲେ ।

ପ୍ରଥମ ପୁରୁଷ ତାଙ୍କର ଏହି କଳାପ୍ରୀତିକୁ ବଡ଼ ସୁନଜରରେ ଦେଖୁନଥିଲେ । ସେ ଗୋଟାଏ ଅବଜ୍ଞା ସୂଚକ 'ହୁଃ' କରିଦେଇ ନାସିକାକୁଞ୍ଚନ ଦ୍ୱାରା ପିତୃଭକ୍ତ ପୁତ୍ରପ୍ରତି ନିଜର ମନୋଭାବ ପ୍ରକାଶ କରିବାକୁ କଦାପି ଭୁଲୁନଥିଲେ । ଫିରିଙ୍ଗୀ ପାଠ ପଢ଼ାଇବା ଦ୍ୱାରା ସେ ଯେ ପୁଅର ଭବିଷ୍ୟତକୁ ନିଜ ହାତରେ ନିଜେ ନଷ୍ଟକରି ଦେଇଛନ୍ତି, ଏ ବିଷୟରେ ଅନ୍ତତଃ ତାଙ୍କର ସନ୍ଦେହ ନଥିଲା ।

ଦଣଖଣ୍ଡି ଗ୍ରାମରେ ରଣସିଂହଙ୍କର ଅସପତ୍ନ ସାମାଜିକ ପ୍ରତିପତ୍ତି ଥିଲା । ଯେ କୌଣସି ଉତ୍ସବ ବା ସାମାଜିକ କ୍ରିୟା କର୍ମ ତାଙ୍କର ଉପସ୍ଥିତି ବିନା ଅପୂର୍ଣ୍ଣ ରହିଯାଉଥିଲା । ସଂସାରରେ ଏମିତି ଅନେକ ମଣିଷ ଥାଆନ୍ତି, ଯେଉଁମାନେ ଠିକ୍ ଲୁଣଭଳି । କୌଣସି ବ୍ୟାପାରରେ ସେମାନଙ୍କ ନାମ ଆଗକୁ ଆସେ ନାହିଁ । ଅଥଚ ସେମାନେ ନଥିଲେ ସବୁ କିଛି ସ୍ୱାଦୁହୀନ ହୋଇଯାଏ । ସଭାର ଆରମ୍ଭରେ ଏମାନେ ହାତରେ ଫୁଲମାଳ ଆଉ ମୁହଁରେ ପୋଷାକି ହସନେଇ ମୁଖ୍ୟ ଅତିଥିଙ୍କୁ ଅଭ୍ୟର୍ଥନା ଜଣାଇବାକୁ ଆଗେଇ ଆସନ୍ତିନାହିଁ କିମ୍ବା ଯାତ୍ରା ଥିଏଟରର ରାଜା ରାଣୀ ସାଜି ଦର୍ଶକମାନଙ୍କର ସସ୍ତା ପ୍ରଶଂସା ଅର୍ଜନ କରିପାରନ୍ତିନାହିଁ । ତଥାପି ଏମାନେ ନଥିଲେ ସଭାଟିଏ ହୋଇପାରେନାହିଁ କିମ୍ବା ଯାତ୍ରା ଥିଏଟର ହୁଏନାହିଁ —ପ୍ରକୃତରେ ଏମାନେ ନଥିଲେ ଜୀବନ ଚଳେ ନାହିଁ ।

ନବ ରଣସିଂହ ସେଇ ଧରଣର ଲୋକ । କେଉଁଠି କାମକାର୍ଯ୍ୟ ହେଉଥିଲେ, କେହି ଡାକନ୍ତୁ ନଡ଼ାକନ୍ତୁ, ଠିକ୍ ସମୟରେ ଆପେ ହାଜର ହୋଇଯାଉଥିଲେ । ବ୍ୟବସ୍ଥାପତ୍ର କେମିତି ହୋଇଛି. ତା' ଭିନ୍ନ ଭିନ୍ନ କରି ପରଖି ବୁଝୁଥିଲେ । ଛୋଟ ବଡ଼ ତ୍ରୁଟି ଯାହା ଆଖିରେ ପଡ଼ୁଥିଲା, ତାହା ଦୂରକରି ଦେଉଥିଲେ । ନିଜ କଥା ଭୁଲି କାମଟି ଶେଷ ହେବା ପର୍ଯ୍ୟନ୍ତ ସେଇଠି ପଡ଼ିରହୁଥିଲେ ।

ସେଥର ଯେମିତି ରଘୁ ବଳବନ୍ତରାୟଙ୍କ ଝିଅ ବାହାଘର ବେଳେ । ଦହିଗ୍ରାମ ବରଯାତ୍ରୀ ଦଳ ଭାରି ବେଆଡ଼ା । ମଫସଲ ଲୋକ ପାଇଁ ଅନେକ ହେଟାମହଜରୁ କରିବାକୁ ଯେମିତି ପ୍ରସ୍ତୁତ ହୋଇ ଆସିଥିଲେ । ଖାଇବାବେଳେ ଏମିତି ଅବସ୍ଥା ସୃଷ୍ଟିକଲେ ଯେ, ପାଞ୍ଚଶହ ଲୋକଙ୍କର ଖାଇବା ଶହେଲୋକଙ୍କୁ ଦେଉ ଦେଉ ଖତମ୍ । ବଳବନ୍ତରାୟ ଘରଆଡ଼ ଅନ୍ଧାର ଦେଖୁଥିବା ବେଳେ ବନ୍ଧୁବାନ୍ଧବ ଅବସ୍ଥା ବୁଝି ଗୋଟିଏ ଗୋଟିଏ କରି କୁଆଡ଼େ ଲୁଚିଲେ । ଏକା ରଣସିଂହେ ବଳବନ୍ତରାୟଙ୍କ ପାଖରେ ଆସି ଠିଆହେଲେ । ତାଙ୍କୁ ହିମ୍ମତ୍ ଯୋଗାଇଲେ । ନିଜ ଘରୁ ଯାହା ଯେମିତି ପାରିଲେ ଜିନିଷପତ୍ର ଯୋଗାଡ଼କରି ଆଉଥରେ ରନ୍ଧାରନ୍ଧିର ବ୍ୟବସ୍ଥା କରାଇ ଅବସ୍ଥାଟାକୁ ସମ୍ଭାଳି ନେଲେ ।

ସବୁ ସୁରୁଖୁରୁରେ ଚାଲିବାର ଦେଖି ବରଯାତ୍ରୀମାନଙ୍କର ମୁହଁଟିମାନ ଚୁପା ପଡ଼ିଗଲା । ରଣସିଂ ଶେଷରେ ହାତମାରି କନ୍ୟାକୁ ମଟରରେ ବସାଇଦେବା ପରେ ଆପଣା ଘରକୁ ବାହୁଡ଼ି ଯାଇଥିଲେ ।

ନିଜ ଜୀବନରେ ରଣସିଂ କୌଣସି ଲଢ଼େଇରେ ଭାଗ ନେଇନାହାନ୍ତି । ତାଙ୍କର ଜେଜେବାପା ସୁବାହୁ ରଣସିଂ ୧୮୧୭ ମସିହାର ପାଇକ ମେଳିରେ ଯୋଗଦେଇ ଫିରିଙ୍ଗୀ-ମାନଙ୍କୁ ନାକରେ ପାଣି ପିଆଇ ଦେଇଥିଲେ । ବାପା ଭଗବାନ ରଣସିଂହେ ସୁଦ୍ଧା ଗଜପତି ମାହାଲିଆ ମୁକୁନ୍ଦ ଦେବଙ୍କ ତରଫରୁ ଫିରିଙ୍ଗୀମାନଙ୍କ ସାଙ୍ଗରେ ଖଣ୍ଡେପଟେ ଲଢ଼ିଥିଲେ ।

ସେତିକିବେଳେ ତ ତାଙ୍କର ସାତପୁରୁଷୀ ଜାଗିରକୁ ଫିରିଙ୍ଗୀମାନେ ଖାସ୍ କରିନେଇଥିଲେ । ତାଙ୍କ ଜେଜେବାପାଙ୍କର ପର ଗୋସବାପ ଦୁଃଶାସନ ଥିଲେ ଖୋଦ ଓଡ଼ିଶା ଗଜପତି ପୁରୁଷୋତ୍ତମ ମାହାର୍ଜାଙ୍କ ପାଇକ ଦଳରେ । କାଞ୍ଚି ଲଢ଼େଇରେ ଯେତେବେଳେ ଓଡ଼ିଶା ପାଇକେ କାଞ୍ଚି ନଅର ଉପରେ ଚଢ଼ାଉକଲେ, ସେତେବେଳେ ଦୁଃଶାସନଙ୍କ ଲଙ୍ଘାତରବାରିର ଗୋଟାଏ ମାଡ଼ରେ କାଞ୍ଚିରଜା ନରସିଂହଙ୍କ ହାତରୁ ଅସ୍ତ୍ର ଖସିପଡ଼ିଥିଲା ଆଉ ଦୁଃଶାସନ ତାଙ୍କ ଲମ୍ବ ଚୁଟିଧରି ଘୋଷାଡ଼ିଆଣି ତାଙ୍କୁ ମାହାର୍ଜାଙ୍କ ପାଦତଳେ ପକାଇ ଦେଇଥିଲେ ।

ତା'ପରର ସୁନାଅଁ ଢନ ସିନା ଦୁଃଶାସନଙ୍କ ମୁଣ୍ଡରେ ଶିରପା ବନ୍ଧାହେଲା ଆଉ ତାଙ୍କୁ ରଣସିଂ ଉପାଧି ମିଳିଲା । ମାହାର୍ଜା ଯୋଉ ଜାଗୁିରି ଦେଇଥିଲେ, ତା' ରଣସିଂହ ପରିବାର ହାତରୁ ଛଡ଼ାଇନେଲେ ଫିରିଙ୍ଗୀମାନେ ।

ବାଉପାଣ୍ଡିରେ ବସି ନବ ରଣସିଂହେ ଏଇସବୁ ଗଳ୍ପ ଆଜକାଲର ଟୋକାମାନଙ୍କୁ କହନ୍ତି । କୋଉ କାଳରୁ ଗୋଟାଏ ବଡ଼ ଟ କାଗଜ ଫର୍ଦ୍ଦରେ ଲେଖାହୋଇ ସାଇତା ହୋଇଥିବା ଆପଣାର ବଂଶଲତା ଦେଖାଇ ପୂର୍ବପୁରୁଷମାନଙ୍କର ବୀରତ୍ୱର କାହାଣୀ ବଖାଣି ଯା'ନ୍ତି ।

ସାତ୍ତାବନରେ ସିପାହୀମାନେ ଫିରିଙ୍ଗୀମାନଙ୍କ ସାଙ୍ଗରେ ସିଂହଭଳି ଲଢ଼ିଥିଲେ । ମୁଣ୍ଟିମାନଙ୍କୁ ଚୂନଭଳି କରି ଫିରିଙ୍ଗୀ ଜୀବନ ବଞ୍ଚାଇବାକୁ ବାଟଦ୍ୱାର ଶୁଣ୍ଟି ପିଣ୍ଡା ହେଉଥାଆନ୍ତି । ତାଙ୍କର ଏଡ଼େବଡ଼ ରାଇଜ, ତା'ବି ହାତରୁ ଏଇ ଗଲା ତ ସେଇଗଲା ଏମିତି ସେତେବେଳେ ଅବସ୍ଥା ।

ନବ ରଣସିଂହ କଥା କହିଲାବେଳେ ତାଙ୍କ ପାଟିରେ ବାଟକୁଳ ବାଜେନାହିଁ । ଭଗବାନ ରଣସିଂ ସେତେବେଳେ ଘୋଡ଼ା ପିଠିରେ ଚଢ଼ି ଦଳେ ପାଇକଙ୍କୁ ଧରି ଖୋରଧା କଚିରି ଲୁଟି ନେଇଥିଲେ, ଟଙ୍କାପଇସା ସବୁ ଓଡ଼ିଶାର ଦକ୍ଷିଣଙ୍କ ହାତକୁ ବଢ଼ାଇଦେଇ ସଗର୍ବରେ ବାହୁଡ଼ି ଆସୁଥିଲାବେଳେ ଫିରିଙ୍ଗୀମାନଙ୍କ ହାତରେ ଧରା ପଡ଼ିଗଲେ ।

ଫିରିଙ୍ଗୀମାନେ ତା'ପରେ ଅନେକ ଚେଷ୍ଟାଚରିତ୍ର କରି ସିପାହୀମାନଙ୍କୁ ହରାଇଲେ । ଭାରତର ରାଜଦ୍ରୋହ କୌଣସିମତେ ରକ୍ଷା ପାଇଗଲା ।

ଭଗବାନଙ୍କୁ ଧରାଇ ଦେଇଥିଲେ ଯିଏ, ସିଏ କିଛି ବାହାରର ଲୋକ ନୁହନ୍ତି । ତାଙ୍କରି ଅଞ୍ଚଳର ଘନ ଛମ୍ପାଣ ସିଂହେ । ଛମ୍ପାଣ ସିଂହେ ବି ପାଇକ ବଂଶର ପିଲା । ଜାତିଭାଇ । ତେବେ କଥା କଣ କି ସ୍ୱଜାତି ପରହିଂସ୍ରକ । କାଳେ କାଳେ ଶିଖିମନେଇ ମାନେ ନିଜ ଜାତିଭାଇର ପିଠିରେ ପଛରୁ ଛୁରି ଭୁଷିଛନ୍ତି । ନହେଲେ କୋଉ ପୁଅ ଏମିତି ଥିଲା, ତେଲେଙ୍ଗା ମୁକୁନ୍ଦ ଦେବଙ୍କୁ ହରାଇଥାଆନ୍ତା ?

ଉତ୍ତେଜନାରେ ନବ ରଣସିଂଙ୍କ ଆଖି ଦପ୍ ଦପ୍ ହୋଇ ଜଳିଉଠେ । ଦୁଇ ନାକ-

ପୁଡ଼ା ବାଟେ ସତେ ଯେମିତ ବୈଶାଖୀ ଝଞ୍ଜା ବହିଯାଏ । ଶିଖିମନାଇଙ୍କୁ ଆଗରେ ପାଇଲେ ସେ ଯେମିତ ସେମାନଙ୍କୁ ବଣାବଲ ଦେଇଦେବେ !

ଘନଆର ରାଗ ଥିଲା କୋଉ କାଳରୁ । ସେଇ ରାଗ ସେ ଶୁଝାଇଲା ଭଗବାନଙ୍କୁ ଫିରଙ୍ଗୀ ହାତରେ ଧରାଇଦେଇ । ଆରେ ଚଣ୍ଡାଲ, ଯଦି ସାହସ ଥିଲା, ନିଜ ଭାଇ ବେକରେ ନିଜେ ହେଲେ ଛୁରୀ ମାରଥାଆନ୍ତୁ ? ପରହାତରେ ମରାଇ କୋଉ ଲାଭଟା ପାଇଲୁ ? ରଣସିଂହେ ସଖେଦ ଦୀର୍ଘଶ୍ୱାସ ପକାନ୍ତି ।

ଛତ୍ରାଣ ସିଂହର ଥିଲା ଗୋଟିଏ ବୋଲି ଭଉଣୀ—ଶକୁନ୍ତଳା—ସେ ପୁଣି ବାଲ-ବିଧବା । ସ୍ୱାମୀ କ ପଦାର୍ଥ ଜାଣିବା ପୂର୍ବରୁ ମଥାରୁ ସିନ୍ଦୁର ଲିଭାଇ ବାପଘରେ ରହୁଥିଲା । ଖଣ୍ଡାଇତଘର ଝିଅ । ମାଟିହାଣ୍ଡି । ଥରେ କଳା ପଡ଼ିଲା ତ ଜୀବନସାରା ପାଇଁ ଛୁଆଁ ହୋଇଗଲା । କୋଉ ଏବେ ଲୋକଟ ଜାତ ହୋଇଚ ଯେ ଧୋଇ ମାଜି ପୁଣିଥରେ ଚୁଲି ଉପରେ ବସାଇବେ ? ନଡ଼ାବଡ଼ାକରେ ଜୀବନକୁ ନୂଆ କରି ଗଢ଼ିବାକୁ ଆଗେଇ ଆସିବେ ?

ଶକୁନ୍ତଳାର ସେତେବେଳେ ଭରା ଯୌବନ । ପୁରାଣ ଶାସ୍ତ୍ର ପଢ଼ି, ଯାତ୍ରା ନାଟକ ଦେଖି ତା' ମନ ସବୁବେଳେ ଉଡ଼ିଯିବା ପାଇଁ ତଆର । ନିଜର ଭାରି ଭାରି ଦେହଟାକୁ ଆଉ କାହା ଉପରେ ଲଦିଦେଇ ମୋଟରେ କଟୁନଥିବା ଦିନ ଆଉ ରାତିକୁ ପାରହୋଇଯିବା ପାଇଁ ସତେ ଯେମିତ ସେ ପ୍ରସ୍ତୁତହୋଇ ରହିଚ । ଶକୁନ୍ତଳା ଅପେକ୍ଷା କରିରହିଚ ଦୁଷ୍ମନ୍ତଙ୍କୁ ।

ସେଇ ଦୁଷ୍ମନ୍ତ ଯେ ନିଜେ ଭଗବାନ୍ ସେ କଥା କିଏ କାହିଁ ଜାଣନ୍ତା ? କେମିତ କୋଉଠି ଦୁହିଁଙ୍କର ଦେଖା ହେଲା, ସେକଥା ଆଜି ବି କେହି ଜାଣନ୍ତି ନାହିଁ । ଶକୁନ୍ତଳା ଭୁଲିଲା ଭଗବାନଙ୍କର କବାଟ ପରି ଚଉଡ଼ା ଛାତି, ଶାଳଗଜା ପରି ମୋଟ ବାହୁ ଆଉ ସିଂହ ପରି ଠାଣିରେ । ଭଗବାନ୍ କଣ ଦେଖି ଭୁଲିଲେ ସେଇ ଏକା ଜାଣନ୍ତି । କଥାଟା ଫୁଟିଆରା ହେଲାବେଳକୁ ବିବାହିତ ଭଗବାନ୍ ଅମାବାସ୍ୟାର ଘୋର ଅନ୍ଧାରରେ ଶକୁନ୍ତଳାକୁ ଘୋଡ଼ା ପିଠିରେ ବସାଇ ଅଦୃଶ୍ୟ ହୋଇଯାଇଥିଲେ ।

ଖବର ପାଇ ଛତ୍ରାଣ ସିଂହେ ଦଳବଳ ନେଇ ଭଗବାନଙ୍କ ଘରକୁ ଆସିଲାବେଳକୁ ତାଙ୍କର ପଥରୋଧ କରିଥିଲେ ନିଜେ ସୁବାହୁ ରସିଂ । ଥର ମନହେଉଛି ସେ ଗୋଟିଏ କ'ଣ ଦଣ୍ଡଟା ସ୍ତ୍ରୀ ରଖିପାରେ । ଘରେ ଏ ଓଳି ସେ ଓଳି ଶହେଖଣ୍ଡ ପତ୍ରର ପଡ଼ୁଛି-ନହେଲା ଆଉ ଗୋଟାଏ ଅଧିକ ପଡ଼ିବ । ଘନଆର ଯଦି ସାହସ ପାଉଚ, ତେବେ ସେ ନିଜ ଭଉଣୀକୁ ଏଠୁ ଫେରାଇ ନେଇଯାଇପାରେ । ତେବେ ସେଥିପାଇଁ ତାକୁ ଲଢ଼େଇ କରିବାକୁ ପଡ଼ିବ । ବୀରଭୋଗ୍ୟା ବସୁନ୍ଧରା ।

ସୁବାହୁ ସିଂହଙ୍କ ହାତର ଝଲକ ଖଣ୍ଡା ଆଡ଼କୁ ଚାହିଁ ଘନଆର ହଲକ ଶୁଖି

ଯାଇଥିଲା । ତା'ର କରାମତି ତାଙ୍କୁ ଭଲଭାବରେ ଜଣା । ସେ ରାତ୍ରେ ରକ୍ତଗୁଡ଼ଲ ଶ୍ଳେବାଇ ଫେରିଯାଇଥିଲେ ନିଜର ଇଜ୍ଜତକୁ ରଣସିଂହଙ୍କ ଅନ୍ତଃପୁରରେ ବନ୍ଦୀରଖି ।

ସୁଯୋଗ ତାଙ୍କୁ ମିଳିଲା ଏତେଦିନେ । ପଲାଶ ପତ୍ର ଦାହ କରି ସେ ଭଉଣୀର ସୁଧସର ତ କେବେଠୁଁ ବଢ଼ାଇ ଦେଇଥିଲେ । ଏବେ ଭଣେଇର ସୁଧସରର ସମସ୍ତ ବ୍ୟବସ୍ଥା ସାରି ମନର ଆନନ୍ଦରେ ଭଗବାନଙ୍କ ଘରକୁ ଥାନେ ଛେଦାଲୁଗା ଆଉ ପାଞ୍ଚ-ଗୌଣୀ ଅରୁଆ ଚାଉଳ ପଠାଇଦେଇଥିଲେ । ଫିରଙ୍ଗୀ ସର୍କାର ତ ତାଙ୍କୁ କଣ ଗୋଟାଏ ବଡକଟିଆ ଉପାଧି ଦେଲେ, ଆଉ ରଣସିଂହଙ୍କ ଜାଗିର ବାଜ୍ୟାପ୍ତ ହୋଇ ଛଞ୍ଚାଣ ସିଂହଙ୍କ ନାମରେ ଦରଜ ହେଲା । ହେଲେ ଫଳଟା କ'ଣ ହେଲା ? ଲକ୍ଷ ପାଇକଙ୍କ ନିଷ୍ପାପ ରକ୍ତରେ ଭିଜିରହିଚ ଯୋଉ ଜମି, ତାକୁ କୋଉ ଛଞ୍ଚାଣ ସିଂହେ ଭୋଗ କରିପାରିଲେ ? ଉପରେ ବସିଚ ଯୋଉ ଲୋକଟି, ଯେତେ ଉଦାସୀନ ହେଉ, ସେ କ'ଣ ଆଉ କିଛି ଦେଖୁନାହିଁ ?

ନବ ସିଂହେ ଉପରକୁ ହାତ ବଢ଼ାଇ ଆଉ ଗୋଟିଏ ଦୀର୍ଘଶ୍ୱାସ ପକାନ୍ତି ।

ଦୁଃଖେ ଅର୍ଜିତ ଯେତେ ଧନ, ନା ସେ ନୁହେଁ ସୁଖେ ପ୍ରୟୋଜନ । ଘନିଆ ତ ତା'ର ଅପଘାତରେ ମଲା । ମଲା ନାହିଁ ଯେ ଜାଣ ମୁକ୍ତି ପାଇଗଲା । ଧନ କେତେଟା ଭିତରେ ସମ୍ପତ୍ତିବାଡ଼ି ପାଇଁ ଭାଇଭାଇରେ ଠେଙ୍ଗା ଧରାଧରି ହୋଇ ଯୋଉ ବାଣ୍ଟ ହେଲା, ସେ କଥା ଅଉ ଏ ମୁଲକରେ କିଏ ନଜାଣେ ?

ବଖେରହୋଇ ରଣସିଂହେ ଏଇସବୁ ଗପ ନିଜର ଉତ୍ତର ପୁରୁଷ ଆଗରେ ବଖାଣି ଯାଆନ୍ତି । ନିଜ ପିତାଙ୍କର ଅପମୃତ୍ୟୁର ଘଟଣାକୁ ସେ ଏଇ ସମୟରେ ଭୁଲିଯାଆନ୍ତି । କରିବାର କଣ ଅଛି ? ତାଙ୍କର ମରଣ ଯେ ବୀରର ମରଣ । ଫିରଙ୍ଗୀମାନେ ତାଙ୍କୁ ଖୋର୍ଦ୍ଧା ଉପକଣ୍ଠର ଗୋଟାଏ 'ଦୋକେନ୍ଦ୍ର' ବରଗଛର ଡାଳରେ ବାନ୍ଧି ଯେମିତି ଠିଆ ଟଙ୍ଗାଇ ଦେଇଥିଲେ, ସେଥିରେ ଏବେ କୋଉ ପୁରୁଷପଣିଆ ଅଛି ? ହଁ, ହାତରେ ଖଣ୍ଡେ ଓଲଗ୍ର ଖଣ୍ଡା ଥାଆନ୍ତା । ଦଶଜଣ ପାଇକ ଯଦି ତାଙ୍କୁ ମାଟି କାମୁଡ଼େଇ ଦେଇଥାଆନ୍ତେ, ତେବେ ସିନା ବୀରପଣିଆ ଦେଖାଣିଥାଆନ୍ତା । ରାତିର ଭଲ ଘଡ଼ି ଅନ୍ଧାରରେ ଗୋଟାଏ ଅସହାୟ ଲୋକର ଜୀବନ ନେବାରେ କୋଉ ବାହାଦୁରୀ ?

ରଣସିଂହଙ୍କର ଗୋଟାଏ ବଡ଼ ଦୁଃଖ—ନାତିଅଟା ମଣିଷ ହେଲା ନାହିଁ । ଆଉ ଯାହା ଯେମିତି ହେଲା କୁଳର ବିଦ୍ୟାଟାକୁ ବି ଭଲରେ ଶିଖିଲା ନାହିଁ । ମନରେ ଶ୍ରଦ୍ଧା ଥିଲେ ସିନା ବିଦ୍ୟା ଆୟତ୍ତ ହେବ ! ଏ ପୁଣି ଯୋଉ ସୋଉ ପାଠ ନୁହେଁ । ରୀତିମତ ସାଧନା ଲୋଡ଼ା । ଶିଖିବା ଭିତରେ ଶିଖିଲା କଣ ନା ମାଇକିନିଆଙ୍କ ଭଳି 'ଆ ଆ ଉ ଉ' ହେବାକୁ । ଆରେ ଛ୍ୟା—ଖଣ୍ଡା ତଲୁଆର ଲଠି ଧରା ହାତରେ ଏଇ ଫିରଙ୍ଗୀ ଯନ୍ତ୍ର ।

ଦ୍ୱିତୀୟ ପୁରୁଷ କାଳନ୍ଦୀଙ୍କ ଉପରୁ ସମସ୍ତ ଭରସା ତୁଟାଇଦେଇ ତେଣୁ ରଣସିଂହେ

ଏଥର ଲୁଟାସ୍ତ ପୁରୁଷ ଅମରଲୁ ଜାବୁଡ଼ ଧରିଛନ୍ତି । ବୁଢ଼ାଗଲ୍ପ ଲୋକର ବୁଢ଼ାଟିଅକୁ ଆଶ୍ରା । ଆଖି ବୁଜିବା ଆଗରୁ ତାକୁ ହେଲେ କେଉଁଠା ଇଲମ ଶିଖାଇଦେଇ ଯିବେ ।

କାଳନ୍ଦୀ ରଣସିଂହ ନିଜ ଜୀବନକାଳ ଭିତରେ କେବଳ ଗୋଟିଏ କାମ କରିଥିଲେ । ଛଷ୍ଠାଣ ସିଂ ପରିବାରର ଷୋଡଶୀ କନ୍ୟା ହେମମାଳାଙ୍କୁ ସଙ୍ଗତ ଶିଖାଉ ଶିଖାଉ ତାଙ୍କ ହାତଧରି ନିଜ ଘରକୁ ନେଇଆସିଥିଲେ ।

ଲୋକେ କହନ୍ତି, ଇତିହାସ କୁଆଡ଼େ ଥରକୁଥର ଲେଉଟି ଆସେ । ହେଲେ ଅବା ହୋଇଥିବ । ନବ ରଣସିଂହେ ଏ ସବୁ କଥା ବୁଝନ୍ତିନାହିଁ । ଭଗବାନ୍ ରଣସିଂହ ଥିଲେ ପୁରୁଷ ସିଂହ । ଶହ ଶହ ଲୋକଙ୍କ ଆଗରେ ଘୋଡ଼ା ପିଠିରେ ବସାଇ ସେ ନିଜର ମନର ମଣିଷକୁ ନେଇଆସିଥିଲେ ଠିକ୍ ପୃଥ୍ୱିରାଜ ସଯୁକ୍ତାକୁ ନେଇଆସିବା ଭଳି । ଆଉ ତାଙ୍କର ନାତି ହୋଇ ଇଏ କଣ କଲେ ? ରାତି ଅନ୍ଧାରରେ ଚୋରଙ୍କ ଭଳି ଲୁଚି ଲୁଚି ଅଧାଆଡ଼ୀ ଝିଅଟାକୁ ଘରୁ ବାହାରକରି ଆଣିଲେ ।

ଖବର ପାଇ ନବ ରଣସିଂହେ ହେଉନ ଦରଜା ଆଗୁଳି ହାତରେ ଲଠିଧରି ଠିଆ ହୋଇଥିଲେ । ତାଙ୍କ ମୁଣ୍ଡକୁ ରକ୍ତ ଚଢ଼ିଯାଇଥିଲା । ବିଭିହ୍ୟନ୍ତାର ରକ୍ତ ବହୁଚି, ଯାହାର ଧମନୀରେ ସେଇ କୁଳର ଝିଅ ଆସି ତାଙ୍କ ଘରେ ତାଙ୍କର ବଡ଼ବଡ଼ୁଅଙ୍କୁ ପାଣି ଟେକିବ ।

କଭିନେହିଁ । ସେ ବରଂ କାଳିଅକୁ ତେଜ୍ୟପୁତ୍ର କରିଦେବେ । ପୁଅ ହୋଇ ସେ ଯେତେବେଳେ କୁଳର ମାନ-ଗୌରବ ଆଡ଼କୁ ଟିକିଏ ବି ଚାହିଁଲା ନାହିଁ, ବାପ ହୋଇ ସେ କାହିଁକି ଏ ଅନାଚାରକୁ ପ୍ରଶ୍ରୟ ଦେବେ ? କାଳିକୁ କୁଳରେ କଳଙ୍କ ରଖିଯିବେ ?

ହାତର ଲଠି ଉପରେ ତାଙ୍କର ମୁଠା ଜାବ ପଡ଼ିଯାଇଥିଲା । ରଣସିଂହଙ୍କ ଅଗଣାର ତଳିଛ ମାଟି ସତେ ଯେମିତି ରଣସିଂହ ପରିବାରର କୁଳାଙ୍ଗାରର ରକ୍ତ ପିଇବା ପାଇଁ ଉନ୍ମୁଖ-ହୋଇ ରହିଥିଲା ।

ଏତିକିବେଳେ ନବବଧୂର ହାତଧରି କାଳନ୍ଦୀ ଆସି ଠିଆ ହୋଇଥିଲେ ରଣସିଂହ ପରିବାରର ଉଚ୍ଚ ପାହାଚ ତଳେ । ନବ ରଣସିଂହେ ଗର୍ଜନ କରିଉଠିଥିଲେ । କୁଳାଙ୍ଗାର ପୁଅର ମୁହଁ ଚାହିଁବେ ନାହିଁ ବୋଲି ଶପଥ ବାକ୍ୟ ଉଚ୍ଚାରଣ କଲାବେଳକୁ ତାଙ୍କ ଦେହ ଥରଥର ହୋଇ କମ୍ପିବାକୁ ଆରମ୍ଭ କରିଥିଲା ।

ଉତ୍ତେଜନାର ସେଇ ଚରମ ମୁହୂର୍ତ୍ତରେ ଘର ଭିତରୁ ବାହାରି ଆସିଥିଲେ ଶକୁନ୍ତଳା ରଣସିଂହ । ଭଗବାନଙ୍କର ବୀର୍ଯ୍ୟଶୁଲ୍କା କନ୍ୟା । ବୟସ ତାଙ୍କର ହୋଇଯାଇଥିଲା । ତଥାପି ବାର୍ଦ୍ଧକ୍ୟର ସେଇ ମହିମାମଣ୍ଡିତ ରୂପ ଆଡ଼େ ଚାହିଁ ନବ ରଣସିଂହେ ଆଖି ତଳକୁ କରିଥିଲେ ।

ଚୁପ୍‌ଚାପ୍ ଶକୁନ୍ତଳା ନବଙ୍କ ପାଖକୁ ଚାଲିଆସିଥିଲେ । ତାଙ୍କ ହାତରୁ ଲଠି ବାହାର କରିନେଇ କହିଲେ—ଏଇ ତୁ କ'ଣ କରିବାକୁ ଯାଉଚୁ ? କାହାକୁ ତୁ ଶାସ୍ତି ଦେବୁ ? ନିଜର ରକ୍ତକୁ ?

ରଣସିଂହେ ନିଜର ଏଇ ବିମାତାଙ୍କୁ କିଛି କହିବା ଆଗରୁ ଶାନ୍ତ ନିଷ୍କମ୍ପ କଣ୍ଠରେ ଆତୁର କହିଥିଲେ—ଦୁଃଖ ଆଉ ଯନ୍ତ୍ରଣା ଏଇତ ମଣିଷ ପାଇଁ ଚିରକାଳ ଥିଲା, ଅଛି ଆଉ ରହିବ । ଯୁଆଡ଼େ ଚାହିଁବ୍ ସେଇଆଡ଼େ ସିଏ । କୋଉକାଳର ଗୋଟାଏ ଘଟଣାକୁ ମନରେ ପୋଷି ନିଜର ସୁଖ ଶାନ୍ତିକୁ ଜାଳିପୋଡ଼ି ଦେବାରେ କ'ଣ ମଣିଷପଣିଆ ରହିଚି ? ପୁଣି ଏଇ ନିରୀହ ଝିଅଟାର ଦୋଷ କିଣ ?

ଶ୍ୱାସରୁଦ୍ଧକାରୀ ଏଇ ନାଟକର ଶେଷ ଦୃଶ୍ୟରେ ହେମମାଳା ସେଦିନ ଠିଆ ହୋଇଥିଲେ ଏକ ବିଷାଦମୟୀ ମୂକ ଚରିତ୍ର ରୂପେ । ଏତିକବେଳେ ଦମକାଏ ପବନ ତାଙ୍କର ଅବିନ୍ୟସ୍ତ ଓଢ଼ଣାକୁ ତଳକୁ ଖସାଇ ଦେଇଥିଲା ।

ସେଇ ଅଡ଼କୁ ମୁହୂର୍ତ୍ତେ ଅନାଇ ତାଙ୍କର ସେଇ ନୀଳ ଇନ୍ଦୀବର ଜିଣା ଅଶ୍ରୁସିକ୍ତ-ଲୋଚନ ତଳେ ଟଳ ଟଳ ଅଶ୍ରୁରେଖା ଆଡ଼େ ଅନାଇ ରଣସିଂହଙ୍କର ପଥର ଭଳି ଦୃଢ଼ ଲହୁଣି ଭଳି ତରଳିବାକୁ ଆରମ୍ଭ କରିଥିଲା । ତାଙ୍କ ଆଖି ଆଗରେ ଆସି ଠିଆ ହୋଇଥିଲା ତାଙ୍କର ଅନୂଢ଼ା ଷୋଡ଼ଶୀକନ୍ୟା କଟଶୃଇ । ଆହା, ସତରେ ତ ଏଇ ଫୁଲଭଳି ନିଷ୍ପାପ ଝିଅଟାର ଦୋଷ କ'ଣ ? ନବ ରଣସିଂହଙ୍କର ଉଦ୍ୟତ ଲଠି ସେଦିନ ନଇଁଆସିଥିଲା ।

ପିତୃତ୍ୱ ପରାଜିତ ହୋଇଥିଲା ମମତାର ଗହନ ବନ୍ଧନ ନିକଟରେ । ହୁଳହୁଳି ଆଉ ଶଙ୍ଖଧ୍ୱନି ମଧ୍ୟରେ ଶକୁନ୍ତଳା ହେମମାଳାଙ୍କର ହାତଧରି ତାଙ୍କୁ ରଣସିଂହଙ୍କର ଅନ୍ତଃପୁରକୁ ବାଟ କଢ଼ାଇ ନେଇଥିଲେ ।

ଦ୍ୱିତୀୟ ପର୍ଯ୍ୟାୟରେ ବ୍ୟାପାରଟା କୋର୍ଟ କଚେରି ପର୍ଯ୍ୟନ୍ତ ଗଡ଼ିଥିଲା । ରଣସିଂହ ସେଦିନ ପୁରୋହିତ, ବାଜିକ, ବଙ୍ଗୁଆ, ଢୋଲିଆଙ୍କର ଏକ ବିରାଟ ଶୋଭାଯାତ୍ରାରେ କୋର୍ଟରେ ଉପସ୍ଥିତ ହୋଇ ଏ ବିବାହର ବୈଧତା ପ୍ରମାଣ କରିଦେଇ ଆସିଥିଲେ ।

ବ୍ୟାପାରଟା ସହଜ ହୋଇଯାଇଥିଲା । ସମସ୍ତେ ଧୀରେ ଧୀରେ ଘଟଣାଟିକୁ ଭୁଲିଗଲେ ମଧ୍ୟ ଏକା ନବ ରଣସିଂହଙ୍କ ମନର କେଉଁ କୋଣରେ ଅସନ୍ତୋଷର ବହ୍ନିଏ ନିଆଁ ଚାପାପଡ଼ି ରହିଯାଇଥିଲା । ସାମ୍ନାରେ ପଡ଼ିଗଲେ ସେ ଅପଦାର୍ଥ ପୁଅ ଆଡ଼କୁ କଟମଟ କରି ଅନାଉଥିଲେ ।

ଗୋଟାଏ ଯୁଗ ତ ଏ ଭିତରେ ବିତିଗଲା । ତୃତୀୟ ପୁରୁଷ ଅମରକୁ ତ ଏବେ ଦଶବର୍ଷ ହେଲାଣି । କେତେଦିନ ଆଉ ସେଇ ଘଟଣାକୁ ରଣସିଂହେ ମନରେ ପୋଷି ରଖିବେ ?

ଏଥର ତୃତୀୟ ପୁରୁଷ ଅମର ରଣସିଂହଙ୍କ କଥା । ଦ୍ୱିତୀୟ ପୁରୁଷକୁ ଝର୍ଚ୍ଚର ଝାଡାରେ ଲେଙ୍ଗିଦେଲାଦିନୁ ନବ ରଣସିଂହ ଖୁବ ସତର୍କ ହୋଇଯାଇଛନ୍ତି । ଅନ୍ଧ ଥରେ ବାଡ଼ି ହଜାଏ । କାଳିଆ ସମ୍ପର୍କରେ ଉଦାସୀନ ରହି ସେ ଯେଉଁ ଭୁଲ୍ କରିଛନ୍ତି, ତାକୁ ସୁଧାରିବେ, ତାର ପୁଅକୁ ମଣିଷ ଭଳି ମଣିଷଟାଏ କରି ଗଢ଼ିଦେଇ ।

ପାରୁପର୍ଯ୍ୟନ୍ତ ରଣସିଂହେ ତେଣୁ ଅମରକୁ ପାଖଛଡ଼ା କରନ୍ତି ନାହିଁ । ଅତି ଛୋଟରୁ ସେଇ ଦୁଧକିଆ ପିଲାଟାର ତାଲିମ ଆରମ୍ଭ ହୋଇଯାଏ । ଟାଉପାଢ଼ି ଉପରେ ପିତାମହ ଆଉ ପୌତ୍ର ହାତରେ ଲଠିଧରି ଚିତାବାଘ ଭଳି ପାହୁଲ ପକାଇ ପରସ୍ପରକୁ ବେକାଇବାରେ ପକାଇବାକୁ ଚେଷ୍ଟା ଚଳାଇଯାଆନ୍ତି । ବାଡ଼ିଖେଳରୁ ଆରମ୍ଭହୋଇ ଶେଷରେ ଖଣ୍ଡା ବୁଲାଇବାରେ ଏହି ଅଭ୍ୟାସ କାର୍ଯ୍ୟକ୍ରମ ଶେଷ ହୁଏ । ରଣସିଂହଙ୍କର ଖୁବ ଦୁଃଖ ଯେ, ଅମାର ମାଇଚିଆ ବାପଟା ଅଠଟା ବେଳକୁ ଆସି ଟାଉପାଢ଼ି ପାଖରେ ଠିଆ ହୋଇଯାଏ । ତାକୁ ଛାଡ଼ିଦେବାକୁ ହେବ । ନିତ୍ୟକର୍ମ ସରିଲେ ବାପ ପୁଅ ସ୍କୁଲକୁ ବାହାରିଯିବେ ।

ରଣସିଂହେ କିଛି କହିପାରନ୍ତି ନାହିଁ । ଅମରକୁ ତାଙ୍କୁ ଛାଡ଼ିଦେବାକୁ ହୁଏ । ପାଞ୍ଚଟା ବେଳେ ସ୍କୁଲରୁ ଫେରିଲେ ଆଉ ଘଣ୍ଟାଏଘଣ୍ଟେ ସେ ତାକୁ ଧାଟରେ ପାଆନ୍ତି । ତାଙ୍କର ଏକମାତ୍ର ସନ୍ତୋଷ ଯେ, ପିଲାଟା ଯେମିତି ଟପ୍‌ଟପ୍ ସବୁ ତାଲିମ ହାସଲ୍ କରିଚାଲିଛି, ଖୁବ୍ ଅଳ୍ପଦିନ ଭିତରେ ସେ ଏ ଗାଁର ସବୁଟୋକାଙ୍କର କାନ କାଟି ଛାଡ଼ିଦେବ ।

ଜୀବନ ଚାଲିଥିଲା ଏମିତି । ଏତିକିବେଳେ ପଡ଼ିଲା ମନ୍ତ୍ରୀଙ୍କ ଗସ୍ତ । ପଞ୍ଚାୟତ ସମିତିର ଟୋକା ଚେୟାରମେନ୍ ରଣସିଂହଙ୍କ ଟାଉପାଢ଼ିକୁ ଧାଉଡ଼ି ଦେଲେ । ମନ୍ତ୍ରୀ ପଦଯାତ୍ରାରେ ଗାଁ ପରିକ୍ରମା କରୁଥିଲାବେଳେ ତାଙ୍କ ଗହଣରେ ପାଇକଅଖଡ଼ା ଦଳ ନବାହାରିଲେ ଗାଁର ଇଜ୍ଜତ ଧ' କଡ଼ାର ହୋଇଯିବ ।

ମାଙ୍କଡ଼ ହାତରେ ଶାଳଗ୍ରାମ ଛାଡ଼ିଦେବାକୁ ରଣସିଂହଙ୍କର ମୋଟେ ଇଚ୍ଛା ନଥିଲା । ହେଟ ପାଇ ଭୁବନେଶ୍ୱରରେ ଅଣ୍ଡାଘରେ ବସିପଡ଼ିଲେ ଦୁନିଆର ସବୁକଥା ଜାଣିହୁଏ ନାହିଁ । କଣ ବୁଝିବେ ମନ୍ତ୍ରୀ ଏ ଅଖଡ଼ାର ମରମ ? କେତେ ଲହୁ ଆଉ ଝାଳ ଦେଇ ଯେ ଏ ବିଦ୍ୟା ଆୟତ୍ତ କରିବାକୁ ହୁଏ, ସେ କାହିଁକି ବୁଝିବେ ? ତାଙ୍କ ପାଇଁ ଇଏ ହେଲା ଗୋଟାଏ ସୁଆଙ୍ଗ ସିନା ।

ଚେୟାରମେନ୍ ଏଥର ପାଶୁପତ ପ୍ରୟୋଗ କଲେ । 'ଭାରତ ଉତ୍ସବ'ରେ ଯୋଗ ଦେବା ପାଇଁ ରମା, ଦାମା, ଶାମା ନ୍ୟୁୟର୍କ, ପାରିସ ଘୁରିବୁଲୁଛନ୍ତି । ସଂସ୍କୃତି ମନ୍ତ୍ରୀଙ୍କ କଲମ ଗାରକରେ ଏ ଗାଁର ପିଲାଙ୍କ ଭାଗ୍ୟ ଖୋଲିଯାଇପାରେ । ବାହାରେ ପାଞ୍ଚଜଣରେ ଯେବେ ନାଁ ନପଡ଼ିଲା, ତେବେ ଏତେ କଷ୍ଟ ସହି, ଏତେ ସାଧନା କରି ଏ ବିଦ୍ୟା ଶିଖିବାର ବା କି ପ୍ରୟୋଜନ ?

ମରମ କଥାଟି କହିଲେ ଟେହ୍ୱୋର୍‌ମେନ । ଯୋଉ ବାହାଘର ପାଇଁ ଯୋଉ ମନ୍ତ୍ର । ସତକଥା ତ, ବିଦ୍ୟାକୁ ଗୋପନକରି କ ଲଭ ?

ଅଚାନକ ରଣସିଂହେ ସ୍ତବ୍ଧ ହୋଇଗଲେ । ଗାଁଦାଣ୍ଡରେ ଚାଲିଚ ଶୋଭାଯାତ୍ରା । ମିଲଖଦଡ଼ର ସ୍କୁ୍ଟର ଫାଇନ୍ ବକଧବଳ ପୋଷାକରେ ସୁସଜ୍ଜିତ ହୋଇ ସଦା ସତର୍କ ଭୁଆ ବୋଲେଇଟି ଭଳି ମନ୍ତ୍ରୀ ଗାଁ ଦାଣ୍ଡରେ ଥାବା ଗୁପିଗୁପି ଚାଲିଛନ୍ତି । କ୍ଷୁମ୍ରକର୍ଣ୍ଣୀଧଡ଼ି ପାଳୁଡ଼ା ଝିଣ୍ଡିଏ ତାଙ୍କ ବାମକାନ୍ଧରୁ ତଳକୁ ଲମ୍ବିଚ । ଇଏ ହେଉଚ ଆଜକାଲର ଗୋଟାଏ ଫେସନ । ରଣସିଂହେ ଥରେ ସେଆଡ଼କୁ ଅନାଇଦେଇ ମୁହଁ ଫେରାଇନେଲେ । ମନ୍ତ୍ରୀଙ୍କ ଗହଣରେ ଶ'କଡ଼ା ଲୋକ ।

ଆଗରେ ଚାଲିଚ ଅଖଡ଼ାଦଳ, ଢୋଲର ତାଳେ ତାଳେ ପାଦପକାଇ ନାଚ ନାଚ । କହୁଣୀ ପର୍ଯ୍ୟନ୍ତ ପିନ୍ଧାଯାଇଚ ପଟାକାଠି । ସେଥିରୁ ଝମଝମ ଶବ୍ଦ ବାହାରୁଚ । କାହା ହାତରେ ଲଠି ତ କାହା ହାତରେ ଜଙ୍ଗଧରା ଓଲଗା ଖଣ୍ଡା । ମୁହଁରେ ପାଇକ କୁହାଟ ।

ଝୁଲକା ଉପରକୁ ଥରେ ଚାହିଁଦେଇପକେଇଲେ ରଣସିଂହେ ନିଜକୁ ଭୁଲିଯାଆନ୍ତି । ଢୋଲର ତାଳେ ତାଳେ ତାଙ୍କ ପାଦ ବି ପଡ଼ିବାକୁ ଆରମ୍ଭ କରେ । ଧନୁଭଳି ଦେହକୁ ବଙ୍କାଇ, ହାତର ଲଠିକୁ ଘୁରାଇ ଘୁରାଇ ସେ ବି ଅସର ମଝିକୁ ଡେଇଁପଡ଼ନ୍ତି । ପାଇକାଳ ରକ୍ତ ତାଙ୍କର ଟକମକହୋଇ ଫୁଟିବାକୁ ଆରମ୍ଭ କରେ, ଅଉ ପାଟିରୁ ବାହାରେ କଳକଳା ରଡ଼ି ।

ଶୋଭାଯାତ୍ରା ମଝିରେ ମଝିରେ ଅଟକି ଯାଉଛି । ଦୁଇଜଣ ପିଲା ବାଡ଼ିବୁଲା କୌଶଳ ଦେଖାଉଛନ୍ତି । ଖଣ୍ଡା ବୁଲାଇ ବୁଲାଇ ଅନ୍ୟକୁ ଧରାଶାୟୀ କରିବାକୁ ଚେଷ୍ଟା କରୁଛନ୍ତି । ଝଁଝାଳୁଅ ଢୋଲମାଡ଼ର ଶବ୍ଦରେ ତାଙ୍କ ରକ୍ତରେ ହୁଏତ ଉଦ୍ଦୀପନାର ଲହରୀ ଦୌଡ଼ି ଯାଉଛି । ଅବସ୍ଥା ଏମିତି ହେଉଛି ଯେ, ମଝିରେ ପଶି ସେମାନଙ୍କୁ ଦୁଇକଡ଼କୁ ଆଉଜାଇ ନ ନେଲେ ସେମାନେ କଣ ନାଇଁ କ'ଣ କରିପକାଇବେ ପରା ?

ଏତିକବେଳେ ଘଟଣାଟି ଘଟିଗଲା । ଢୋଲର ତାଳେ ତାଳେ ପାଦ ପକାଇ ଅସର ଭିତରକୁ ଲଠି ବୁଲାଇ ବୁଲାଇ ପଶିଆସିଲା ଅମର । ସାଇଁ ସାଇଁ ହୋଇ ତା' ହାତର ଲଠି ଘୂରିବାକୁ ଲାଗିଲା । କିଛି ପରେ ଜଣେ ଆଖଡ଼ାପିଲା ତା' ସହିତ ଲଠି ଖେଳିବାକୁ ଲାଗିଲେ ।

ଉତ୍ତେଜନାରେ ରଣସିଂହଙ୍କର ନିଃଶ୍ୱାସ ବନ୍ଦ ହୋଇଯିବା ଭଳି ଲାଗୁଥାଏ । ଆଜି ତାଙ୍କର ପରୀକ୍ଷା । ପାଞ୍ଚବର୍ଷ ଧରି ଯାହା ସେ ଅମରକୁ ଶିଖାଇଛନ୍ତି, ଏଇ ଆସରରେ ତା'ର ଭଲମନ୍ଦ ଜଣାପଡ଼ିବ । ଅମରର ହୁଙ୍କାର ସହିତ ରଣସିଂହଙ୍କର ହୁଙ୍କାର ମିଶିବାକୁ ଲାଗିଲା ।

ଗୋଟିଏ ପରେ ଗୋଟିଏ ଆଖଡ଼ା ପିଲା ପୃଷ୍ଠଭଙ୍ଗ ଦେଉଥାନ୍ତି । ଅମର ହାତର ଗୋଟିଏ ପାହାରରେ କାହାର ଲାଠି ଖସିଯାଉଥାଏ ତ କାହାର ଲାଠି ଅଧା ଭାଙ୍ଗି ଦ'ଗଡ଼ ହୋଇଯାଉଥାଏ । କାହାର କାନ୍ଧରେ ଅପାତବାଜ ପଡ଼ୁଯାଉଥାଏ । ଶହ ଶହ ଲୋକ ରୁଦ୍ଧଶ୍ୱାସରେ ଏ ଦୃଶ୍ୟ ଦେଖୁଥାଆନ୍ତି ।

ଲଢ଼େଇ ସେଇଠି ଶେଷ ହୋଇଯିବା କଥା, ସେଠି ଶେଷ ହେଲା ନାହିଁ । ଶେଷ ଆଖଡ଼ାପିଲାଟି ପରାସ୍ତହୋଇ ଫେରିଯିବା ପରେ ବି ଅମର ତା'ର ସେମିତି ନାଚକୁଦ ଲାଠି ଘୂରଉଥାଏ । କାଳନ୍ଦୀ ରଣସିଂହେ ଥରେ ପୁଅକୁ ନିବର୍ତ୍ତାଇବାକୁ ଚେଷ୍ଟା କରିଥିଲେ । ମାତ୍ର ଅମର ନିଷ୍ଠୁର ଭାବରେ ତାଙ୍କୁ ପଛକୁ ଫେରାଇଦେଲା ।

ଅମରର ମନୋଭାବ ବୁଝିଲେ ନବ ରଣସିଂହେ । ଅମର ଯେପରି ସେମିତି ଅହ୍ୱାନ ଜଣାଉଛି—କିଏ ଅଛ ମର୍ଦ୍ଦ ପିଲା—ଆସ, ମୋର ସାମ୍ନାକର ।

ରଣସିଂହଙ୍କର ଗ୍ଧ ଗଙ୍ଗରେ ଫୁଲିଉଠିଲା । ଏଇଅଳ ସେ ବୁଝିଥାନ୍ତି । ଅମର ତାଙ୍କର ନାଁ ରଖିଛି ।

ଅମର ତଥାପି ସେମିତି ଲାଠି ଘୂରାଇ ଚାଲିଛି । ରଣସିଂହେ ଅଉ ନିଜକୁ ଦମ୍ଭାଇ ପାରିଲେନାହିଁ । ତାଙ୍କ ରକ୍ତରେ ଯେପରିସେମିତି ନିଆଁ ଲାଗିଗଲା । ଗୋଟାଏ ଭୟଙ୍କର ହୁଙ୍କାର ଛାଡ଼ି ସେ ଆସର ଭିତରକୁ ଡେଇଁପଡ଼ିଲେ ।

ତାଙ୍କ ହାତର ଲଠି ଅନେକ ଦିନପରେ ପବନ କାଟିବାକୁ ଲାଗିଲା । ଅମର ପ୍ରଥମେ ତ ଆଶ୍ଚର୍ଯ୍ୟରେ ନିଜର ଗୁରୁଙ୍କ ଆଡ଼କୁ ଅନାଇ ରହିଲା । ତା'ପରେ ସେ ମଧ୍ୟ ଆତ୍ମରକ୍ଷା କରିବାରେ ଲାଗିପଡ଼ିଲା ।

ଗଡ଼ ନରସୁରର ଲୋକେ ସେଦିନ ଏକ ବିସ୍ମୟକର ଦୃଶ୍ୟ ଦେଖିଲେ । କୁରୁକ୍ଷେତ୍ର ପ୍ରାଙ୍ଗଣରେ ଯେପରି ସେମିତି ଗୁରୁ ଦ୍ରୋଣ ଆଉ ଶିଷ୍ୟ ଅର୍ଜୁନ ମୁହାଁମୁହିଁ ହୋଇ ଠିଆ ହୋଇଛନ୍ତି !

ରଣସିଂହେ ଏ ଭିତରେ ଥକି ପଡ଼ିଲେଣି । ଅମରକୁ ମାଟିକାମୁଡ଼ାଇବାର ତାଙ୍କର ସମସ୍ତ ଚେଷ୍ଟା ବ୍ୟର୍ଥ ହୋଇଯାଉଛି । ବେଳକୁବେଳ ତାଙ୍କର କ୍ରୋଧ ବଢ଼ିବାରେ ଲାଗିଛି । ତାଙ୍କ ମନ୍ଦାରଫୁଲିଆ ଆଖିରୁ ଯେପରି ସେମିତି ନିଆଁ ବାହାରୁଛି । ପାଦ ଦୁଇଟି ଥରଥର ହୋଇ ଥରିବାରେ ଲାଗିଛି । ପାଟିରୁ ଫେଣ ବାହାରିବାର ଉପକ୍ରମ ହେଲିଣି ।

ତଥାପି ସେ ଲଢ଼ୁଛନ୍ତି । ଆଗରେ ଅମର ନୁହେଁ, ଯେପରି ସେମିତି ତାଙ୍କର ଚରଣତୁ ଘନ ଛାଆଟିଏ ଠିଆହୋଇଛି । ଲଠିହାତରେ ତାଙ୍କର ପୌରୁଷକୁ ଉପହାସ କରୁଛି ।

ନବ ରଣସିଂ ନିଜକୁ ଭୁଲିଯାଉଛନ୍ତି । ତାଙ୍କର ମନ କେବଳ ଗୋଟିଏ କଥା ଶୁଣି ହେଉଛି । ଏଇ ସେଇ ଦୁଷ୍ମନ, ଯାହାପାଇଁ ତାଙ୍କର ବାପା ଅକାଳରେ ଝଡ଼ିପଡ଼ିଥିଲେ ।

ଏଇ ସେଇ ଚଣ୍ଡାଳ, ଯାହାର ଦୂଷିତ ରକ୍ତର ଧାର ଯୁଗଯୁଗରୁ ପ୍ରବାହିତ ରଣସିଂହ ବଂଶର ପବିତ୍ର ରକ୍ତକୁ କଳୁଷିତ କରିଚି । ଆଜି ସେ ଏହାର ଶେଷ ଦେଖିବେ ।

ତାଙ୍କ ଗୁରୁଆଡ଼େ ଛକ୍କାଣସିଂର ଦୈତ୍ୟାକାର ମୁଖମଣ୍ଡଳ ଘୃଣା ପବନରେ ଝୁଲି ବୁଲୁଥିଲା ।

ଅମରର ଶକ୍ତି ଏଥର ଜବାବ ଦେବାକୁ ଆରମ୍ଭ କରିଥିଲା । ମହାଭାରତର ଅଭିମନ୍ୟୁ ଭଳି ସେ ଏକା ଏକା କୋଡ଼ିଏ ରଥୀଙ୍କ ପରାସ୍ତ କଲାପରେ ଏବେ ନିଜେ କ୍ଲାନ୍ତ ହୋଇ ପଡ଼ିଥିଲା ।

ରଣସିଂ ସୁଯୋଗ ଖୋଜୁଥିଲେ । ଆଉ ବେଶି ବେଳ ଠିଆହୋଇ ରହିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ । ଆଜି ତାଙ୍କୁ ଫଇସଲା କରିବାକୁ ପଡ଼ିବ ।

ଧାର ଶ୍ରାବଣର ଜଳଧାର ପରି ଅମର ଦେହରୁ ଝରଝର ପାଣି ବହିଯାଉଚି । କପାଳ ଉପରୁ ଟପ୍ ଟପ୍ ଝାଳ ବହି ତା' ଆଖିଦିଓଟିକୁ ବନ୍ଦ କରିଦେଉଚି । ଓଦାଳିଆ ହାତରେ ଲାଠି ଧରିବା ଆଉ ସମ୍ଭବ ହେଉନାହିଁ ।

ତାହାର ହାତରେ ଲଠି ଧରିବାରୁ ଅମର ବାମ ହାତରେ କପାଳର ଘର୍ମବିନ୍ଦୁକୁ ପୋଛିବାକୁ ଚେଷ୍ଟା କରୁଥିବାବେଳେ, ରଣସିଂହଙ୍କର ଲାଠିର ବଜ୍ର ଆଘାତରେ ଅଚେତହୋଇ ଟଳିପଡ଼ିଲା ।

ଗଡ଼ ନରସୁର ସେଦିନ ସ୍ତବ୍ଧ ହୋଇ ହୋଇ ଏ ଅଭାବନୀୟ ଦୃଶ୍ୟଦେଖୁଥିଲା-ବେଳେ ରଣସିଂହ ନିଷ୍ପଳକ ଚକ୍ଷୁରେ ଭୂତଳଶାୟୀ ନିଜର ପ୍ରିୟ ପୌତ୍ରକୁ ନିରୀକ୍ଷଣ କରୁଥିଲେ । ତାଙ୍କର ନାସିକାରୁ ପ୍ରଳମ୍ବ ଅଣରୁଣ ବହିବାକୁ ଆରମ୍ଭ କରିଥିଲା । ଦୃଷ୍ଟିରେ ଫୁଟି ଉଠିଥିଲା ଅଚ୍ଛନ୍ନତା । ସେ ଯେମିତି ଆଉ ଠିଆହୋଇ ପାରୁନଥିଲେ ।

'ଆରେ ମୋ ଅମାରେ ବୋଲି ଛାତିଥରା କୁହାଟଟାଏ ମାରି ରଣସିଂହେ ମାଟି ଉପରେ ଟଳିପଡ଼ିଲେ ।

ଗଡ଼ ନରସୁର ଆକାଶରେ ସେଦିନ ସତେକି ଅକାଳବଜ୍ର ଖସିପଡ଼ିଲା ।

---

# ମହାନଗର

ସେଦିନ ବଲମୋରିଆ ମାନସନ୍‌ରେ ଗୋଟାଏ ଅଘଟଣ ଘଟିଗଲା । ମହାନଗରର ସଦା ବ୍ୟସ୍ତବ୍ୟଧ ଅଶାନ୍ତ ବାତାବରଣରେ ତାହା ଗୋଟାଏ ଘୂର୍ଣ୍ଣି ସୃଷ୍ଟିକଲା ଠିକ୍ । ତେବେ ସେ ନିତାନ୍ତ ସାମୟିକ । କିଛିକ୍ଷଣ ପରେ ଏହି ଘୂର୍ଣ୍ଣି ଶାନ୍ତ ହୋଇଆସିଲା, ଠିକ୍ ଯେମିତି ଦ୍ୱିପ୍ରହର ସମୁଦ୍ର । ଗର୍ଜନ ଥିଲା, ତେବେ ମର୍ତ୍ତିନ ନଥିଲା । ଏ ସବୁଥିରେ ସଦା ଅଭ୍ୟସ୍ତ ମହାନଗରର ନାଗରିକଗଣ ଯଥାରୀତି ନିଜର କାମଦାମରେ ଲାଗିଗଲେ । ଯେମିତି କେଉଁଠି କିଛି ହୋଇନାହିଁ ।

ଯିଏ ଗଲା ସିଏତ ଚିରଦିନ ପାଇଁ ଗଲା । ତା' ପାଇଁ ମହାନଗରର ସଦା ଅଶାନ୍ତ ବୁକୁରେ ଗ୍ରେଟ ଅବର୍ତ୍ତିଟିଏ ସୃଷ୍ଟିହେଲା । ମୁହୂର୍ତ୍ତିକରେ ସବୁ ପୁଣି ସମତଳ ହୋଇଗଲା ।

ନଗର ନୁହେଁ ତ, ଇଏ ଯେମିତି ଏକ ପ୍ରାଗୈତିହାସିକ ମହାକାୟ ସରୀସୃପ । ସଦା କ୍ଷୁଧିତ ମୁଖ ତା'ର ଚିର ଉନ୍ମୁକ୍ତ । ପ୍ରତ୍ୟେକ ମୁହୂର୍ତ୍ତରେ ହେ ହେ ମଣିଷ ବସ୍‌ରେ, କାର୍‌ରେ, ରେଲ୍‌ରେ, ଟ୍ରକ୍‌ରେ ଧାଇଁଆସି ତା'ର ସେଇ ମୁଖବିବର ମଧ୍ୟକୁ ଝାମ୍ପି ଦେଉଛନ୍ତି । କିଏ ଆଗ ପଶିବ, ସେଥିପାଇଁ ପ୍ରତିଯୋଗିତାର ଲମ୍ବାଧାଡ଼ି ପଡ଼ିଯାଉଛି । ତା'ର ବିଶାଳକାୟ ଉଦରରେ ସ୍ଥାନ ଟିକିଏ ପାଇବା ହିଁ ହୋଇଛି ଆଜିର ମଣିଷର ଏକମାତ୍ର ଲକ୍ଷ୍ୟ ।

ସମସ୍ତେ ଭାବୁଛନ୍ତି ଇଏ ମୋର ନଗର, ମୋର ସ୍ୱପ୍ନ, ମୋର ସତ୍ତା ଆଉ ଭବିଷ୍ୟତ । ମାତ୍ର କେହି ଜାଣିନାହାନ୍ତି, ମହାନଗର କାହାର ନୁହେଁ । ତା'ର ସିମେଣ୍ଟ କଂକ୍ରିଟ୍ ଗ୍ଲାନିରେ କାହାର ପାଇଁ ଟିକିଏ ହେଲେ ମମତା ନଥାଏ ।

ସେଇ ମହାନଗରର ବଲ୍‌ମୋରିଆ ମାନସନ୍ । ଆଧୁନିକ ସ୍ଥିତର ଡଉଆସିଲଖୋଲ ଭଳି ଇମାରତଟି ଆକାଶର ବୁକୁ ଚିରି ଉପରକୁ ଉଡ଼ିଯାଇଛି । ନଅମହଲାରେ ସର୍ବମୋଟ ଚୌବନଟା ଫ୍ଲାଟ । ପ୍ରତ୍ୟେକ ମହଲାରେ ଛଅଟି ଲେଖାଁ ଫ୍ଲାଟ୍ । ଦୁଇଧାଡ଼ି ଘର ମୁହାଁମୁହିଁ ହୋଇ । ମଝିରେ ଲମ୍ବା କରିଡ଼ର୍ । ବାହାର ପଟକୁ ଗ୍ରେଟ ବାଲ୍‌କୋନି— ତଳକୁ ଅନାଇବାକୁ ବାହାର ଦୁନିଆ ସହିତ ଯୋଗାଯୋଗ କରିବାକୁ ଗୋଟିଏ ମାଧ୍ୟମ । ପ୍ରାୟ ଦେଖାଯାଏ, ଚତୁର୍ଥ ମହଲାର ମିସେସ୍ ମିରଚନ୍ଦାନି, ତୃତୀୟ ମହଲାର ମିସେସ୍ ଶ୍ରୀବାସ୍ତବଙ୍କ ସହିତ ଉଚ୍ଚସ୍ୱରରେ

ଆଳାପ ଚଳାଇଛନ୍ତି । ପଞ୍ଚମ ମହଲର ଦୀପକ ଷଷ୍ଠମହଲାର ବାଲ୍‌କୋନିକୁ ଲକ୍ଷ୍ୟକରି ଉଚ୍ଚ ସ୍ୱରରେ ସଙ୍ଗୀତ ଅଭ୍ୟାସ କରୁଛି; 'ସାଥିରେ, ତେରେ ବିନା ଭି କ୍ୟା ଜିନା'—ଆଉ ଅକସ୍ମାତ୍ ଉକ୍ତିଷ୍ଟ ବାଲ୍‌କୋନିରେ ଗୋଟିଏ ଚନ୍ଦ୍ରର ଉଦୟ ହେଉଛି । ସମସ୍ତେ ଜାଣିଥାନ୍ତି ଝିଅଟିର କର୍ମଜୀବୀ ବାପା ମା କେହି ଏ ସମୟରେ ଘରେ ନାହାନ୍ତି ।

ଲମ୍ବା କରିଡ଼ର ବି କୌଣସି ସମୟରେ ଖାଲି ନଥାଏ । ଫ୍ଲାଟ୍‌ର ଛୋଟ ଛୋଟ ପିଲା ଘର ଭିତରେ ଟ୍ରାଇସାଇକେଲ୍ ଚଳାଇବାକୁ କୌଣସି ସୁବିଧାଜନକ ସ୍ଥାନ ନପାଇ ପ୍ରାୟ କରିଡ଼ର୍‌କୁ ବାହାରି ଆସନ୍ତି । ପଛେ ପଛେ ଧାଇଁଥାଆନ୍ତି ସେମାନଙ୍କର ସଦା ଆତଙ୍କିତ ମା, ବଡ଼ଭଉଣୀ ଅଥବା ଆୟା । 'ଦେଖୀ ମତ୍ ଯାଓ', 'ଖୋକା ପଡ଼େ ଯାବେ', 'ଓରେ ନାଇକ ଇଲବ୍' ପ୍ରଭୃତି ଭିନ୍ନ ଭିନ୍ନ ଭାଷାର ବିଭିନ୍ନ ସ୍ୱର ଗ୍ରାମର ମିଶାମିଶି କକ୍‌ଟେଲ୍‌ରେ କରିଡ଼ର ଧ୍ୱନିତ ହୋଇଉଠେ । ସେଇ କରିଡ଼ରରେ ଆଗେଇ ଯାଉ ଯାଉ ଅଗ୍ରୱାଲ୍ ସାହେବ, ଦାସବାବୁଙ୍କ ସଦ୍ୟ ଯୌବନା ବିଜୟାଙ୍କୁ କରନ୍ତି 'ହାଲୋ' ବୋଲି ଗୋଟିଏ ମହା ମୂଲ୍ୟବାନ୍ ଶବ୍ଦର ପ୍ରୟୋଗ କରି ।

ସବମୋଟ ଦୁଇରୁମର ଛୋଟଫ୍ଲାଟ୍ । ତାରି ଭିତରେ ଟେବୁଲ ଡ଼ାଇନିଂ ସ୍ପେସ୍ ଆଉ ଗୋଟିଏ ମଣିଷ କଷ୍ଟରେ ବସିପାରିବା ଭଳି ଲଟେନ୍ । ଯାହାଙ୍କ ଘରେ ଆୟା ବା ଚାକର ଅଛନ୍ତି, ରାତିଟିଆ ଖିଆ ପରେ ସେମାନେ ହୁଏତ ଅଲଗା ଆଶ୍ରୟ ଅନ୍ୱେଷଣରେ ବାହାରିଯାଆନ୍ତି କମ୍ପା କରିଡ଼ର୍‌ରେ ଲମ୍ବା ହୋଇଯାଆନ୍ତି । ଆଉ ପୁଣି ଯେଉଁ ପରିବାରରେ ବଢ଼ିଲା ପୁଅଝିଅ ଅଛନ୍ତି, ସେ ପରିବାରର ଦୁର୍ଦ୍ଦଶା କହିଲେ ନସରେ । ଝୁସିଆରହୋଇ ଯିବା ମାତ୍ରେ ପୁଅମାନେ ତ ସ୍ୱତନ୍ତ୍ର ବେଡରୁମର ସୁବିଧା ଭୋଗ କରୁଥିବା ସାଙ୍ଗ ଖୋଜିବାରେ ଲାଗିପଡ଼ନ୍ତି । ଝିଅମାନଙ୍କର ସେ ସୁବିଧା ବା କାହିଁ ? ପ୍ରାଇଭେସି ବୋଲି କିଛି ନଥାଏ ।

ବଲ୍‌ମୋରିଆ ଫ୍ଲାଟ୍ ଢଥାରି କରିଦେଇ ସାଧନୋଚିତ ଧାମକୁ ଚାଲିଗଲେ । ବମ୍ବେର ପ୍ରତିଷ୍ଠିତ ବ୍ୟବସାୟ୍‌କୁ ଛାଡ଼ି ଏ ଫ୍ଲାଟ୍‌ର ଦାୟିତ୍ୱନେଇ ରହିବାକୁ ତାଙ୍କ ପୁଅଙ୍କର ବା ବେଳ କାହିଁ ? ତେଣୁ ଫ୍ଲାଟ୍‌ର ରକ୍ଷଣାବେକ୍ଷଣର ଦାୟିତ୍ୱ ନ୍ୟସ୍ତ ଥାଏ ଜଣେ ଗୁମାସ୍ତା ଉପରେ ।

ଚୌବନଟା ଫ୍ଲାଟ୍‌ର ହଜେକ ରକମର ସମସ୍ୟାର ସମାଧାନ କରୁ କରୁ ବିଚରା ପ୍ରୌଢ଼ ଅଲତାଫ୍ ହୁସେନ ଗଳଦ୍‌ଘର୍ମ ହୋଇପଡ଼ନ୍ତି । ପ୍ରତ୍ୟେକ ଫ୍ଲାଟ୍‌ରେ ହାବୁହାରି ରୂରଜନମଣିଷ ମାନେ ମୋଟ ହେଲେ ଦୁଇଶହ ଷୋହଳ ପ୍ରତ୍ୟେକ ସେକେଣ୍ଡରେ ଦୁଇଶହ ଷୋହଳଟି ସମସ୍ୟା । ହୁସେନ୍ ସାହେବ କେତେ ଏବେ ସମ୍ଭାଳିବେ ?

ସ୍ୱାଭାବିକ କାରଣରୁ ତାଙ୍କର ମାଦ୍ ତେଣୁ ସବୁବେଳେ ଚଢ଼ିକରିଥାଏ । କାହାର ଇଲେକ୍‌ଟ୍ରି କନେକ୍‌ସନ କଟିଯାଇଛି, କାହାର ପାଣି ପାଇପ୍ ଲିକ୍ କରୁଛି, କାହାର ଫ୍ଲାସ୍ କାମ କରୁନାହିଁ ଇତ୍ୟାଦି ହଜେକ ରକମ ସମସ୍ୟାର ସମାଧାନ କରୁ କରୁ ବିଚରା ନିକାହିଛା

କରିବାର ସମସ୍ୟ ବି ପାଇନାହାନ୍ତି । ଧନଓ୍ବନ୍ତ ନମାଜ ଏବେ କୋଉ ଶାନ୍ତମନ ସ୍ଥିର ଚିତ୍ତରେ କରିପାରନ୍ତି ?

ହୁସେନ ସାହେବ ଗୋଟାଏ ମୋଟା ବନ୍ଧେଇ ଖାତାରେ ରେକର୍ଡ଼ ମେନଟେନ କରନ୍ତି । ରହନ୍ତି ତ ସେ ସେଇ ସବାତଳ ମହଲାର ଗୋଟିଏ ଫ୍ଲାଟ୍‌ରେ, କାଳେଭଦ୍ରେ ମାଲିକ ଆସିବା ପାଇଁ ଯାହା ସଦା ପ୍ରସ୍ତୁତ ଥାଏ । ପ୍ରବେଶ ଦ୍ୱାର ପାଖରେ ଗୋଟିଏ ଛୋଟ ଟେବୁଲ ପକାଇ ତାହାର ଉପରେ ସେ ଖାତାଟିକୁ ପକାଇ ଦେଇଥାଆନ୍ତି । କଣ୍ଠାରୁ ଝୁଲୁଥାଏ ଗୋଟିଏ ଡ଼ଟ୍‌ପେନ । ହୁସେନ ସାହେବ କର୍ମବ୍ୟସ୍ତ ଲୋକ । ପୁଣି ଏଡ଼େବଡ଼ ମାନ୍‌ସନର ଦାୟିତ୍ୱ ଯାହା ଉପରେ, ମଗଜ ଥଣ୍ଡା ରଖିବାକୁ ହେଲେ ତାକୁ କେତେ କଣ କରିବାକୁ ହୁଏ । ସନ୍ଧ୍ୟାବୁଡ଼ିବା ଆଗରୁ ଏହି କାରଣରୁ ସେ ଫ୍ଲାଟ୍ ଭିତରୁ ବାହାରକୁ ବାହାରିପାରନ୍ତି ନାହିଁ । ଭିତରୁ କବାଟ ବନ୍ଦ କରିଦେଇ ଖୋଦାଙ୍କ ସାଙ୍ଗରେ ଯୋଗାଯୋଗ କରନ୍ତି । ଭିତରୁ ଶୁଣାଯାଏ, ଜଡ଼ିତ କଣ୍ଠରେ କୋରାନ ଶରିଫର ଆବୃତ୍ତି ଆଉ ପୁଣି ବାସନକୁସନ ଫିଙ୍ଗାଫୋପଡ଼ା ହେବାର ଶବ୍ଦ । ଧଳାଘୋଡ଼ା କଳାଘୋଡ଼ା ଉପରେ ସବାର୍ ହୋଇ ହୁସେନ ସାହେବ ବେହସ୍ତଆଡ଼େ ଗ୍ଲୁଲିଯାଆନ୍ତି । ଏହି ସମୟରେ ତାଙ୍କ ଧର୍ମୀୟ ବିଶ୍ୱାସ ଉପରେ ହସ୍ତକ୍ଷେପ ନକରିବାକୁ ତାଙ୍କର କଡ଼ା ସର୍କୁଲାର ଅଛି ।

ତେବେ ଭଡ଼ାଟିଆମାନେ ହେଲେ ଭଡ଼ାଟିଆ । ମାସକୁମାସ ଟଙ୍କା ଆଠଣିଏ ଲେଖାଁ ଫୋପାଡ଼ିଦେଇ ସେମାନେ ମୁଣ୍ଡକିଣି ବସିଥାଆନ୍ତି । ପୁଣି ଆଜିକାଲି ଲୋକଙ୍କର ଧର୍ମପ୍ରତି ସେ ଅଚଳ ନିଷ୍ଠା କାହିଁ ? ତେଣୁ ପ୍ରାୟ କେହିନା କେହି ହୁସେନ ସାହେବଙ୍କୁ ହରକତ କରିବା ପାଇଁ ଫ୍ଲାଟ୍ ଦୁଆର ବାଡ଼େଉଥିବାର ଦେଖାଯାଏ । ଏଥିରୁ ମୁକ୍ତି ପାଇବା ପାଇଁ ସାହେବଙ୍କୁ ଦରଜାରେ ଗୋଟାଏ ଏମାର୍‌ଜେନସି ଗେଟ୍‌ର ବ୍ୟବସ୍ଥା କରିବାକୁ ହୋଇଛି । ବାହାରେ ଥାଇ ସେଇବାଟେ ହାତ ଗଳାଇ ଗୁହାରିଆ କମ୍ପଲେଣ୍ଟ ରେଜିଷ୍ଟରରେ ତାଙ୍କର ଅସୁବିଧାଟା ଲେଖିଦେଇ ଆସନ୍ତି । ଅବଶ୍ୟ ସକାଳ ନଅଟା ପୂର୍ବରୁ ସାହେବ ତାକୁ ଦେଖିବା ପାଇଁ ଅବସର ପାଆନ୍ତିନାହିଁ । କ'ଣ କରିବେ ? ଆଜିକାଲି ଲୋକଙ୍କର ସ୍ୱଭାବ ଏମିତି ଯେ, ସେମାନେ ସାମାନ୍ୟ ଫ୍ୟୁଜ ତାର ଖଣ୍ଡେ ବି ନିଜ ଅଣ୍ଟାରୁ ପଇସା ଖର୍ଚ୍ଚକରି ଲଗାଇବେ-ନାହିଁ । ଏଣେ ଘରେ ବେଗମ୍ ସାହେବାମାନେ ହରଦମ ହିଟର୍ ଚଳାଇ, ପଙ୍ଖା ବୁଲାଇ, ଓଭନ ଜଳାଇ ଇଲେକ୍‌ଟ୍ରିସିଟି ଲାଇନର ଯେ ବାରଟା ବଜାଇ ରଖିଥାଆନ୍ତି, ସେ କଥା କେହି ଚିନ୍ତାକରନ୍ତିନାହିଁ ।

ହୁସେନ ସାହେବଙ୍କର ଚିନ୍ତାର ଆଉ ଗୋଟାଏ କାରଣ ଥିଲା । ବାଲ୍‌ମୋରିଆ ସାହେବ ଫ୍ଲାଟ୍‌ର ଭଡ଼ା ସାଙ୍ଗରେ ବିଜୁଳି ଆଉ ପାଣି ଖର୍ଚ୍ଚଟାକୁ ସାମିଲ କରିଦେଇଥିଲେ । ବୁଦ୍ଧିବିବେକ ଶୂନ୍ୟ ଭଡ଼ାଟିଆମାନେ ପ୍ରାୟ ଭଡ଼ା ଅପେକ୍ଷା ଅଧିକ ବିଜୁଳି ଖର୍ଚ୍ଚ କରିପାରିଲେ ହିଁ ସନ୍ତୋଷଲାଭ କରୁଥିଲେ । ସେମାନେ ଭାବୁଥିଲେ ଯେ, ଏହା ହେଉଛି ସେମାନଙ୍କର

ଗଣତାନ୍ତ୍ରିକ ଅଧିକାର । ଜଏଣ୍ଟ ବାଲ୍‌ବରୁ କାହାର ବିଜୁଳି ଖର୍ଚ୍ଚ କେତେ କିଏ ଜାଣୁଛି ? କିଏ ବା କାହିଁକି କାହାକୁ ବାଧା ଦେବ ? ଉପରକୁ ପ୍ରତ୍ୟେକଙ୍କର ସନ୍ଦେହ ହୁଏ ଯେ, ଅନ୍ୟମାନେ ତା' ଅପେକ୍ଷା ଅଧିକ ଫାଇଦା ମାରନେଉଛନ୍ତି । ତେଣୁ ସେ ସେମାନଙ୍କ ସାଙ୍ଗରେ ପାଦ ମିଳାଇ ଚାଲିବା ନିମନ୍ତେ ଘରେ ଆଉ ଦୁଇସ୍ୱରଟା ଉପକରଣ ଆଣି ଥୋଇଦଅନ୍ତି । ଆଜି ଆଜିକାଲି ପଇସା କମେଇବାକୁ କମ୍ପାନିମାନେ ଯେ ଏତେ ରକମର ବିଜୁଳି ଉପକରଣ ତିଆରି କଲେଣି, ହୁସେନ ସାହେବ ତାହାର ଅଳକୂଳ କିଛି ପାଆନ୍ତିନାହିଁ । ସେ କେବଳ ଭଡ଼ାଟିଆମାନଙ୍କର ମୁଣ୍ଡପାତ କରୁଥାଆନ୍ତି, ଆଉ ଭଡ଼ାଟିଆମାନେ ସକାଳୁ ହେବା ମାତ୍ରେ ସମବେତ ହୋଇ ତାଙ୍କୁ ବ ତ କମ୍ ହରକତ କରନ୍ତିନାହିଁ । ଅବଶ୍ୟ ହୁସେନଙ୍କ ସାଙ୍ଗରେ ଭଡ଼ାଟିଆମାନଙ୍କର କୌଣସି ବ୍ୟକ୍ତିଗତ ଶତ୍ରୁତା ନଥିଲା । ତେବେ ବେଆଡ଼ା ଭଡ଼ାଟିଆ-ମାନଙ୍କୁ ଶାସ୍ତି ଦେବା ପାଇଁ ହୁସେନ ବେଳେବେଳେ ପାଣି ଆଉ ବିଜୁଳିର ଯେଉଁ ରେସନ ଚାଲୁ କରୁଥିଲେ, ସେଥିରେ ଭଡ଼ାଟିଆମାନେ ରାଗିଯିବା ସ୍ୱାଭାବିକ ।

ପମ୍ପ ନଚଳାଇଲେ ଏତେବଡ ମାନସନର ଉପରଆଡ଼କୁ ପାଣି ଉଠିବା କଷ୍ଟ । ପମ୍ପ ହାଉସ ପୁଣି ହୁସେନ ସାହେବଙ୍କ ଫ୍ଲାଟକୁ ଲାଗିକରି—ତାଲାଚାବିର ଘେରବନ୍ଦୀ ମଧ୍ୟରେ ସୁରକ୍ଷିତ ହୋଇଥାଏ । ଭଡ଼ାଟିଆମାନଙ୍କ ଉପରେ ନିୟନ୍ତ୍ରଣ ରଖିବା ପାଇଁ ହୁସେନ ଯେତେବେଳେ ଇଚ୍ଛା ସେତେବେଳେ ପମ୍ପ ଚଳାଇବାକୁ ହୁକୁମ ଜାରିକରନ୍ତି । ବେଳେ-ବେଳେ ହଏତ ଦେଖାଯାଏ ଯେ, ସକାଳୁ ସକାଳୁ ପାଇପ୍ ଖୋଲିଲେ ତହିଁରୁ ବିନ୍ଦୁଏ ପାଣି ବାହାରୁନାହିଁ । ଶୁଣାଯାଉଛି କେବଳ ଏକ ଅଜଗରର ଫଁ ଫଁ ଗର୍ଜନ । ଅଜଗରର ନୁହେଁ । ସେ ଯେମିତି ହୁସେନ ସାହେବଙ୍କ ଅପ୍ରକାଶିତ କ୍ରୋଧ ହୁଙ୍କାର । ଆଉ ବେଳେବେଳେ ଉଦୁଉଦିଆ ଦି'ପହରେ ଅଧିକାଂଶ ଫ୍ଲାଟ୍ ଯେତେବେଳେ ବନ୍ଦ, ଗୃହିଣୀମାନେ ଦିନସାରା ପରିଶ୍ରମରେ କ୍ଲାନ୍ତହୋଇ ଟିକିଏ ମାଧ୍ୟାହ୍ନିକ ନିଦ୍ରାସୁଖ ଉପଭୋଗରେ ବ୍ୟସ୍ତ, ସେତିକବେଳେ ପାଇପ ମୁହଁ ଫଟାଇ ତୀବ୍ରବେଗରେ ଜଳସ୍ରୋତ ବହିଆସି ଘରଦ୍ୱାର ଭସାଇଦିଏ । ତା'ପରେ ଓଦା ଜିନିଷ ଶୁଖାଇବାକୁ ଦିନେ ଦିନର ନାକେଦମ ହେଉଥା । ସେଥିରେ ହୁସେନ୍ ସାହେବଙ୍କର ଯାଏ କେତେ ଆସେ କେତେ ?

ଏତେବଡ଼ ମାନସନର ରକ୍ଷଣାବେକ୍ଷଣା ପାଇଁ ହୁସେନ ସାହେବ ଗୋଟିଏ କ୍ଷୁଦ୍ର ସୈନ୍ୟବାହିନୀ ରଖିଛନ୍ତି । ସେଥିରେ ଅଛନ୍ତି ପ୍ଲମ୍ବର, ଇଲେକଟ୍ରି ମିସ୍ତ୍ରୀ, କାର୍ପେଣ୍ଟର, ସ୍କାଭେଞ୍ଜର ଏମିତି ଆଉରି କେତେକ ଜାତି । ସକାଳ ନ'ଟା ବେଳେ ସେମାନେ ଆସି ରିପୋର୍ଟ କରନ୍ତି । ଇତି ମଧ୍ୟରେ କମ୍ପ୍ଲେଣ୍ଟ ରେଜିଷ୍ଟରଟା ଦେଖି ହୁସେନ ସାହେବ ମନେ ମନେ ଗୋଟାଏ ପ୍ରାୟରିଟୀ ଲିଷ୍ଟ ତିଆରିକରି ନେଇଥାଆନ୍ତି । ଏହାପରେ ଜଣେ ଦକ୍ଷ ବ୍ରିଗେଡ଼ିଅର୍ ଭଳି ସେ ମୁଭମେଣ୍ଟର ହୁକୁମ ଜାରିକରନ୍ତି । ଆଉ କମ୍ପ୍ଲାଏନସ ରିପୋର୍ଟର ଅପେକ୍ଷାରେ ବସିରହନ୍ତି ।

କେଉଁ ଏକ ସାହିତ୍ୟିକ ପ୍ରତିଭାସମ୍ପନ୍ନ ଭଡ଼ାଟିଆ କମ୍ପଲେଣ୍ଟ ଖାତାରେ ତାଙ୍କ ନାମ ପାଖରେ ଗୋଟିଏ ସମାନ ଚିହ୍ନ ବସାଇ 'ଅଲତା ସୁନ୍ଦର' ବୋଲି ତାଙ୍କର ନୂତନ ନାମକରଣ କରିଥିଲି କେଜାଣି, ସେଇଦିନଠୁଁ ତାଙ୍କର ନୂତନ ନାମ ସେଇଆ ପଡ଼ିଗଲା । 'ତୋବା ତୋବା' କରି ହୁସେନ ସାହେବ, ଫ୍ଲାଟର ରହିମନ୍ତି ମିଆଁର ଅଧିନାୟକତ୍ୱରେ ଦୁଷ୍କୃତକାରୀ ଧରିବା ନିମନ୍ତେ ଗୋଟାଏ ଜଣକିଆ ଇନକ୍ୱାରି କମିଶନ ତ ବସାଇଥିଲେ । ତେବେ ମିଆଁ ସାହେବ ତୃତୀୟ ମହଲାର ପାଞ୍ଚନମ୍ବର ଫ୍ଲାଟର ମେମସାହେବଙ୍କ କଲେଜ ପଢ଼ୁଆ ଅଣ୍ଡ୍ୱାରି ପୁଅ ସମରସେନ ଆଡ଼େ ସନ୍ଦେହସୂଚକ ସାମାନ୍ୟ ଅଙ୍ଗୁଳି ନିର୍ଦ୍ଦେଶ ବ୍ୟତୀତ ଆଉ ବିଶେଷ କିଛି କରିପାରିନଥିଲେ । ତଥାପି ହୁସେନ୍ ପୁଣି ଗୋଟାଏ ଓଲ ହେଇ ଫ୍ଲାଟକୁ ଜଳଯୋଗାଣ ବନ୍ଦ କରିଦେଇ ସମରକୁ ଟାଇଟ୍ କରିଦେବା ନିମନ୍ତେ ଉଦ୍ୟମ କରିଥିଲେ । ସମର ପାଖଆଖର ଆଉ ଦୁଇଗୃହିଟା ଦାଦା ଟୋକାଙ୍କ ସାଙ୍ଗରେ ଉଚ୍ଚସ୍ତରୀୟ ଗୋପନ ବୈଠକରେ ମିଳିତ ହୋଇଥିବାର ରିପୋର୍ଟ ପାଇ ସେ ଅଗତ୍ୟା ଜଳ-ବାସନ୍ଦ ବ୍ୟବସ୍ଥାକୁ ଉଠାଇ ନେଇଥିଲେ । ତେବେ ଘଟଣାଟିକୁ ସେ ଭୁଲିନାହାନ୍ତି । ସମୟ ଆସିଲେ ସେ ବି ଦେଖାଇ ଦେବେ ତାଙ୍କର ପାୱାର୍ ।

ନାନା ଦିଗରୁ ନାନା କାର୍ଯ୍ୟରେ ଆସି ଭିନ୍ନ ଭିନ୍ନ ପ୍ରଦେଶର ବହୁ ବିଚିତ୍ର ଚରିତ୍ରର ଲୋକ ଏଇ ମାନସନ ରୂପୀ ମହାବୃକ୍ଷରେ ଅସ୍ଥାନ ବାନ୍ଧିଥାଆନ୍ତି । ଗୋଟିଏ ତ ଭଡ଼ାଦିଗରୁ ଫ୍ଲାଟଗୁଡ଼ିକ ଅପେକ୍ଷାକୃତ ଶସ୍ତା । ପୁଣି ଘରମାଲିକଙ୍କ ସ୍ଥିରିକୃତ ଅହଙ୍କାରର ଖରିବୋଝ ଭଡ଼ାଟିଆମାନଙ୍କୁ ଉଠାଇବାକୁ ପଡ଼େନାହିଁ । 'ଅଲତା ସୁନ୍ଦର' ଯେତେ ଯାହା ହରକତ କଲେ ମଧ୍ୟ ଲୋକ ଖରାପ ନୁହେଁ । ସବୁଠୁ ବଡ଼କଥା, ଏରିଆଟା ଖବ୍ ଭଲ । ସ୍କୁଲ, କଲେଜ, ଡାକ୍ତରଖାନା, ଥାନା, ସଚିବାଳୟ, ଭୋଜନାଳୟ ସବୁକୁ ପାଖ । ତେଣୁ ଭଡ଼ାଟିଆମାନଙ୍କର କ୍ୟୁ ଲାଗିରହିଥାଏ । ଖାଲି ଫ୍ଲାଟ୍ ପୂରଣ ପାଇଁ 'ଅଲତା ସୁନ୍ଦର' ଆଉ ଗୋଟିଏ ପ୍ରାୟୋରିଟି ଲିଷ୍ଟ ମେନ୍‌ଟେନ କରନ୍ତି । ତେବେ ଏ ଦିଗରେ ଭଡ଼ାଟିଆମାନେ ବି ଏକ ବିଶେଷ ରୋଲ୍ ଗ୍ରହଣ କରନ୍ତି । ଯେଉଁ ଭଡ଼ାଟିଆଟି ଫ୍ଲାଟ୍ ଖାଲି କରିଦେଇ ଯାଏ, ସେ ପ୍ରଥମେ ନିଜ ଜାଗାରେ ବସାଇବା ନିମନ୍ତେ ଗୋଟିଏ 'ଦେଶିଓ୍ୱାଲି ଭାଇ' ଖୋଜେ । ଦୈବାତ୍ ନମିଳିଲେ, ପାଖ ଦେଶଓ୍ୱାଲାରେ କାମଚଲାଇନିଏ । 'ଅଲତା ସୁନ୍ଦର'ଙ୍କ ସହିତ ଯୋଗାଯୋଗ କରିଦିଏ । ସ୍ୱାଧୀନ ପାଇଁ ଧଳାଘୋଡ଼ାରେ ଚଢ଼ିବାର ସୁଯୋଗ ପାଇଗଲେ, ଅଲତା ସୁନ୍ଦର ବି ବିସ୍ମିଲ୍ଲା କରି ଫ୍ଲାଟର ଚାବି ଆଗନ୍ତୁକ ହାତକୁ ବଢ଼ାଇଦିଅନ୍ତି । ରେକର୍ଡ ପତ୍ରରେ ତାଙ୍କର ନାମ ଦରଜ ହୋଇଯାଏ । ଏ ଆବଣ୍ଟନର ଏହି ଅଲିଖିତ ନିୟମ ବଳରେ ଚୌବନଟି ଫ୍ଲାଟର ପ୍ରାଦେଶିକ କୋଟାର ହାରରେ ବିଶେଷ କୌଣସି ତାରତମ୍ୟ ହୁଏନାହିଁ ।

ଛୋଟବଡ ଅଘଟଣ ତ ଏତେବଡ଼ ମାନସନରେ ଲାଗି ରହିଥାଏ । ସେଇଟା ହିଁ ସ୍ୱାଭାବିକ । ତେବେ ଗତରାତିର ଅଘଟଣଟି ଏକ ବିଶେଷ ଧରଣର । ମୃତ୍ୟୁ ଆସିଛୁ ଏକ

ଦୁର୍ଘଟଣାର ହାତଧର । ସପ୍ତମ ମହଲର ମିସେସ୍ ରାୟଚୌଧୁରୀ ନିଜ ଶାଢ଼ୀରେ ଫାଶୀ ଲଗାଇ ଆତ୍ମହତ୍ୟା କରିଛନ୍ତି । ମାନସନର ଏହି ପ୍ରଥମ ଅପମୃତ୍ୟୁର ଘଟଣା ସବା ଆସ୍ପଷ୍ଟ ହୁସେନ ସାହେବଙ୍କୁ ମଧ୍ୟ ଦୋହଲାଇ ଦେଇଛି । ଥାନା, ପୋଲିସ୍, କୋର୍ଟ କଚେରୀର ବିଭୀଷିକାପ୍ରଦ ଦୃଶ୍ୟମାନ ତାଙ୍କ ଆଖି ଆଗରେ ନାଚୁଛି । ସେ କ'ଣ କରିବେ କିଛି ସ୍ଥିରକରି ପାରୁ-ନାହାନ୍ତି ।

ମିଷ୍ଟର ଅରୁଣ ରାୟଚୌଧୁରୀ ଦୂଷିବାସିଆ ଲୋକ । ଦିନ ନ'ଟା ବେଳକୁ ହାତରେ ଆଟାଚି ଝୁଲାଇ ଲିଫ୍ଟରୁ ବାହାରିଆସନ୍ତି, ଆଉ ବେସମେଣ୍ଟରୁ ନିଜର ଗାଡ଼ି ବାହାରକରି କୁଆଡ଼େ ଚାଲିଯାଆନ୍ତି । ଶୁଣାଯାଏ, ତାଙ୍କର ଅର୍ଡ଼ର ସପ୍ଲାଇର ବ୍ୟବସାୟ । ମହାନଗରର କେନ୍ଦ୍ରସ୍ଥଳରେ ନିଜସ୍ୱ ଅଫିସ ରହିଛି । ସେଇଠି ସେ ବସନ୍ତି । ଟେଣ୍ଡର ଭରନ୍ତି । ମାଲ ଡେ଼ଲିଭରି ଦେବାର ବ୍ୟବସ୍ଥା କରନ୍ତି । ଷ୍ଟେସନକୁ ଲୋକ ପଠାଇ ଆର. ଆର. ଛଡ଼ାଇବାର ଆୟୋଜନ କରନ୍ତି । ପାର୍ଟି ସାଙ୍ଗରେ ଯୋଗାଯୋଗ କରନ୍ତି । ହୋଟେଲ, ରେସ୍ତୋରାଁ ମାନଙ୍କରେ ପ୍ରାୟ ସେମାନଙ୍କୁ ଏନ୍‌ଟର୍‌ଟେନ୍ କରିବାକୁ ପଡ଼େ । ନହେଲେ ପାର୍ଟି ଥୋପ ଗିଳେନାହିଁ । ମୁହଁରେ ଆତ୍ମୀୟତାର ସ୍ମିତହସ ଉକୁଟାଇ ଅନ୍ୟ କେଉଁ ଫାର୍ମ ପଛରେ ଛୁଟେ । ଆଜିକାଲି ଏ ଧନ୍ଦାରେ କମ୍ପିଟିସନ୍ ବହୁତ । କଥାକଥାକେ ମଟରଚଢ଼ା ଲୋକ ପାଦଚଲା ହୋଇଯାଏ ଆଉ ପାଦଚଲା ଚଢ଼େ ମଟରଗାଡ଼ି । ପାର୍ଟି ସାଙ୍ଗରେ ଯୋଗା-ଯୋଗ କରିବାକୁ ପ୍ଲେନ୍‌ରେ ଦିଲ୍ଲୀ ଦିଲ୍ଲୀ ଦୌଡ଼େ । ନାଗପୁରରେ ବ୍ରେକଫାଷ୍ଟ ଖାଇ ଦିଲ୍ଲୀରେ ଲଞ୍ଚ ସାରେ । ଆଉ ପୁଣି ରାତିର ବେଳକୁ ନିଜ ସହରକୁ ଫେରିଆସେ ।

ରାୟଚୌଧୁରୀଙ୍କ ପବ୍ଲିକ ରିଲେସନ ବେଶ୍ ଭଲ । ସବୁଠୁ ଭଲ ପାର୍ଟିକୁ ଏନଟର-ଟେନ କରିବାର ତାଙ୍କର ସ୍ୱକୀୟ ବ୍ୟବସ୍ଥା । ଆଜିକାଲି ବଡ଼ ବଡ଼ ଶିଳ୍ପପତିମାନଙ୍କର ରିପ୍ରେଜେନଟେଟିଭ ହୋଇ ଯେଉଁମାନେ ବ୍ୟବସାୟ ପରିଚାଳନା କରିବାକୁ ଆସୁଛନ୍ତି, ଅଧିକାଂଶ କ୍ଷେତ୍ରରେ ସେମାନଙ୍କର ବୟସ କମ୍ । ପିଲାଦିନରୁ ଅଏସ୍ ଆରାମରେ ବଢ଼ିଛନ୍ତି । ଯାହା ଯେତେବେଳେ ଚାହିଁଛନ୍ତି, ପାଇଛନ୍ତି, କେବଳ ଗୋଟିଏ ଜିନିଷ ଛଡ଼ା । ଏକେବାରେ ଯେ ପାଇନାହାନ୍ତି, ତାହା ନୁହେଁ । ତେବେ ନିଜ ସହରରେ ଏଥିପାଇଁ ହଜାରେ ସତର୍କତା ଅବଲମ୍ବନ କରିବାକୁ ପଡ଼େ । କେବଳ ସେଇଥିପାଇଁ ବାହାରକୁ ଆସିବା ମାତ୍ରେ ସେମାନେ ବେପରୱା ହୋଇଯାଆନ୍ତି । ଯେ କୌଣସି ଗୋଟିଏ ଭଲ ହୋଟେଲରେ ରୁମଟିଏ, ଗୋଟିଏ ଦୁଇଟି ବୋତଲ, ଘଣ୍ଟେଅଧେ ବ୍ଲୁ ଫିଲ୍ମ ଆଉ···ସେଇ ଆଉଟି ହେଉଛି ଖାସ କଥା ।

ମାଂସର ଫୁଲଟିଏ ଯେପର୍ଯ୍ୟନ୍ତ ସେମାନଙ୍କ ହାତପାଆନ୍ତାରେ ଫୁଟି ନଉଠିଛି, ତାହାର ଭୁରୁଭୁରୁ ଗନ୍ଧ ଯେପର୍ଯ୍ୟନ୍ତ ସେମାନଙ୍କ ପ୍ରାଣମନକୁ ଆମୋଦିତ ନକରିଛି, ସେ ପର୍ଯ୍ୟନ୍ତ ଏଇ କୁବେରନନ୍ଦନମାନେ ହାତମୁଠା ଖୋଲନ୍ତିନାହିଁ । ଏ ବ୍ୟବସ୍ଥା ମନଃପୂତ ହେଲେ ସକାଳୁ ସକାଳୁ ଯେ କୌଣସି କାଗଜରେ ଦସ୍ତଖତ ମାରିଦେଇ ପ୍ଲେନ ଧରିବାକୁ ଚାଲିଯାଆନ୍ତି ।

ଗୁପ୍ତଚୌଧୁରୀ ଜାଣନ୍ତି, ଏ ବ୍ୟବସ୍ଥା ହିଁ ହେଉଛି ବ୍ୟାବସାୟିକ ସାଫଲ୍ୟର ବଡ଼କଥା । ସରକାରୀ ଲୋକ ହୁଅନ୍ତୁ ଅବା ବେସରକାରୀ ଲୋକ ହୁଅନ୍ତୁ, ସମସ୍ତେ ବଶ ଏଇ ମନ୍ତ୍ରରେ । ଗୁପ୍ତଚୌଧୁରୀଙ୍କୁ ତେଣୁ ଏଥିପାଇଁ ସ୍ଥାୟୀ ବ୍ୟବସ୍ଥା କରିବାକୁ ପଡ଼ିଛି । ସେଥିରେ ଅସୁବିଧା ବି କିଛି ନାହିଁ । ଏ ବି' ତ ଗୋଟାଏ ବ୍ୟବସାୟ । ତେଣୁ ଏଥିରେ ଅର୍ଡର ସପ୍ଲାୟର୍ ଅଛନ୍ତି । ବ୍ରୋକର ଅଛନ୍ତି । କେବଳ ଫୋନ୍‌ରେ ସମୟ, ସ୍ଥାନ ଆଉ କ୍ଲାଏଣ୍ଟର ପସନ୍ଦ ଅପସନ୍ଦ ସମ୍ପର୍କରେ କିଛି ସୂଚନା ଦେଇଦେଲେ ହେଲା । ଗୋଟାଏ ଜାଗାରେ ବସି କାମ ଶେଷ । ଆଗରୁ କ୍ଲାଏଣ୍ଟକୁ ନେଇ ଏଠିକୁ ସେଠିକୁ ଦୌଡ଼ିବାକୁ ପଡ଼ୁଥିଲା । ଏବେ ମାଲ୍ ସିଧାସଳଖ ଡେଲିଭରି ହେଉଛି କ୍ଲାଏଣ୍ଟର ବିଛଣାରେ । ସବୁ କଥାବାର୍ତ୍ତା ବି ସେଇଠି ହୋଇଯାଉଛି । ଉଭୟ ପକ୍ଷ ପାଇଁ ଏହା ଅପେକ୍ଷା ଆଉ ଭଲ ବ୍ୟବସ୍ଥା କଣ ହୋଇପାରନ୍ତା ?

କାମର ଚାପରେ ଗୁପ୍ତଚୌଧୁରୀ ଲଞ୍ଚ ନେବା ପାଇଁ ଘରକୁ ଆସିପାରନ୍ତିନାହିଁ । କେତେବେଳେ କୋଉଠି ଥାଆନ୍ତି, କୁଆଡ଼କୁ ଯିବାକୁ ପଡ଼ିପାରେ ଏକଥା ସେ ନିଜେ ବି ତ ଜାଣିନଥାନ୍ତି । ସହରରେ ଥିଲେ ଡିନର୍ ପାଇଁ ଘରକୁ ଫେରିଆସନ୍ତି । ତେବେ ସେ ବି ବେଶ ରାତିରେ—ବିଲ୍‌ମୋରିଆ ମାନ୍‌ସନ୍ ଯେତେବେଳେ ରାତି ନଅର ପ୍ରଥମ ଆମେଜ୍‌ଟା କଟାଇ ଉଠୁଥାଏ, ଠିକ୍ ସେତିକବେଳେ ଗୁପ୍ତଚୌଧୁରୀଙ୍କ ମାରୁତି ଗାଡ଼ିର ହେଡ଼ଲାଇଟ୍ ଗେଟ୍ ପାଖରେ ଜଳିଉଠେ ଆଉ ହର୍ଣ୍ଣର ସଙ୍କେତରେ ନେପାଳୀ ଦରଓ୍ୱାନକୁ ଡାକି ପକାଏ ।

କ୍ଲାନ୍ତିରେ ଗୁପ୍ତଚୌଧୁରୀଙ୍କ ଦେହ ସେତେବେଳକୁ ଫାଟିପଡ଼ୁଥାଏ । ତଥାପି ସେ ଶାୟିତ ଶିଶୁକନ୍ୟାକୁ ଟିକିଏ ଆଦର କରନ୍ତି । ପତ୍ନୀଙ୍କ ସହ ଦୁଇଚାରିଟା କଥାବାର୍ତ୍ତା ହୁଏ । ଅଭ୍ୟାସବଶତଃ ଡିନର୍ ଟେବୁଲରେ ବି ବସନ୍ତି । ତା'ପରେ ସ୍ଲିପିଂସୁଟ୍ ପିନ୍ଧି ବିଛଣାରେ ନିଜକୁ ଲେଟାଇଦିଅନ୍ତି । ଏହାପରେ ଗୁପ୍ତଚୌଧୁରୀଙ୍କ ଫ୍ଲାଟ୍ ଅନ୍ଧାର ହୋଇଯାଏ । କେବଳ ବେଡ଼ରୁମର ଶୂନ୍ୟଶକ୍ତି ବିଶିଷ୍ଟ ବଲ୍‌ବଟି ରାତସାରା ଜଳୁଥାଏ ।

ଗୁପ୍ତଚୌଧୁରୀ ଜଣେ ସୁଖୀ ଗୃହସ୍ଥ । ଏତେଦିନ ସେ ଏଇ ଫ୍ଲାଟ୍‌ରେ ରହିଲେଣି । ସ୍ୱାମୀ-ସ୍ତ୍ରୀଙ୍କ ଭିତରେ ଯେନେହେଲେ ଉଚ୍ଚବାଚ ହେଉଥିବାର କେହି ଶୁଣିନାହାନ୍ତି କିମ୍ବା କାହାରି ମୁହଁରେ ପାରିବାରିକ ଅତୃପ୍ତିର କ୍ଷୀଣରେଖାଟିଏ ମଧ୍ୟ କେହି କେବେ ଦେଖିନାହାନ୍ତି । ମିସେସ୍ ଗୁପ୍ତଚୌଧୁରୀ ସବୁବେଳେ କଣ୍ଢେଇଟିଏ ଭଳି ସାଜସଜ୍ଜା ପୁରା ମେକଅପ୍‌ରେ ଥାଆନ୍ତି । ଘରେ ସୁଦ୍ଧା ଦାମୀଶାଢ଼ୀ ସାଙ୍ଗକୁ ମ୍ୟାଚିଂ ବ୍ଲାଉଜ୍, ମ୍ୟାଚିଂ ବିନ୍ଦି, ସେଇ ରଙ୍ଗର ସ୍ଲିପର ପିନ୍ଧି ପୁରା ଫିଟ୍‌ଫାଟ୍ । ଗୋଟାଏ ହାତରେ ଷୋହଳପଟ ସୁନାଚୂଡ଼ି, ଆର ହାତରେ ଗ୍ରେଟ ଟାଇଟାନ କ୍ୱାର୍ଜଓ୍ୱାଚ୍ । ଆଧୁନିକତାର ସାକାର ରୂପ ।

ଗ୍ରେଟ ହ୍ୱିଅ ଇଭ ମଧ୍ୟ ସବୁବେଳେ ସାଜସୁଜାହୋଇ ରହିଥାଏ । ଆୟାର ହାତଧରି ଠୁକ୍ ଠୁକ୍ କରିଡ଼ରରେ ବୁଲେ । ସମବୟସୀ ସାଥୀ ଦେଖିଲେ ତା'ଆଡ଼କୁ ଟିକିଏ ଅନାଏ,

ଆଉ ପାଖଆଖର ଫ୍ଲାଟ୍ ଖୋଲା ଦେଖିଲେ, ସେ ଭିତରକୁ ପାଦ ବଢ଼ାଏ । ତେବେ ମିସେସ୍ ରାୟଚୌଧୁରୀ ବଡ଼ କଡ଼ା ସ୍ୱଭାବର ମହିଳା । ଘରଭିତରେ ଥାଇ ମଧ୍ୟ ସେ ଝିଅ ଉପରେ ସତର୍କ ଦୃଷ୍ଟି ରଖିଥାଆନ୍ତି । ଏଭଳି ପରିସ୍ଥିତିରେ ଯେତେବେଳେ ତାଙ୍କର ସ୍ୱର ଶୁଭେ, 'ବେବୀ ଚଲେ ଏସୋ ।' ବେବୀର ଉଠିଲାପାଦ ସ୍ଥିର ହୋଇଯାଏ । ଆୟା ଧାଇଁଯାଇ ତାକୁ ଲେଉଟାଇ ଆଣେ ।

ପଡ଼ୋଶୀମାନଙ୍କ ସହିତ ମିସେସ୍ ରାୟଚୌଧୁରୀ ବିଶେଷ ସମ୍ପର୍କ ରଖନ୍ତିନାହିଁ । ଔପଚାରିକତାର ସାମାନ୍ୟ ଦୁଇଚାରିଟା ଶବ୍ଦ ମଧ୍ୟରେ ହିଁ ତାହା ସଦା ସୀମିତଥାଏ । ଯେତେବେଳେ ରାୟଚୌଧୁରୀ ପରିବାର ଏଇ ଫ୍ଲାଟ୍‌ରେ ରହିବାକୁ ଆସିଲେ, ସେତେବେଳେ ଗୋଟିଏ ଛୋଟ ଅପ୍ରୀତିକର ଘଟଣା ଘଟିଥିଲା ।

ଅରୁଣବାବୁ ବଡ଼ ଖୋଲାମେଲା ସ୍ୱଭାବର ଲୋକ । ପଡ଼ୋଶୀଙ୍କ ପାଇଁ ତାଙ୍କ ଦ୍ୱାର ସବୁବେଳେ ଉନ୍ମୁକ୍ତ ରହୁଥିଲା । ଅଉ ପୁଣି ଯେତେବେଳେ ତାଙ୍କ ବ୍ୟବସାୟ ବି ଏତେ ଜମି-ନଥିଲା । ତେଣୁ ତାଙ୍କୁ ଘରେ ପ୍ରାୟ ଦେଖାଯାଉଥିଲା । ପାଖ ପଡ଼ୋଶୀ ଦୁଇଚାରିଜଣ ତାଙ୍କ ଫ୍ଲାଟ୍‌ରେ ଅଡ୍ଡା ଜମାଇବାକୁ ଜୁଟିଯାଉଥିଲେ । ଏଭଳିବେଳେ କେହି ଜଣେ ଅରୁଣ-ବାବୁଙ୍କୁ ଚେତାଇ ଦେଇଥିଲେ, 'ରାୟଚୌଧୁରୀ ସାବ୍ ! ମକାନ୍ ମେ ପର୍ଦ୍ଦା ଲଗ୍‌ବାଇୟେ । ଜମାନା ଖରାବ୍ ହାଏ ।'

ରାୟଚୌଧୁରୀ ତତ୍‌କ୍ଷଣାତ୍ ଉତ୍ତର ଦେଇଥିଲେ, "ୟହା ସବ ଦୋସ୍ତ ଲୋଗ ହେଁ । ଫିର୍ ଦୋସ୍ତୋଁ ସେ କ୍ୟା ଛୁପାନା ? ମେରା ଜିନ୍ଦଗୀ ଏକ ଖୁଲ୍ଲା ପୁସ୍ତକ ହୈ । ମୈଁ ଭଲା ପର୍ଦ୍ଦେ କ୍ୟୁଁ ଲଗାଉଁ ?"

ତେବେ ଶୀଘ୍ର ତାଙ୍କୁ ତାଙ୍କର ଏହି ଉଦାରମତିକୁ ପରିବର୍ତ୍ତନକରି ମୋଟା ପର୍ଦ୍ଦାର ଅନ୍ୱେଷଣରେ ବଜାର ଧାଇଁବାକୁ ପଡ଼ିଥିଲା । ମିସେସ୍ ରାୟଚୌଧୁରୀ ଲକ୍ଷ୍ୟକଲେ ଯେ, ଭରା ଦ୍ୱିପ୍ରହରବେଳେ ଯେତେବେଳେ ଫ୍ଲାଟ୍‌ର ଅଧିକାଂଶ ପୁରୁଷ ପ୍ରାୟ କର୍ମ ବ୍ୟପଦେଶରେ ବାହାରେ ଥାଆନ୍ତି, ଅଉ ମିସେସ୍ ରାୟଚୌଧୁରୀ ସକାଳର କାମ ତୁଟାଇ ଟିକିଏ ବିଶ୍ରାମ ନେବାର ଉପକ୍ରମ କରନ୍ତି, ଠିକ୍ ସେତିକିବେଳେ ପାଖଆଖର ନିଷ୍କର୍ମା ଟୋକାଦଳ ରାୟ-ଚୌଧୁରୀ ସାହେବଙ୍କର ଏଇ ଖୋଲା ପୁସ୍ତକଟିକୁ ବେଶ୍ ମନଯୋଗ ସହକାରେ ପଢ଼ିବାକୁ ଚେଷ୍ଟା କରନ୍ତି । ଚମକପଡ଼େ ମିସେସ୍ ରାୟଚୌଧୁରୀ ଏହି ଅସାମାଜିକ ଘଟଣାପ୍ରତି ସ୍ୱାମୀଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ବେଶ୍ ଧରପଗଡ଼ ହୁଏ । ଆସାମୀମାନେ ତ ଧରାପଡ଼ନ୍ତି ନାହିଁ । ତେବେ ସେଇ ଦିନଠୁଁ ପାଖ ପଡ଼ୋଶୀଙ୍କ ସହିତ ରାୟଚୌଧୁରୀ ପରିବାରର ପ୍ରୀତି ସମ୍ପର୍କ ତୁଟିଯାଏ ।

ଏଥିରେ କାହାର ଯେ ଖୁବ୍ ଗୋଟାଏ ଅସୁବିଧା ହୋଇଯାଏ, ତାହା ମଧ୍ୟ ନୁହେଁ ।

ସହର ବଜାର ଜାଗାରେ ଅପରର ସେଣ୍ଟିମେଣ୍ଟ ନେଇ ମୁଣ୍ଡ ଘୁରାଇବାକୁ କାହାର ବା ଏତେ ସମୟ ଅଛି ?

ଦୁର୍ଘଟଣା ଘଟିଛ ସେଇ ପରିବାରରେ । ମିସେସ୍ ରାୟଚୌଧୁରୀଙ୍କ ଆତ୍ମହତ୍ୟା ଭଳି ଘଟଣା କେବଳ ସେଇ ମାନ୍‌ସନରେ ନୁହେଁ, ସମଗ୍ର ସହରରେ ମଧ୍ୟ ଆଲୋଡ଼ନ ସୃଷ୍ଟିକରିଛି । ପ୍ରକୃତ କାରଣ ତ କେହି ଜାଣିନାହାନ୍ତି । ତେଣୁ ଯାହା ମନକୁ ଯାହା ଆସୁଛି ସେ ତାହା ଶୁଣାଇ ଦେଉଛି । କେହି କେହି ଏଥିରେ ଏକ ଗଭୀର ଷଡ଼ଯନ୍ତ୍ର ଥିବାର ମଧ୍ୟ ଦୃଢ଼ମତ ପୋଷଣ କରିସାରିଲେଣି ।

ମିସେସ୍ ରାୟଚୌଧୁରୀ ଏଭଳି କଲେ କାହିଁକି ? ସ୍ୱାମୀ, ପରିବାର ସମ୍ପର୍କରେ ତାଙ୍କର ଯଦି କୌଣସି ଅଭିଯୋଗ ଥିଲା, ତେବେ ତାହା ସଦାସତର୍କ ପଡ଼ୋଶୀମାନଙ୍କର ନଜର ଏଡ଼ାଇଗଲା କେମିତି ? କିଛି ବର୍ଷ ତଳେ ସହରର ଏକ କୁଖ୍ୟାତ ନଗରବଧୂ ସହିତ ରାୟଚୌଧୁରୀଙ୍କ ନାମକୁ ଯୋଡ଼ି ଅପବାଦର ଏକ ଧୂମ୍ରାଭ ବଳୟ ସୃଷ୍ଟିହେବା କଥା ଶୁଣା ଯାଇଥିଲା ସତ୍ୟ, ତେବେ ତାହା ନିତାନ୍ତ ଅପବାଦ ମାତ୍ର । ଯଦିବା ମିସେସ୍ ରାୟଚୌଧୁରୀ ତାହା ଶୁଣିଥିଲେ, ତେବେ ତା'ର ପ୍ରତିକ୍ରିୟା ଆଜି ଏତେଦିନ ପରେ ପ୍ରକାଶ ପାଇବାର କାରଣ ବା କ'ଣ ? ସତରେ କ'ଣ ଅରୁଣ ରାୟଚୌଧୁରୀ ବୁଡ଼ି ବୁଡ଼ି ପାଣି ପିଅନ୍ତି ?

ଆଶ୍ଚର୍ଯ୍ୟର କଥା, କିଚେନରେ ଯେତେବେଳେ ମିସେସ୍ ରାୟଚୌଧୁରୀଙ୍କ ଦେହ ଜଳୁଥିଲା, ସେତେବେଳେ ଅରୁଣବାବୁ ଡ୍ରଇଁରୁମରେ ବସି ପେପର ପଢ଼ୁଥିଲେ । ଏ ମହଲାରେ ଦ୍ୱିପ୍ରହରଟାରେ ପ୍ରାୟ କେହି ରୁହନ୍ତିନାହିଁ । ଅଧିକାଂଶ ସ୍ୱାମୀ-ସ୍ତ୍ରୀ ଉଭୟେ କାମ କରୁଥିବାରୁ ନିଜ ନିଜ ଧନ୍ଦାରେ ଯାଇଥାଆନ୍ତି । ତେବେ ସେଦିନ କଲେଜ ଗ୍ରୁପ ଧାପକ ପାଳ କଣ ଗୋଟାଏ କାରଣରୁ କ୍ଲାସଡ୍ରପ୍ ହୋଇଯିବାରୁ ଅସମୟରେ ଘରକୁ ଫେରି ରାୟଚୌଧୁରୀ ଅଙ୍କଲଙ୍କୁ ଖବରକାଗଜ ପଢ଼ୁଥିବାର ଦେଖିଥିଲା । ଏହି ସମୟରେ ତା' ନାକରେ ଗୋଟାଏ କଡ଼ା ପୋଡ଼ାଗନ୍ଧ ବାଜିବାରୁ ସେ ପ୍ରଥମେ ନିଜ ଫ୍ଲାଟ୍ ଆଉ ତା'ପରେ ଆଖପାଖର ଫ୍ଲାଟରୁ ତାହାର କାରଣ ବୁଝିବାକୁ ଚେଷ୍ଟା କରିଥିଲା । ମାତ୍ର କିଛି ଜାଣିନପାରି ଶେଷରେ ଚତୁର୍ଥ ମହଲରେ ଥିବା ନିଜର ସାଙ୍ଗ ତପନ ସିହ୍ନା ପାଖକୁ ଚାଲିଯାଇଥିଲା ।

ଖବର ଜଣାପଡ଼ିଲା ଅପରାହ୍ଣ ଚାରିଟାବେଳକୁ । ସେତିକିବେଳେ ପାଣି ଆସିବା ବେଳ । ପ୍ରାୟ ପ୍ରତ୍ୟେକ ଫ୍ଲାଟରେ କିଛି କିଛି କର୍ମ ଚଞ୍ଚଳତା ଦେଖାଦିଏ । ଦିବାନିଦ୍ରାରତ ଗୃହିଣୀମାନେ ହାଇମାରି ଉଠିବସନ୍ତି । ସ୍ତ୍ରୀକରମାନଙ୍କ ସହିତ ଖୁସି ଗପ ଚଳାଇଥିବା ଆୟାମାନେ ସତର୍କ ହୋଇଯାଆନ୍ତି । ଠିକ୍ ଏହିଭଳି ସମୟରେ ରାୟଚୌଧୁରୀଙ୍କ ଫ୍ଲାଟରୁ ପୁରୁଷ କଣ୍ଠର ଏକ ହାଉ ହାଉ ଶବ୍ଦ ଶୁଣି ସମସ୍ତେ ଉତ୍କଣ୍ଠ ହୋଇଉଠିଲେ । ଅରୁଣ ରାୟଚୌଧୁରୀ 'ଆକ୍‌ସିଡେଣ୍ଟ', 'ସୁଇସାଇଡ' ଇତ୍ୟାଦି ଶବ୍ଦମାନ ଉଚ୍ଚାରଣ କରୁ କରୁ ପାଗଳଙ୍କ ଭଳି କରିଡରରେ ଧାଇଁବାକୁ ଲାଗିଲେ ।

ଖବର ଅନ୍ୟାନ୍ୟ ମହଲରେ ମଧ୍ୟ ପହଞ୍ଚିଗଲା । କ୍ରମେ କ୍ରମେ ଲୋକ ଜମିଲେ । ଦେଖାଗଲା କିଚେନ୍‌ରେ ମିସେସ୍ ରାୟଚୌଧୁରୀଙ୍କ ତିନିଚତୁର୍ଥାଂଶ ଦଗ୍ଧ ଶରୀରଟା ପଡ଼ିରହିଛି । ଶୀଘ୍ର ଡାକ୍ତରଙ୍କୁ ଖବର ଦିଆଗଲା । ସେ ମଧ୍ୟ ଅନତି ବିଳମ୍ବେ ଘଟଣା ସ୍ଥଳରେ ପହଞ୍ଚି ମିସେସ୍ ରାୟଚୌଧୁରୀଙ୍କୁ ପରୀକ୍ଷାକରି ତାଙ୍କୁ ମୃତବୋଲି ଘୋଷଣା କରିଦେଲେ । ଅରୁଣବାବୁଙ୍କ ଶୋକସିନ୍ଧୁ ଉଦ୍‌ବେଳ ହୋଇଉଠିଲା ।

ପୁରୁଷର ଶୋକ ବଡ଼ ଭୀଷଣ । ତାହାର କର୍କଶ କଣ୍ଠର ବିଳାପ ଶ୍ରୁତି ଅସ୍ୱସ୍ତିଦିଏ ଆଉ ହୃଦୟ ଅନାଗତ ଆଶଙ୍କାରେ ଭରିଯାଏ । କ୍ରନ୍ଦସୀ ନାରୀଟିଏ ହୁଏତ ମନରେ ସୃଷ୍ଟିକରେ କ୍ରୋଧ ଅଥବା କରୁଣା । ମାତ୍ର ପୁରୁଷର ବିଳାପ ଭାରି ଅମଙ୍ଗଳ ମନେହୁଏ । ଶବ ଉଠିଯିବା ପରେ ରତନବାବୁ ରାୟଚୌଧୁରୀ ପାଗଳଭଳି ଉଚ୍ଚ କଣ୍ଠରେ ବିଳାପ କରିବାକୁ ଲାଗିଲେ । କେତେବେଳେ ସେ ନିଜ ବାଳକୁ ଟାଣୁଥାଆନ୍ତି ତ କେତେବେଳେ ନିଜର ପିନ୍ଧାଲୁଗାକୁ ଫର୍‌ର୍ ଫର୍‌ର୍ କରି ଚିରିପକାଉଥାନ୍ତି । ପୁଣି କେତେବେଳେ ନିଜ ମୁଣ୍ଡକୁ କାନ୍ଥରେ ଠୋ ଠୋ ପିଟିବାକୁ ଆରମ୍ଭ କରିଦିଅନ୍ତି । ପାଖଆଖର ଦୁଇତିନିଜଣ ପଡ଼ୋଶୀ ତାଙ୍କୁ ଜଗି ନଥିଲେ, ବୋଧହୁଏ ସେ କଣନାହିଁ କଣ କରିପକାଇଥାନ୍ତେ ।

ଖବର ପାଇ ହୁସେନ୍ ଆସିଥିଲେ ନେପାଳୀ ଦରଓ୍ୱାନ୍ ସୋମ୍ ବାହାଦୂରକୁ ସାଥୀରେ ନେଇ । ଆବଶ୍ୟକୀୟ ବ୍ୟବସ୍ଥା ହୋଇଗଲା ପରେ ସେ ବାହାଦୂରକୁ ସେଇଠି ଛାଡ଼ି ଇତି ଆଉ ତା'ର ଆୟାକୁ ହାତରେ ଧରି ତଳକୁ ଓହ୍ଲାଇ ଯାଇଥିଲେ । ତାଙ୍କ ଆଗରେ ବର୍ତ୍ତମାନ ବହୁତ କାମ । ପ୍ରଥମ କଥା ବ୍ଲୁମୋରିଆ ମାନ୍‌ସନ୍‌କୁ ବଦ୍‌ନାମ ହେବାରୁ ରକ୍ଷା କରିବାକୁ ହେବ । ପୋଲିସ୍ ଥରେ ଲାଗିଲେ, ତା' ଆଉ ସମ୍ଭବ ହେବନାହିଁ । ସେଥିପାଇଁ ବର୍ତ୍ତମାନଠୁଁ ସତର୍କ ହେବାକୁ ପଡ଼ିବ ।

ହୁସେନ୍ ସାହେବ ପାରିବାର ଲୋକ । କେଉଁଠି କ'ଣ କଳ ମୋଡ଼ିଲେ, ତାହା କେବଳ ସେଇ ଜାଣନ୍ତି, ଆଉ ଜାଣିଥିବେ ତାଙ୍କର ଖୋଦା ଯାହା । ହେବାର ତ ହୋଇ ସାରିଲାଣି । ଏଇନେ ମଲା ଦେହଟାକୁ ନେଇ ଟଣାଘୋଷଡ଼ା କଲେ ଆଉ କଅନ୍ତା କଣ ହେବ ? ଗଲା ପ୍ରାଣ ତ ଆଉ ଲେଉଟି ଆସିବନାହିଁ ।

ପୋଷ୍ଟମର୍ଟମର ଦରକାର ପଡ଼ିଲାନାହିଁ । ମିସେସ୍ ରାୟଚୌଧୁରୀ ଆତ୍ମହତ୍ୟା କଲାବେଳେ ତାଙ୍କ ସ୍ୱାମୀ ଫ୍ଲାଟ୍‌ରେ ମହଜୁଦ୍ ଥାଇ କଣ କରୁଥିଲେ, ଆୟା ଆଉ ବେବୀ ବା କୁଆଡ଼େ ଯାଇଥିଲେ, ଇତ୍ୟାଦି ପ୍ରଶ୍ନଗୁଡ଼ିକ ଚିରକାଳ ପାଇଁ ଅନୁତ୍ତରିତ ରହିଗଲା । ଶବଦେହ ନେଇ ସତ୍କାର ସମିତିର ଗାଡ଼ି କ୍ରିମୋଟରିଏମ୍‌କୁ ବାହାରି ଚାଲିଗଲା ପରେ ଧୀରେ ଧୀରେ ମାନ୍‌ସନ୍‌ର ଗୁଞ୍ଜରଣ ମଧ୍ୟ ଶାନ୍ତ ହୋଇଆସିଲା ।

ନିଜ ସ୍ୱଳ୍ପ ଜୀବନକାଳ ମଧ୍ୟରେ ଦେଖିଥିବା ସତ୍ୟର ଏହି ଭୟାବହ ରୂପ ବେବୀକୁ ଏକପ୍ରକାର ସ୍ତବ୍ଧ କରିଦେଇଥିଲା । ହୁସେନ୍ ସାହେବ ସେଦିନ ବଡ଼ ଯତ୍ନରେ ପିଲାଟିକୁ

ନିଜ ଫ୍ଲାଟରେ ଚାଲିନେଇଥିଲେ । ବେବୀ ତାଙ୍କୁ ପଚାରିଥିଲା କେବଳ ଗୋଟିଏ ମାତ୍ର ପ୍ରଶ୍ନ । ତାହା ହେଉଛି 'ମା' କୋଇ' ? ସାମାନ୍ୟ ମାତ୍ର ଏଇ ଦୁଇଟି ଶବ୍ଦର ବଜ୍ରାଘାତରେ ହୁସେନ୍ ସାହେବଙ୍କ ପାଦତଳର ମାଟି କମ୍ପିବାକୁ ଆରମ୍ଭ କରିଥିଲା । ପାହାଡ଼ ଫାଟି ସ୍ୱଚ୍ଛଳବଣାକ୍ତ ଜଳର ଧାର ବହିଯିବାକୁ ଆରମ୍ଭ କରିଥିଲା । ମାନବିକତାର ଯଜ୍ଞବେଦୀରେ ଇଏ ବୋଧହୁଏ ଏକ ଅଶାନ୍ତ ଆତ୍ମାର ପ୍ରଥମ ଅର୍ଘ୍ୟ ।

ହୁସେନ୍ ସାହେବ ସେଦିନ ଭୁଲିଯାଇଥିଲେ ନିଜର ଦୈନନ୍ଦିନ ରୁଟିନ୍‌କୁ । ଘୋଡ଼ାମାର୍କା ବୋତଲମାନ ଟେବୁଲ ଉପରେ ସଜଡ଼ାହୋଇ ସେମିତି ଥୁଆହୋଇଥିଲେ ସୁଦ୍ଧା ସେମାନଙ୍କ ଆଡ଼କୁ ଅନାଇବା ପାଇଁ ତାଙ୍କର ସମୟ ହୋଇନଥିଲା । ଦୂର ଚକ୍ରବାଳରେ ଜଳୁଥିବା ଗୋଟିଏ ଦପ୍ ଦପ୍ ନକ୍ଷତ୍ର ଆଡ଼କୁ ହାତଠାରି ଦେଖାଇଦେଇ ହୁସେନ୍ ସାହେବ କେବଳ କହିଥିଲେ—'ମା' ଓଇଖାନେ' । ସେଇଆଡ଼କୁ କିଛିକ୍ଷଣ ଅନାଇ ରହିବା ପରେ ବେବୀ ହୁସେନ୍‌ଙ୍କ କୋଳରେ ଶୋଇପଡ଼ିଥିଲା ।

ଚତୁର୍ଥଦିନ ରାୟଚୌଧୁରୀ ନିଜକୁ ସମ୍ଭାଳିନେଲେ । ଗାଧୋଇପାଧୋଇ ଦାଢ଼ିକାଟି ଫିଟ୍‌ଫାଟ୍ ବେଶରେ ତଳକୁ ଓହ୍ଲାଇଆସିଲେ । ମାନ୍‌ସନ୍‌ର ବାସିନ୍ଦାମାନଙ୍କ ଆଖିସାମ୍ନାରେ ନିଜ କାର୍ ଚଲାଇ ହୁସ୍ କରି କୁଆଡ଼େ ବାହାରିଗଲେ । ଯେଉଁମାନେ ମହାନଗରର ପ୍ରକୃତ ସହିତ ତଥାପି ପରିଚିତ ହୋଇନଥିଲେ, ସେମାନେ ଆଉ ଗୋଟିଏ ଦୁର୍ଘଟଣାର ସମ୍ବାଦ ଶୁଣିବା ପାଇଁ ନିଜକୁ ପ୍ରସ୍ତୁତ କରିବାକୁ ଲାଗିଲେ । ସେମାନଙ୍କ ପ୍ରତ୍ୟାଶିତ ଦୁର୍ଘଟଣା ସିନା ଘଟିଲାନାହିଁ, ଘଟଣାଟିଏ କିନ୍ତୁ ଘଟିଲା ।

ରାତିରେ ଯେତେବେଳେ ରାୟଚୌଧୁରୀ ଘରକୁ ଫେରିଲେ, ସେତେବେଳେ ସେ ଏକା ନଥିଲେ । ସାଙ୍ଗରେ ଆଣିଥିଲେ ଜଣେ ଗୋରୀ, ମୋଟୀ ଭଦ୍ରମହିଳାଙ୍କୁ । ଫ୍ଲାଟରେ ପାଦ ଦେବା ମାତ୍ରେ ସେମାନେ ଧଡ଼ାସ୍ କରି ଦରଜା ବନ୍ଦକରିଦେଲେ । ଜଣାପଡ଼ିଲା ସେଇ ସ୍ଥୂଳାଙ୍ଗିନୀ ପକ୍‌କାପକ୍‌କ ଭାବରେ ରାୟ୍‌ଚୌଧୁରୀ ପରିବାରର ସଦସ୍ୟ ହେଲେ । ଗୁଞ୍ଜରଣ ପୁଣି ଉଠିଲା । ମାନ୍‌ସନ୍‌ର ବାସିନ୍ଦାମାନେ ରାୟଚୌଧୁରୀଙ୍କୁ ଶଠ, ପ୍ରବଞ୍ଚକ, ହତ୍ୟାକାରୀ ଆଉ ଅମଣିଷ ବିଶେଷଣରେ ସମ୍ବୋଧିତ କଲେ । ମାତ୍ର ସେ ସବୁ ପଛରେ । ମୁହଁ ଉପରେ ହୁଁ ଶବ୍ଦଟିଏ ଉଚ୍ଚାରଣ କରିବା ଭଳି ଲୋକ କେହି ନଥିଲେ । ସମସ୍ତେ ବ୍ୟସ୍ତ ନିଜ ଧନ୍ଦାରେ । ରାୟଚୌଧୁରୀ ମଧ୍ୟ ପୂର୍ବଭଳି ଆଟାଚି ଦୋହଲାଇ ଠକ୍ ଠକ୍ ଶବ୍ଦରେ କରିଡ଼ର ପ୍ରକମ୍ପିତ କରି ନିୟମିତ ଅଫିସ୍ କରିବାକୁ ଲାଗିଲେ । ସବୁ ପୂର୍ବଭଳି ଶାନ୍ତ ହୋଇଗଲା ।

ଏକମାତ୍ର ବଦଳି ଯାଇଥିଲେ ହୁସେନ୍ ସାହେବ । କଥାକଥାକେ ସେ ଆଉ ଭଡ଼ାଟିଆ ମାନଙ୍କ ସହିତ ଝଗଡ଼ା କରିବାକୁ ଆଗେଇ ଆସୁନଥିଲେ । ସନ୍ଧ୍ୟା ସମୟରେ ବାରଣ୍ଡାରେ ବସି ଉଦାସ ନେତ୍ରରେ ଦିଗ୍‌ବଳୟକୁ ଚାହିଁରହିବା ତାଙ୍କର ଏକ ଅଭ୍ୟାସରେ ପରିଣତ ହୋଇଯାଇଥିଲା ।

ସେ ହୁଏତ ମଣିଷ ଚରିତ୍ରର ଜଟିଳତାର ଥଳକୂଳ ପାଉନଥିଲେ । ରାୟଚୌଧୁରୀ କଣ ପ୍ରକୃତରେ ତାଙ୍କ ସ୍ତ୍ରୀକୁ ପ୍ରେମ କରୁଥିଲେ ? ତା' ହେଲେ ଏମିତି ହେଲା କାହିଁକି ? ଗୋଟିଏ ଛାତତଳେ ବୋଲି ପିଲାଟିଏ ସାଙ୍ଗରେ ରହିଲେ ବି ତା' ପ୍ରତି କେତେ ମାୟା ପଡ଼ିଯାଏ । ଆଉ ପୁଣି ମିସେସ୍ ରାୟଚୌଧୁରୀ ତ ତାଙ୍କର ପିଲାର ମା' । କୁକୁର ଛୁଆଟାଏ ହଜିଗଲେ ପିଲାଏ ଯେମିତି ନୂଆ ଗୋଟାଏ ଯୋଗାଡ଼ କରିଆଣନ୍ତି, ରାୟଚୌଧୁରୀ ମାତ୍ର ଦିନ ଚାରିଟାରେ ପୁଣି ଗୋଟାଏ ସ୍ତ୍ରୀ ଧରିଆଣିଲେ । ସେ କଣ ମଣିଷ ନୁହନ୍ତି ?

ଏମିତି ଅନେକ ପ୍ରଶ୍ନ ତାଙ୍କ ମନରେ ଦେଖାଦିଏ ଆଉ ଅନୁତ୍ତରିତ ରହିଯାଏ । ମହାନଗରର ସଦା ବିକ୍ଷୁଭିତ ଆସଫାଲ୍ଟ ରାସ୍ତାରେ କିନ୍ତୁ ସାମାନ୍ୟ ଆଞ୍ଚୁଡ଼ା ଗାରଟିଏ ବି ପଡ଼େନାହିଁ ।

ଦୀର୍ଘଶ୍ୱାସ ପକାଇ ହୁସେନ୍ ସାହେବ ଭାବନ୍ତି, ଗଲାବାଲା ତ ଥରେମାତ୍ର ମରେ । ଯେଉଁମାନେ ରହିଯାଆନ୍ତି ସେମାନେ ମରୁଥାଆନ୍ତି ପ୍ରତି ମୁହୂର୍ତ୍ତରେ ।

✓ ମହାନଗର ହେଉଛି ପ୍ରକୃତରେ ଅଗଣିତ ଜୀଅନ୍ତା ଶବର ମଶାଣିଭୂଇଁ ।

ଏହାପରେ ଆଉ ମାତ୍ର ଦୁଇଟି ଘଟଣାର ଉଲ୍ଲେଖକରି ଏ ଗଳ୍ପର ଉପସଂହାର କରାଯିବ । ପ୍ରଥମ—ସେଇ ରାତିରୁ ହୁସେନ୍ ସାହେବ ମଦ ପୁରାପୁରି ଛାଡ଼ିଦେଇଛନ୍ତି । ଦ୍ୱିତୀୟ—ପ୍ରତି ସନ୍ଧ୍ୟାରେ ଶ୍ରେଷ୍ଠ ଝିଅଟିଏ ସପ୍ତମ ମହଲାର ଗୋଟିଏ ବାଲ୍‌କୋନୀରେ ଆସି ଚୁପ୍‌ଚାପ୍ ଦିଗ୍‌ବଳୟ ଆଡ଼କୁ ଅନାଇ ଠିଆହୁଏ ।

ଅନେକ ନକ୍ଷତ୍ର ଭିତରୁ କେଉଁ ନକ୍ଷତ୍ରଟିର ସ୍ନିଗ୍ଧ ଆଲୋକ ମା'ର କରୁଣାଧାର ହୋଇ ତା' ଶିରରେ ଝରିପଡ଼ିବ, ସେଇଆ ଖୋଜି ଖୋଜି ରାତି ବଢ଼ିଯାଏ ।

ଝିଅଟି ସେମିତି ଠିଆହୋଇଥାଏ ।

---